# ନାଗରା



ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର

# ନାଗରା

ଲେଖକ :

ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର

ଗ୍ରାମ :—ତାମଗ

ପୋ.ଅ. :—କାନପୁର

ଜିଲ୍ଲା :—କଟକ, ଓଡ଼ିଶା

ପିନ୍ ନମ୍ବର :—୭୫୪୦୩୭

# ନାଗରା

ଗ୍ରାମ ଠିକଣା : ❑ ରାଉରକେଲା ଠିକଣା :

ଲେଖକ—ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର

| | |
|---|---|
| ଗ୍ରାମ—ତାମର | ଘର—ଡ଼ି/୨୯୪, ସେକ୍ଟର—୮ |
| ପୋ,ଅ.—କାନପୁର | ପୋ.ଅ.—ରାଉରକେଲା—୯ |
| ଜିଲ୍ଲା—କଟକ, ଓଡ଼ିଶା | ଜିଲ୍ଲା—ସୁନ୍ଦରଗଡ଼, ଓଡ଼ିଶା |
| ପିନ ନମ୍ବର—୭୫୪୦୩୭ | ପିନ୍ ନମ୍ବର—୭୬୯୦୦୯ |



●

ପ୍ରକାଶକ :

ନାଗ୍ରା ସାଂସ୍କୃତିକ ଅନୁସନ୍ଧାନକାରୀ ସମିତି
ଗ୍ରାମ ଏବଂ ପୋ.ଅ.—ବଲଣି
ଜିଲ୍ଲା—ସୁନ୍ଦରଗଡ଼, ଓଡ଼ିଶା

●

ପ୍ରକାଶ କାଳ :

ଗଣେଶ ଚତୁର୍ଥୀ—୧୯୯୨

●

ପ୍ରଥମ ସଂସ୍କରଣ :

ପାଞ୍ଚଶହ

●

ମୁଦ୍ରଣ :

ରେନେସାଁ ପ୍ରିଣ୍ଟର୍ସ, ନୂଆବଜାର, କଟକ—୪

●

ମୂଲ୍ୟ :

ସାଦା ବନ୍ଧେଇ—ଟ ୪୫—୦୦
ବୋର୍ଡ଼ ବନ୍ଧେଇ—ଟ ୫୦—୦୦

## ଶୁଭେଚ୍ଛା ପତ୍ର—ପ୍ରଥମ

ଓଁ

ମୋ ପ୍ରଭୁଙ୍କ କରୁଣା ନାଗର ପାଣ୍ଡୁଲିପି ମୁଦ୍ରଣ ଦିଗରେ ସହାୟକ ହେଉ । ସତ୍ୟ ଉପରେ ଆଧାରିତ "ନାଗର" ରଚନା ଦେଖି ମୁଁ ଆନନ୍ଦିତ । ଏହାର ଆଶୁ ମୁଦ୍ରଣ କାମନାକରେ ।

ଶ୍ରୀ [signature]

ତା ୧୪ । ୯ । ୯୧

ବୟସ—୮୪ ବର୍ଷ
ଘର ନମ୍ବର—B/120
ସେକ୍ଟର—18
ଗ୍ରାମ—ଜବାଘାଟ
ପୋଷ୍ଟ—ଜବାଘାଟ
ଜିଲ୍ଲା—ସୁନ୍ଦରଗଡ଼

( ମୃତ୍ୟୁର ଦୁଇଦିନ ପୂର୍ବରୁ ଉକ୍ତ ପତ୍ର ସଂଗୃହୀତ )

## ଶୁଭେଚ୍ଛା ପତ୍ର—ଦ୍ୱିତୀୟ

କବି ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର ବହୁ ପରିଶ୍ରମ କରି ଯାହାଙ୍କ ଏ ବଣ ଜଙ୍ଗଲପୂର୍ଣ୍ଣ ନାଗର ଇଷ୍ଟେଟର ଲୁପ୍ତ ଏବଂ ସୁପ୍ତ ଐତିହକୁ ଲେଖାଆକାରରେ ଲୋକ ଲୋଚନକୁ ଆଣି ପାରିଥିବାରୁ ମୁଁ ତାଙ୍କୁ ମୋର ହାର୍ଦିକ ଅଭିନନ୍ଦନ ଜଣାଉଅଛି । ମଙ୍ଗଳ ମୟ ହରି ତାଙ୍କର ମଙ୍ଗଳ ବିଧାନ କରିବେ । ଏହା ମୋର କାମନା ।

ଅର୍ଜୁନ ସିଂ

ତା ୩-୧୦-୯୧ ରିଖ

ଗ୍ରାମ—ବଇଣି
ପୋ.ଅ.—ବଇଣି
ଜିଲ୍ଲ—ସୁନ୍ଦରଗଡ଼
ଓଡ଼ିଶା

ଭିତୀସ୍ତ ପଣ

Be Learned

ESTD—1985
Be United

Do struggle

ALL INDIA

# Dr. Bhimrao Ambedkar Vichar Manch

A Leading Social Organisation All Over India

Sri Debandra Amat Ex-M.P.
Chairman

Balani

Sri Davinder Malhotra
Vice-Chairman

Dated 2-10-91

Sri Sunakar Malik
President

In my perspective.

I have gone right from "A" to "Z" of the contents of the manuscript of the book entitled as "NAGRA". It covers all the aspects of the then Nagra Estate based on authenticity and facts but not friction and conflict. Nagra people owe to Writer Sri Gokul Chandra Mishra for having taken a lot of pains and strains to edit and re-edit the manuscript by contacting, consulting and co-operating with the prominent persons of this illaka and also the people of all sheds of openion.

I am glad to learn that the book is going to be printed.

Sd/-Debananda Amat
Ex-Member of Parliament
and
President of Inter Provincial
Bhuyan Samaj (Orissa, M.P. & Bihar.)

# ଭୂମିକା

ସନ ୧୯୩୬ ମସିହା ଏପ୍ରିଲ ପହିଲାରେ ଗଠିତ ଉତ୍କଳର କଳେବର ଅନେକ ଦିନୁ ଖଣ୍ଡିତ ହୋଇଯାଇଅଛି । ଅଧୁନା ଓଡ଼ିଶାର ସୀମାରେଖା ଭାଷା ସଂସ୍କୃତି ଉପରେ ଦେଖାଯାଇଥିବା ବିପଦ ପ୍ରତି ଆମ୍ଭେମାନେ କେତେଦୂର ସଚେତନ ! ପ୍ରଶ୍ନୋତ୍ତର ଆତ୍ମ ବିଶ୍ଳେଷଣରୁ ବୁଝିହେବ । ଉକ୍ତ ବିପଦକୁ ଦୂର କରିବା ପାଇଁ ଟିକିଏ ସ୍ୱାର୍ଥତ୍ୟାଗ ଆବଶ୍ୟକ । ନିସ୍ୱାର୍ଥ ସେବା ମାଧ୍ୟମରେ ଅଝଟିଆ ଶିକ୍ଷିତ ଅଶିକ୍ଷିତ ଭାଇ ଭଉଣୀମାନଙ୍କ ଆପତ୍ତିର ବିହିତ ପ୍ରତିକାର କରି ବିପଦ ଦୂର କରିବା ଆମର ପରମ କର୍ତ୍ତବ୍ୟ । ଏତିକି ହେଲେ ପୂର୍ବସୂରୀ ଖୁସି ହେବେ । ମାତା ମୁଖରେ ହସ ଫୁଟିବ ।

ପୂଣ୍ୟାତ୍ମା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶଙ୍କ ଅମରବାଣୀ :—

"ପୂର୍ବ ପୁରୁଷର ପବିତ୍ର ଶ୍ମଶାନ
ଦେଶର ଜାତିର ଗଉରବ ଗାନ ।।

ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ ।।

ମାନବ ଜନମ ହୁଅଇ ସଫଳ
ଏ ମହାଦୀକ୍ଷା କି ବୁଝିବ ଉତ୍କଳ ।"

(ବନ୍ଦୀର ଆତ୍ମକଥା)

ଏହାକୁ ଅନୁସରଣ କରି ଲେଖକ ପ୍ରାଚୀନ ନାଗର ଏବଂ ଗାଙ୍ଗପୁରର ଐତିହାସିକ ଚିତ୍ରକୁ ସ୍ୱୀୟ "ସିଂହାବଲୋକନ" କାବ୍ୟରେ ପ୍ରକାଶ କରିଅଛି । ନାଗର ରାଜ୍ୟର ସାମାଜିକ ସାଂସ୍କୃତିକ ଐତିହ୍ୟକୁ ଉଦ୍ଧାର କରିବାକୁ ଯାଇ ପାଞ୍ଚବର୍ଷ ଅକ୍ଳାନ୍ତ ପରିଶ୍ରମ କରି "ନାଗର" ଗ୍ରନ୍ଥ ରଚନା କରିଅଛି ।

ଉକ୍ତ "ନାଗର" ଗ୍ରନ୍ଥରେ ନାଗର ଇତିହାସର ସଂକ୍ଷିପ୍ତ ସୂଚନା, ଏହାର ବାସିନ୍ଦା, ଭୂସମ୍ପତ୍ତି ବିବରଣୀ, ଭୂସମ୍ପତ୍ତି ଓ ସଂସ୍କୃତିର ବିବର୍ତ୍ତନବାଦରେ

ବର୍ତ୍ତମାନ ସ୍ଥିତି, ପର୍ବପର୍ବାଣୀ, ଉତ୍କଳୀୟ ଲିପିରେ ନାଗରର ପ୍ରଚଳିତ ତାଳପତ୍ର ପୋଥି ଏବଂ ତାଳପତ୍ର ଲେଖାର ପରିଚୟ, ନାଗରର କବି କଳାକାରଙ୍କ ସ୍ମୃତି ଚାରଣ, ନାଗର ଉତ୍କଳ ତଥା ଭାରତର ମହାନ ସାଧକ କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ଜନ୍ମ ଓ ପରିଶେଷରେ ଉପସଂହାର ଇତ୍ୟାଦି ବିଷୟଗୁଡ଼ିକ ପାଞ୍ଚଗୋଟି ପରିଚ୍ଛେଦରେ ବର୍ଣ୍ଣିତ ହୋଇଅଛି । ପରିଶିଷ୍ଟରେ ଉଭୟ "ନାଗର" ଏବଂ "ସିଂହାବଲୋକନ" ସଂମ୍ପର୍କୀୟ କେତେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟାବଳୀ ପ୍ରକାଶ କରାଇ ନାଗରର ପରିଚୟ ପ୍ରଦାନ କରାଯାଇଅଛି ।

"ନାଗର" ଲେଖକ ରାଉରକେଲା ଇସ୍ପାତ କାରଖାନାର ଜନୈକ କର୍ମଚାରୀ । ନାଗର ପାଣ୍ଡୁଲିପି ମୁଦ୍ରଣ କରାଇବା ତା ପକ୍ଷରେ ସମ୍ଭବ ହେଲା-ନାହିଁ । ତେଣୁ ସେ ଓଡ଼ିଶାର କେତେକ ପ୍ରତିଷ୍ଠିତ ପ୍ରଖ୍ୟାତ ବୁଦ୍ଧିଜୀବୀଙ୍କ ଦ୍ୱାରସ୍ଥ ହୋଇ "ନାଗର" ମୁଦ୍ରଣ ସମ୍ପର୍କୀୟ ପରାମର୍ଶ ଲୋଡ଼ି ବିଫଳ ହୋଇଅଛି । ଶେଷରେ ନାଗ୍ରା ସାଂସ୍କୃତିକ ଅନୁସନ୍ଧାନକାରୀ ସମିତି ଜରିଆରେ ଏହାକୁ ମୁଦ୍ରଣ କରାଇବାକୁ ସକ୍ଷମ ହୋଇଅଛି ।

ପ୍ରିୟ ବନ୍ଧୁ ନେପାଳ ପ୍ରଧାନ "ନାଗରର ପ୍ରଚ୍ଛଦପଟ ଅଙ୍କନକରି ଏହାର ମୁଖଶ୍ରୀ ବର୍ଦ୍ଧନ କରିଅଛନ୍ତି । ବନ୍ଧୁ ସର୍ବଶ୍ରୀ ନିତ୍ୟାନନ୍ଦ ବେହେରା, କ୍ଷୀରୋଦ କୁମାର ମିଶ୍ର, ଅଧ୍ୟାପକ ଡକ୍ଟର ଅର୍ଜ୍ଜୁନ ଶତପଥୀ, ଅଧ୍ୟାପକ ରବୀନ୍ଦ୍ରନାଥ ନାୟକ, ପଣ୍ଡିତ ଦିଗମ୍ବର ମହାପାତ୍ର, ପଣ୍ଡିତ ଶିବରାମ ମହାପାତ୍ର, ନାଗ୍ରା ସାଂସ୍କୃତିକ ଅନୁସନ୍ଧାନକାରୀ ସମିତି, ପ୍ରଗତି ଉତ୍କଳ ସଂଘ ଏବଂ ଇସ୍ପାତ ସାହିତ୍ୟ ସଂସଦ ଲେଖକଙ୍କୁ ରଚନାତ୍ମକ କାର୍ଯ୍ୟରେ ଉତ୍ସାହିତ କରିଅଛନ୍ତି । ଶ୍ରଦ୍ଧେୟା କୁମାରୀ ଲିଲି ମୁନିର ନାଗର ପ୍ରୀତି ଲେଖକଙ୍କୁ ମୁଗ୍ଧ କରିଅଛି ।

ଲେଖକର ବଡ଼ ମଉସା ଭାଇ ଶ୍ରୀଯୁକ୍ତ ମୁରଲୀଧର ମିଶ୍ର, ଶ୍ରଦ୍ଧେୟ ମନମୋହନ ମିଶ୍ର, ନରେଶ ଚନ୍ଦ୍ର ଦାଶ ଏବଂ ରେନେସାଁ ପ୍ରେସର ମୁଦ୍ରାକର ଶ୍ରୀଯୁକ୍ତ ନବ କିଶୋର ଦାଶଙ୍କ ସତର୍କ ତତ୍ତ୍ୱାବଧାନରେ ବହୁମୂଲ୍ୟ ସମୟ ବିନିମୟରେ "ନାଗର" ମୁଦ୍ରଣ ହୋଇଥିବାରୁ ଲେଖକ ଏମାନଙ୍କ ନିକଟରେ ଚିରକୃତଜ୍ଞ ।

ଢେଙ୍କାନାଳ ମହିମା ମହାବିଦ୍ୟାଳୟ ଇତିହାସ ଅଧ୍ୟାପକ ଶ୍ରୀଯୁକ୍ତ ଶଙ୍କର୍ଷଣ ଜେନା "ନାଗର" ଉପରେ ଏକ ଇଂରାଜୀ ଅଭିମତ ପ୍ରଦାନ କରି

ଏହାର ଗୌରବମୟ ଐତିହ୍ୟକୁ ଭାରତରେ ପ୍ରସାରିତ କରିବା ପଥ ଉନ୍ମୋଚିତ କରିଅଛନ୍ତି । ଗାଙ୍ଗପୁର ନାଗର ବାସିନ୍ଦାମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ ଲକ୍ଷ୍ମଣ ମାଝି, ଜନ୍ମେଜୟ ଅମାତ ଏବଂ କବି ଆଖଣ୍ଡଳ ମଣି ପଣ୍ଡା ସେମାନଙ୍କ ନାଗର ସମ୍ପର୍କୀୟ ଚିନ୍ତାଧାରାକୁ ସେମାନଙ୍କ ଅଭିମତରେ ପ୍ରକାଶ କରି ଅଛନ୍ତି । ବାଲେଶ୍ୱରର କବି ଏବଂ ଆଡ୍ଭୋକେଟ ଶ୍ରୀଯୁକ୍ତ ହରିହର ପଣ୍ଡା ପତ୍ର ମାଧ୍ୟମରେ ନିଜର ଅଭିମତ ଦେଇ ଲେଖକକୁ ଉତ୍ସାହିତ କରାଇଅଛନ୍ତି ।

"ନାଗର" ଗ୍ରନ୍ଥ ରଚନା, ମୁଦ୍ରଣ ଶୁଭେଚ୍ଛା ପତ୍ର ଏବଂ ଅଭିମତ ଅନ୍ତରାଳରେ ଥିବା ସମସ୍ତ ହିତାକାଂକ୍ଷୀ ବନ୍ଧୁମାନଙ୍କୁ ଲେଖକ ନିଜର ବିନମ୍ର ଭକ୍ତି ଶ୍ରଦ୍ଧାଞ୍ଜଳି ଅର୍ପଣକରି ପରମେଶ୍ୱରଙ୍କ ଶ୍ରୀଚରଣରେ ସମସ୍ତଙ୍କର ନିରାମୟ ସୁଖୀ ଜୀବନ କାମନା କରୁଅଛି ।

ପୂର୍ଣ୍ଣବ୍ରହ୍ମ ପରମେଶ୍ୱର ଶ୍ରୀଶ୍ରୀ ଜଗନ୍ନାଥ ମହାପ୍ରଭୁ ଅଧୁନା ସମାଜରେ ଦେଖାଦେଇଥିବା ସମସ୍ତ ବିଘ୍ନ ହରଣ କରନ୍ତୁ । ମନୁଷ୍ୟ ହୃଦୟରେ ବିଶ୍ୱ ମାନବୀୟ ମଙ୍ଗଳ କାମନା ଜାଗ୍ରତ କରାନ୍ତୁ ଦୁଃଖୀନୀ ଉତ୍କଳ ଜନନୀ ସହ ବିଶ୍ୱଜନନୀର ଅବସାଦ ଦୂର କରନ୍ତୁ । ବିଶ୍ୱକୁ ଶାନ୍ତି ସନ୍ତୋଷ ପ୍ରଦାନ କରି ମଧୁମୟ କରନ୍ତୁ । "ନାଗର" ଲେଖକର ଅପରାଧ ମୋଚନ କରି 'ନାଗର' ଅନ୍ତଃସ୍ୱରକୁ ମନନ କରନ୍ତୁ ।

ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ ।

ଗଣେଶ ଚତୁର୍ଥୀ
ତା ୧୧ । ୯ । ୧୯୯୧

ଲେଖକ—ଗୋକୁଳ ଚନ୍ଦ୍ର ମିଶ୍ର
ରାଉରକେଲା;
ଜିଲ୍ଲା—ସୁନ୍ଦରଗଡ଼, ଓଡ଼ିଶା

**Prof Sankarsan Jena**
M.A. (History), M.A. (Pol. Sc.), M.A. (Oriya), Utkal,
**Head of the Deptt. History,**
**Mahima Mahavidyalaya**
At./P.O.—Mahimagadi
Dist.—Dhenkanal, Orissa

Ref.— Date—

# Opinion on the book "NAGARA"

Written by **Gokul Ch. Mishra**

A country becomes proud of its cultural heritage. The foundations of Orissa' sglory and greatness were laid in the living memory of ancient times. A knowledge of our past history is like a source of perpetual inspiration to its future inhabitants. Therefore it is essential and inevitable to know the ancient history of our land to feel proud of our culture and civilisation. Orissan culture is very glorious and it stands on the pedestal of a rich tradition. Sundargarh district plays a vital role in the cultural evolution of Orissa. The ancient 'Nagara' culture which reached at the Zenith of perfection in the state of Nagara is one of the remarkable cultures of Orissa history. It is now a part and parcel of Panposh sub-division. It is no way different from the Orissan culture and civilisation. Sri Gokul Chandra Mishra a celebrated writer has taken glorious attempt to bring to light the past history as well as unknown chapters of Nagara through his literary work entitled "Nagara". The Book written in both prose and verse style has five chapters in which the evolutionary changes of the culture in changing time have been depicted in an artistic manner. The brief history of Nagara State, its inhabitants, estate details, festivals, rites and rituals, customs and traditions have been discussed in a lucid manner. The fundamental basis of social and cultural life of the state is one and the same. The

cultural unity and homogeneity is also reflected in the social ceremonies, religious rites, festivals and modes of life.

The author has the credit of bringing to light the palm leaf writings in Oriya s cript which were prevalent in the Nagara st ıte at that time. The author has not forgotten to discover the names of palm leaf writings. The gradual development of Oriya literature and its relation with Sanskrit and Bengali literature have been presented vividly. The author has taken a lot of pain in collecting the names of ancient village and their historical and literary grentaess.

The poets are the true representatives of the society. There were some ancient Poets, who had contributed enormously towards the enrichment our literature. Some of them were completely beyond the vision of our discovery.

"Too manp flowers bloom
to blush unseen
in the desert air,"

Sri Mishra in his valuable manuscript has brought to light from oblivion some of the famous poets of Nagara like Pitambar Panda, Arjun Raj, Ratneswar Panigrahi, V. Janaki Patri & Sunanda Singh Routia. In addition to this the reputed Pala Singer Fakir Mishra has also attracted the attention of the author. The "Chhau dance" of Nagara with its special characteristics has been narrated in the book. Not only cultural but also the political analysis is reflected in the book. The author has narrated the dedicated work of Brundaban Behera who had contributed his time and energy towards raising social and political consciousness.

The author has given a vivid picture of the sanctity of Ashram life. The Ashramas were the centres of learning which promoted culture among the common folk. The devoted pilgrims, Zealous missionaries, wandering saints and Sanyasis formed a connecting link and reinforced the sentiments of unity and integrity. The author has devoted an

entire chapter to reveal the mysterious life and philosophy of Krishna Dwaipayan Vedvyas, the great seer poet and sage not only of Nagara state but also of India. The Kaivarta culture and essence of Gurukula Ashram have been presented systematicallv. In the epilogue the author has described about the Sivatemple, caves, Jagannath and Sriram temple constructed in the memory of Vedvyas. The development of art and architecture is also presented in a nice manner.

Undoubtedly. the book is a mirror through which the religion, philosophy, customs, conventions, ideas and cultural life have been reflected. All these elements have fostered the cause of its great cultural expansion. I do appreciate the commendable and authentic work of Sri Mishra who has devoted his time in bringing to light one of the greatest cultures of Orissa History. I am glad to know that the 'Nagara Investigatory Committee' constituted by the intellealuals has focussed its attention to publish the manuscript. This inspiration will expedite the irresistible endeavour of the author to bring more research work in future. I am very thankful to the esteemed author for giving me the opportunity to present few words on the book.

**Sankarsan Jena**
20-3-91

# ନାଗରା ପୁସ୍ତକ ଉପରେ ଗାଙ୍ଗପୁର ନାଗରା ଜନସାଧାରଣଙ୍କ ଅଭିମତ

## ପ୍ରଥମ ଅଭିମତ

ମୁଁ "ସିଂହାବଲୋକନ" କାବ୍ୟ ରଚୟିତା ଶ୍ରୀ ଗୋକୁଳଚନ୍ଦ୍ର ମିଶ୍ରଙ୍କ "ନାଗର" ପାଣ୍ଡୁଲିପିଟି ପାଠକରି ଅତ୍ୟନ୍ତ ଆନନ୍ଦିତ ହେଲି । ସେ ଏଥିରେ ନାଗର ତଥା ଗାଙ୍ଗପୁରର ଲୁପ୍ତ ଐତିହ୍ୟକୁ ବିସ୍ତୃତ ଭାବରେ ଲୋକଦୃଷ୍ଟିକୁ ଆଣିପାରିଥିବାରୁ ମୁଁ ତାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରୁଅଛି । ବାସ୍ତବିକ ଏହା ଆଗାମୀ ଯୁଗର ପାଠକ ପାଠିକାମାନଙ୍କ ପାଇଁ ଏକ ଦର୍ପଣ ସଦୃଶ । ଏ ଦିଗରେ ମୁଁ ତାଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରେ ।

ତା ୧୦।୧।୧୯୮୮ — ଶ୍ରୀ ଲକ୍ଷ୍ମଣ ମାଝୀ
ଗ୍ରାମ——ତରକେରା
ବୟସ—୪୮ ବର୍ଷ

## ଦ୍ୱିତୀୟ ଅଭିମତ

"ସିଂହାବଲୋକନ" କାବ୍ୟ ରଚକ ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ରଙ୍କ "ନାଗର" ପାଣ୍ଡୁଲିପି ପାଠକରି ନିରଟସତ୍ୟ ବିବରଣୀ ବୁଝି ଆନନ୍ଦିତ ହେଲି । ତତ୍ପୂର୍ବେ ତାଙ୍କ ସିଂହାବଲୋକନ ପଢି ସନ୍ତୋଷ ଲାଭ କରିଅଛି । ସେଥିପାଇଁ ମୁଁ ଭଗବାନଠାରେ ତାଙ୍କର ମଙ୍ଗଳ କାମନା କରୁଛି ।

ତା ୧୦।୧।୧୯୮୮ — ଶ୍ରୀ ଜନ୍ମେଜୟ ଅମାତ
ବୟସ—୪୫ ବର୍ଷ
ଗ୍ରାମ—ବଲଣୀ

## ତୃତୀୟ ଅଭିମତ

ଶ୍ରୀଗୁରୁ ଚରଣେ ଶରଣମ୍

ସାହିତ୍ୟ-ରସ-ପିପାସୁ ଗୋକୁଳ ସୁନ୍ଦର
ଶୁଭକ୍ଷଣେ ବିଜେକଲେ ମୋ ପର୍ଣ୍ଣକୁଟୀର ।୧।
ସହସା ଦେଖିଣ ମୁହିଁ ହେଲି ଆଚମ୍ବିତ
ମନେ ମନେ ଗୁଣି ହେଲି କିଏ ନବାଗତ ।୨।

ସମ୍ଭାଷଣ ସଙ୍ଗେ ଦେଲି କୋଇଲିର ଜଳ
ପାନେ ତୃପ୍ତି ଲଭିଲ କି ହେ ବନ୍ଧୁ ବତ୍ସଳ ।୩

ତାପରେ ବସିଣ ଏକ ଖଟ ଆସନରେ
ଆଲୋଚିଲୁଁ କେତେକଥା ନାଗ୍ରା ବିଷୟରେ ।୪।

ତାଦାତୀନ ଓଡ଼ିଆ ଲିପି ଏ ଅଞ୍ଚଳେ
ଥିଲା କି ନଥିଲା ପ୍ରଶ୍ନୋତ୍ତର ଦେବା ଛଳେ ।୫।

ଯାହାଥିଲା ବାପାଙ୍କର ତୁଳାମନ୍ତ ଲେଖା
ସଙ୍ଗେ ଦେଖାଇଲି ପୋଥି କଥାଣି ମାଳିକା ।୬।

ତାହାପରେ ପ୍ରକାଶିଲ ତବ ଚିନ୍ତାଧାର
ଗ୍ଲଳିଅଛି ଏବେ ତବ ଲେଖା ଯେ ନାଗର ।୭।

ପୂର୍ବରୁ ପଢ଼ିଛି ତବ "ସିଂହାବଲୋକନ"
ଏବେ "ନାଗର" ରଚନା କରୁଛି ଦର୍ଶନ ।୮।

ହୃଦୟ ବିଲ-କେଦାର କର ହେ ଉର୍ବର
"ନାଗର" ବାଳ ପାଦପ ଶୀଘ୍ର ବୃଦ୍ଧିକର ।୯।

ନବ କିଶଳୟେ ଶୋଭୁ ତରୁ ଶାଖାମାନ
ଆନନ୍ଦରେ ମଞ୍ଜିଯିବେ ଦେଶବାସୀ ଜନ ।୧୦।

ବରଦା ହୋଇବେ ନିଶ୍ଚେ ଦେବୀ ଯେ ଗିରିଜା
ନାଗର ଗଇଜ ତଥା ନାଗରର ଧ୍ୱଜା ।୧୧।

ଉଡ଼ିବ ଉର୍ଦ୍ଧ୍ୱେ ରହିଣ ଭରତ ଗଗନେ
ଛନ୍ତି ବ୍ୟାସଦେବ ଯହିଁ ଉଡ଼ାଳୀ ସମାନେ ।୧୨।

ତା ୧୯।୭।୧୯୮୯

ଭବଦୀୟ
ଶ୍ରୀ ଅଖଣ୍ଡଳମଣି ପଣ୍ଡା
ଜବାଘାଟ ଶାସନ

# ସୂଚୀପତ୍ର

| କ୍ରମିକ ସଂଖ୍ୟା | ବିଷୟ | | ପୃଷ୍ଠା |
|---|---|---|---|

| କ୍ରମିକ ସଂଖ୍ୟା | ବିଷୟ | ପୃଷ୍ଠା |
|---|---|---|

| କ୍ରମିକ ସଂଖ୍ୟା | ବିଷୟ | | ପୃଷ୍ଠା |
|---|---|---|---|



—×—

# କବି ଶ୍ରୀଯୁକ୍ତ ହରିହର ପଣ୍ଡାଙ୍କ ଏକ ପତ୍ର

ବାଲେଶ୍ୱର
ତା ୨୯।୪।୯୧

ଶ୍ରଦ୍ଧେୟ ଗୋକୁଳ ବାବୁ,

ଈଶ୍ୱର ଆପଣଙ୍କୁ ଦୀର୍ଘାୟୁ ଓ ସୁଖୀ କରିବେ । ସଦ୍ୟ—ଗତ ବସନ୍ତ ଋତୁରେ ବାସନ୍ତୀ ଦେବୀଙ୍କର ଆରାଧନାର ପ୍ରାକ୍‌କାଳରେ ଓ ଶ୍ରୀରାମଙ୍କ ଉତ୍ସବ ନିମନ୍ତେ ବିଭିନ୍ନ ମଣ୍ଡପରୁ ଶ୍ରୀରାମଚନ୍ଦ୍ରଙ୍କ ଗୁଣଗାନ ବାଦ୍ୟସ୍ରୋତରେ ମୁଖରିତ ହେଉଥିବା କାଳରେ ରାଉରକେଲାରେ ଆପଣମାନଙ୍କ ସହ ମୋର ସାକ୍ଷାତ୍ ବିଶେଷତଃ ଶ୍ରୀ ଜଗନ୍ନାଥ ମନ୍ଦିର ପ୍ରାଙ୍ଗଣରେ ଏକ ସାହିତ୍ୟ ସଭାରେ ଆମ୍ଭମାନଙ୍କ ଉପସ୍ଥିତି । ଏହା ମହାମାୟାଙ୍କର ଅପାର କରୁଣା ବୋଲି ମୁଁ ମନେକରେ ।

ଏହି ସମୟରେ ଏଠାରେ ବିଭିନ୍ନ ଧର୍ମସଭାରେ ମୋର ପ୍ରବଚନ ଶୁଣିବାକୁ ଲୋକେ ମୋତେ ଆଶା କରିଥିଲେ । ମାତ୍ର ଭଗବାନ ମୋତେ ସେ ସମୟରେ ରାଉରକେଲାରେ ରଖିଲେ ।

ରାଉରକେଲାରେ ଜଣେ ବ୍ୟକ୍ତିଙ୍କୁ ଆଗରୁ ଦେଖିଥିଲି ଏବେ ଅନେକ ଦିନ ପରେ ମଧ୍ୟ ତାହାଙ୍କୁ ଦେଖିଲି ଓ ଜାଣିଲି :—ଅତି ସରଳ, ନିରାଡ଼ମ୍ବର ଜୀବିକା ପାଇଁ ସ୍ୱ-କର୍ମରେ ରତ ମାତ୍ର ସେ ସାହିତ୍ୟ ପ୍ରେମୀ, ଜନନୀ ଜନ୍ମଭୂମି ପାଇଁ ଯାହାର ପ୍ରାଣ କାନ୍ଦେ ନିଜର ଜନନୀ ଯଥା ଗୃହଠାରୁ ସୁଦୂର ରାଉରକେଲାର ପୁରାତନ ଇତିହାସ, ସଂସ୍କୃତି, ସନ୍ନିକଟ ବଣ ପାହାଡ଼, ନଦ, ନଦୀ, ପୁରାତନ ଜାତି ଉପଜାତିଙ୍କ ପ୍ରଭବ, କାଳ ବକ୍ଷରେ ଏମାନଙ୍କ ଗତି—ଏ ସମସ୍ତ ମହାନ୍ ବିଷୟ ଅନୁଧ୍ୟାନ କରି ପୁରାତନ ପୋଥି ଓ ଭଗ୍ନଗଡ଼ ଇତ୍ୟାଦି ବିଶ୍ଳେଷଣ କରି; ଏ ସମସ୍ତ ଲେଖନୀ ତୁଳିରେ ଓଡ଼ିଆ ଭାଷାର ପ୍ରସ୍ଫୁଟିତ ମଧୁର ଓ ଭାବଯୁକ୍ତ ରଙ୍ଗରେ ସୁଚିତ୍ରଣରେ ଯେ ବ୍ୟକ୍ତି ଏ ସମସ୍ତ ଲୋକଲୋଚନକୁ ଆଣିବାକୁ ଚେଷ୍ଟିତ ଓ ବହୁ ବାଧାବିଘ୍ନ ଶ୍ରମ ସାଧନାରେ ମଧ୍ୟ ବ୍ରତୀ; ସେ ହେଉଛନ୍ତି :— ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର ।

ଓଡ଼ିଆ ଜାତି ବହୁ କ୍ଷେତ୍ରରେ ପ୍ରକୃତ ଗୁଣୀ ବ୍ୟକ୍ତିଙ୍କୁ ଆଦର ଦିଏ ନା ବରଂ ବହୁକ୍ଷେତ୍ରରେ ହିଂସା ଓ ଅହଂକାର ର ବଳ ବାହ୍ୟ ଆଡ଼ମ୍ବରପୂର୍ଣ୍ଣ ନିର୍ଗୁଣୀଙ୍କୁ

ସମାଦର କରି ପ୍ରକୃତ ଗୁଣୀଙ୍କୁ ଉପେକ୍ଷା କରେ । ଏହା ଆମର ଭାଗ୍ୟ । କିନ୍ତୁ ମୁଁ ଆଶାକରେ କାଳ ନିଶ୍ଚୟ ନ୍ୟାୟ ବିଚାର କରିବ ଓ ପରିମାଣ ଦେବ ।

ଆପଣ ମୋତେ ଅର୍ପିତ ଉପହାର ସୂଚକ କବିତାଟି ପଢ଼ି ବାଲେଶ୍ୱରର ବହୁଗୁଣି ବ୍ୟକ୍ତି ଓ ଆମ ପରିବାରର ସମସ୍ତେ ବହୁ ଆନନ୍ଦିତ । ଏହାକୁ ଲିଥୁ କରଇ ବା ଛପାଇ ପୁଅ ଝିଅଙ୍କୁ ଦେବି ।

ଭଗବାନ ଶ୍ରୀକୃଷ୍ଣ; ଜଗନ୍ନାଥ ଓ ଦେବୀଙ୍କ ପ୍ରତି ଆପଣଙ୍କର ଅଚଳା ଭକ୍ତି, ଏହା ଶକ୍ତିରୂପରେ ଆପଣଙ୍କର ସହାୟ ହେବ ।

ପୋଷ୍ଟ କାର୍ଡଟିରେ ପତ୍ରଟିଏ ଦେବେ । ବହୁ ସାହିତ୍ୟ ଅନୁଷ୍ଠାନ ଓ ବିଶିଷ୍ଟ ବ୍ୟକ୍ତିଙ୍କଠାରୁ ମୁଁ ପୋଷ୍ଟ କାଡ଼ରେ ମଧ୍ୟ ପତ୍ର ଲାଭ କରେ ।

ଇତି ଶୁଭକାଙ୍କ୍ଷୀ
ଶ୍ରୀ ହରିହର ପଣ୍ଡା, Advocate
ସା: ବଟେଶ୍ୱର
ଟା:ଉନ ଜି : ବାଲେଶ୍ୱର, ପିନ୍ ୭୫୬୦୦୨

# ମଙ୍ଗଳାଚରଣ

( ରାଗ—ନଳିନୀ ଗୌଡ଼ା )

ଆଦିମାତା ମହାମାୟା ବିଶ୍ୱ-ସ୍ୱରୂପିଣୀ
ପ୍ରକୃତି ରୂପେ ବ୍ୟାପିଛ ଏ ବିଶ୍ୱ-ଅବନୀ ।୧।
ଅସଂଖ୍ୟ ଇଷ୍ଟ ଦେବତୀ ନାମକୁ ଧରିଣ
ବିଶ୍ୱେ ପୂଜିତ ହେଉଛ ବିଭିନ୍ନ ରୂପେଣ ।୨।
ତହିଁରୁ ଝଗଡ଼େଶ୍ୱରୀ ନାମ ଯେ ତୁମ୍ଭର
ନାଗରକୁ ନେଇମାତ ହୋଇଛି ଦୁର୍ଗେଶ୍ୱରୀ ।୩।
ଜୟ ଗୋ ଝଗଡ଼େଶ୍ୱରୀ ତୋର ନାମ ଧରି
"ନାଗର" ଗ୍ରନ୍ଥ ରଚିଲି ବହୁଶ୍ରମ କରି ।୪।
ଭଲ ମନ୍ଦ ନାନା ଗାଥା ଶୁଣାଇ ମୋ କର୍ଣ୍ଣେ
ବିବିଧ ସ୍ୱରୂପମାନ ଦେଖାଇ ନୟନେ ।୫।
ଆଦ୍ୟରେ ବର୍ଣ୍ଣିତ ପୂର୍ବ ଇତିହାସ କଥା
ରଜା ଜମିଦାର ପ୍ରଜା ହାନୀଲଭ ଗାଥା ।୬।
ଭୂସମ୍ପତ୍ତି ସଂସ୍କୃତିର ବିବର୍ତ୍ତନ ବାଦ
ଅଦ୍ୟାପି ଗଣତନ୍ତ୍ରର ଶାସନ ସମ୍ବାଦ ।୭।
ନାଗର କୋଳେ ଓଡ଼ିଆ ଭଷା ପୋଥିମାନ
ପ୍ରମାଣ ସକାଶେ କିଛି ହୋଇଛି ବର୍ଣ୍ଣନ ।୮।
କୃଷ୍ଣ ଦ୍ୱୈପାୟନ ବ୍ୟାସ ଜନ୍ମ ଶ୍ରୁତି କଥା
ଆବର ଅନେକ କବି; ବ୍ୟାସ ଜନ୍ମ ଗାଥା ।୯।
ରଚନା ଟିପ୍ପଣୀମାନ କରଇ ବ୍ୟକତ
ବ୍ୟାସ ଜନ୍ମ ତଥ୍ୟ ପଥ ହୋଇଛି ଉନ୍ମୁକ୍ତ ।୧୦।
ଶେଷରେ ଉପସଂହାର ପରିଶିଷ୍ଟ ବେନି
ଗଦ୍ୟ ପଦ୍ୟ ସମ୍ମିଶ୍ରିତ ଭବମାନ ଘେନି ।୧୧।
କଣ୍ଠେ ବସି "ନାଗର"କୁ କରିଛ ପୂରଣ
ଶ୍ରୀଚରଣେ ଅରପିଲି ଦାସ ଭବ ଘେନ ।୧୨।
ରମ୍ୟ ନରସିଂହପୁର ତାମର ଗ୍ରାମରେ
ଜନମ ଲଭିଲି ବିଧି ପୁଣ୍ୟ ଆଶିଷରେ ।୧୩।

ପିତାଙ୍କ ନାମ ଲକ୍ଷ୍ମଣ ମାତା ମୋ ସେବତୀ
ଗଙ୍ଗେଶ୍ୱରୀ ପ୍ରବଳାଙ୍କ* ଶ୍ରୀଚରଣେ ମତି ।୧୪।
ରଖି ସର୍ବ ଭୂତେ ସର୍ବ ଦେବୀଙ୍କୁ ସମାନ
ମଣି ନାଗର ସେବଇ ଲଭି ମା କଲ୍ୟାଣ ।୧୫।
ସତ୍ୟ ଧର୍ମକୁ ଜଗାଇ ପାପୀଙ୍କୁ ଉଦ୍ଧାର
ଗୋକୁଳର ଦୋଷ ହରି ସୁଜ୍ଞାନ ବିତର ।୧୬।
'ନାଗର" ମୁଦ୍ରଣ କରି ରଖ ତୋର ଯଶ
ପଢ଼ିଇ। ଶୁଣିବା ଜନ ଲଭୁ ତୋ ଆଶିଷ ।୧୭ ।

ରଚୟିତା—ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର
ଗଉରକେଳ

---

ଟୀକା :— * ଗଙ୍ଗେଶ୍ୱରୀ ପ୍ରବଳା :—ଅଧୁନା ଓଡ଼ିଶାର କଟକ ଜିଲ୍ଲାସ୍ଥ ନରସିଂହପୁର; ଅତୀତରେ ନରସିଂହପୁର ପୂର୍ବ ଗଡ଼ଜାତ ନାମରେ ଏକ ସ୍ୱତନ୍ତ୍ର ନରସିଂହପୁର ରାଜ୍ୟରୂପେ ପରିଚିତ ଥିଲା । ଉକ୍ତ ରାଜ୍ୟର ଇଷ୍ଟଦେବୀ ପ୍ରବଳା ଜୟପୁର ପୀଠରେ ପୂଜିତ ହୋଇଆସୁଅଛନ୍ତି ।

— x —

# ପ୍ରଥମ ପରିଚ୍ଛେଦ

ନାଗର ଉତ୍କଳର ଏକ ସ୍ୱତନ୍ତ୍ର ରାଜ୍ୟ ଥିଲା । ଏହି ରାଜ୍ୟର ମୁଖ୍ୟ ପୀଠ ନାଗର ଗଡ଼, ଅଧୁନା ସୁନ୍ଦରଗଡ଼ ଜିଲ୍ଲାର ପାନପୋଷ ମହକୁମା ମଧ୍ୟସ୍ଥ, ବେଦବ୍ୟାସ ଉତ୍ତର ଦିଗ, ସନ୍ନିକଟ ଯମୁନାଢିପ ଗ୍ରାମର ଉତ୍ତର ଭାଗରେ, କୋଇଲି ନଦୀର ପଶ୍ଚିମ ତଟରେ ଅବସ୍ଥିତ । ନାଗବଂଶର ରାଜାଗଣ ଏହି ସ୍ଥଳରେ ଗଡ଼ ନିର୍ମାଣ କରି ନିଜ ବଂଶାନୁଯାୟୀ ଗଡ଼ର ନାମ ନାଗର ଗଡ଼ ଏବଂ ରାଜ୍ୟର ନାମ ନାଗର ରାଜ୍ୟ ରଖିଥିବା ଅନୁମାନ କରାଯାଏ । ସମୟର ବିବର୍ତ୍ତନ ବାଦରେ ଉକ୍ତ ପୁଣ୍ୟଭୂମିରେ ଦାସରାଜା ବଂଶ, ଚେଦିବଂଶ, ନାଗବଂଶ, କେଶରୀ ବଂଶ ଏବଂ ଗଙ୍ଗବଂଶର ଉତ୍ତର ପୁରୁଷ ଶେଖର ଦେଓ ବଂଶର ରାଜାମାନେ ରାଜତ୍ୱ କରିଥିବା ଗାଥା ଜନବାଣୀରେ ମୁଖରିତ ହୋଇ ଆସିଅଛି ।

ମହାକାଳର ନିର୍ଯ୍ୟାତନାରେ ନିପୀଡ଼ିତ ଦାସରାଜା ଗଡ଼ କୋଇଲିର ପୂର୍ବକୂଳରେ ସମାଧିସ୍ଥ ହୋଇ ବେଦବ୍ୟାସ ଧାମକୁ ଅନ୍ତର୍ଦୃଷ୍ଟିରେ ଚାହିଁ ରହିଅଛି । ବ୍ୟାସଦେବ ଜନ୍ମର ଅମୃତ ଅମର ଗୀତି କୋଇଲିର ମୃଦୁ ବାତ୍ୟାରେ ଆନ୍ଦୋଳିତ ହୋଇ ନାଗରକୁ ଭଗବତ ଆନନ୍ଦ ପ୍ରଦାନ କରୁଅଛି ।

ଚେଦି ବଂଶ ନାଗର ସୃଷ୍ଟି ତଥା ନାଗବଂଶୀୟ ଐତିହ୍ୟର ସବିଶେଷ ବିବରଣୀ ସଂଗ୍ରହ କରିବା ସମ୍ଭବ ନ ହେବାରୁ, ନାଗରରେ କେଶରୀ ବଂଶ ରାଜତ୍ୱ ଠାରୁ ସ୍ୱାଧୀନ ଭାରତର ଗଣତନ୍ତ୍ର ଶାସନ ପ୍ରତିଷ୍ଠିତ ହେବା ମଧ୍ୟବର୍ତ୍ତୀ କାଳୀନ ସମୟର ନାଗର ଶାସନ ଚିତ୍ର ନିମ୍ନରେ ଉଲ୍ଲେଖ କରାଯାଇଅଛି ।

ଉତ୍କଳର ପ୍ରସିଦ୍ଧ ରାଜା ଯଯାତି କେଶରୀଙ୍କ ବଂଶଧର ଶ୍ୟାମଳ କେଶରୀ ନାଗରାର ନାଗବଂଶୀୟ ରାଜାଙ୍କୁ ଯୁଦ୍ଧରେ ମାରି ନାଗରର ରାଜା ହେଲେ । ଯମସରଠାରେ ଯମସର କେଶରୀ ଗଡ ନିର୍ମାଣ କରି ରାଜ୍ୟ ଶାସନ କଲେ । ଶ୍ୟାମଳ କେଶରୀଙ୍କ ଠାରୁ ପଦ୍ମକେଶରୀ ପର୍ଯ୍ୟନ୍ତ ବାଇଶିଜଣ (ବାଇଶି ପାଟକ) ରାଜା କେଶରୀ ରାଜତ୍ୱରେ ନାଗରର ମୁଖ୍ୟଗଡ଼ ଯମସର କେଶରୀ ଗଡ଼ରେ ଶାସନ କରିଥିଲେ ।

ଶେଷ ରାଜା ପଦ୍ମକେଶରୀଙ୍କର ଏକମାତ୍ର ସନ୍ତାନ ବୀର କେଶରୀ ଯମସର ଗଡ଼ରେ ପାତାଳୀ ହେବା ପରେ, ରାଜା ତୀର୍ଥଯାତ୍ରା କରି ପଥରେ ସ୍ୱର୍ଗାରୋହଣ କଲେ । ଏହାପରେ ନାଗର ରାଜ୍ୟର ଶାସନ ଯମସର କେଶରୀ ଗଡରେ ସ୍ୱାୟତ୍ତଶାସନ ଭିତ୍ତିରେ ବାରଜଣ ଦଳପତିଙ୍କୁ ନେଇ ଷାଠିଏ ବର୍ଷ ଶାସିତ ହେଲା । ପଞ୍ଚୋକେମେର୍ଙ୍ଗିଆ ସ୍ୱାୟତ୍ତଶାସନର ଶେଷ ରାଜା ଥିଲେ । ଏହାଙ୍କ ସମୟରେ ମୁଖ୍ୟ ପରାମର୍ଶଦାତା ମଣ୍ଡଳୀର ଅନୁମୋଦନ କ୍ରମେ ଯମସର କେଶରୀଗଡ଼, କେଞ୍ଝରୀଗଡ଼ର ରାଜାଙ୍କୁ ନେମା କୁଞ୍ଜମଣିଙ୍କୁ ସ ତଶହ ପଚାଶ ତୋଳା ସ୍ୱର୍ଣ୍ଣ ବିନିମୟରେ ବିକ୍ରୟ କରାଗଲା । ବିକ୍ରୟଲବ୍ଧ ସ୍ୱର୍ଣ୍ଣ ନାଗରର କୌଣସି ଏକ ଅଜ୍ଞାତ ସ୍ଥଳରେ ପୋତି ରଖାଗଲା ।

କୁଞ୍ଜମଣି ଗାଙ୍ଗପୁର ଯୁବରାଜ ଚନ୍ଦ୍ରଭାନୁ ଶେଖର ଦେଓଙ୍କୁ ବିବାହ କରି ନାଗରକୁ ଯୌତୁକ ସୂତ୍ରରେ ଗାଙ୍ଗପୁରରେ ମିଶାଇଲେ । କୁଞ୍ଜମଣିଙ୍କ ସତ୍ତ୍ୱ ନୁସାରେ ନାଗର ରାଜ୍ୟ ଗାଙ୍ଗପୁର ରାଣୀ ଅଧୀନରେ ନାଗର ଜମିଦ୍ର ର ବଂଶଙ୍କ ଦ୍ୱାରା ଶାସିତ ହେଲା । ଭାରତର ସ୍ୱାଧୀନତା ପରେ ଊଣେଇଶ ସତଚାଳିଶ ମସିହା ଡିସେମ୍ବର ଛବିଶ ତାରିଖରୁ ନାଗ୍ରା (ନାଗର) ଇଷ୍ଟେଟର ପରିଚାଳନା ଭାର ନାଗ୍ରା ଜମିଦାର ସ୍ୱର୍ଗତ ଶିବ ନାରାୟଣ ସିଂହ ମହାପାତ୍ରଙ୍କୁ ପ୍ରଦାନ କରାଗଲା । ❋

## ନାଗରର ଅଧିବାସୀ :

ଗଣ୍ଡ, ଭୂୟାଁ, ବ୍ରାହ୍ମଣ, ବିଞ୍ଝିଆ, ଗଉଡ଼, ମାଳି, ଭଣ୍ଡାରୀ, ତେଲି, ଗୁଡ଼ିଆ, ଝରା (କେଉଟ), ତନ୍ତି, ଧୋବା, ପାଣ, କନ୍ଧ କୋହ୍ଲି କୁଡ଼ୁ, ଶବର କିସାନ, ଡେଲକି, ଖଡ଼ିଆ, ବୈଷ୍ଣବ ଓ ଭାଟ ପ୍ରଭୃତି ଜାତିର ଲୋକେ ନାଗରର

ଟୀକା :

❋ ନାଗରର ବର୍ଣ୍ଣିତ କେଶରୀ ବଂଶର ସଂକ୍ଷିପ୍ତ ଇତିହାସ ଏବଂ ନାଗ୍ରା ଇଷ୍ଟେଟ ମ୍ୟାନେଜରଙ୍କ ଘୋଷଣାପତ୍ର ସହିତ ଗାଙ୍ଗପୁର ତଥା ନାଗ୍ରାର କେତେକ ଦରବାରୀ ନଥିପତ୍ରର ନକଲ ଲେଖକର "ସିଂହାବଲୋକନ" କାବ୍ୟରେ ୧୯୮୫ ମସିହାରୁ ପ୍ରକାଶିତ ହୋଇଅଛି । ନାଗ୍ରା (ନାଗର) ଇଷ୍ଟେଟ ଜମିଦାର ଶ୍ରୀମାନ ଶ୍ରୀ ହରିହର ସିଂହ ମହାପାତ୍ରଙ୍କ ଦରବାର ଫଟୋ ଫଟ (ଚିତ୍ର) ନକଲ ନାଗରର ପରିଶିଷ୍ଟରେ ଉଲ୍ଲେଖ କରାଯାଇଅଛି ।

ଅଧିବାସୀ ଥିଲେ । ଏମାନଙ୍କ ମଧ୍ୟରୁ ବ୍ରାହ୍ମଣ, ଭୂୟାଁ ଗଣ୍ଡ; ବାରିକ, ଘଟନିଯୋଗର (ଗଣୀଙ୍କର) ପୃଷ୍ଠପୋଷକ ଥିଲେ । ନିଯୋଗର ଅଂଶୀଦାରମାନଙ୍କ ମଧ୍ୟରୁ କେତେକଙ୍କ ଅଧୀନରେ ଥିବା ମାଲିକାନା ସତ୍ତ୍ୱ ତାଲିକାରୁ ନାଗର ରାଜ୍ୟର ଭୂରାଜସ୍ୱ ଚିତ୍ର ପ୍ରାୟତଃ ୧୯୫୦ ମସିହା ପର୍ଯ୍ୟନ୍ତ ସ୍ପଷ୍ଟ ଅନୁମେୟ କରାଯାଇପାରେ ।

## ନାଗରର ଭୂସମ୍ପତ୍ତି ବିବରଣୀ :

ନାଗର ରାଜ୍ୟର ଭୂସମ୍ପତ୍ତିକୁ ପାଞ୍ଚ ଭାଗରେ ବିଭକ୍ତ କରାଯାଇଥିଲା । ଯଥା – ଜମିଦାର, ଖରପୋଷ, ବାର୍ହି (ହେଡଗଞ୍ଜୁ), ପାଞ୍ଚପାଲି, ଗଞ୍ଜୁ ଏବଂ ଗଉନ୍ତିଆ ।

**ଜମିଦାର :** ଏମାନେ ରାଜାଙ୍କର ମୁଖ୍ୟ ପରାମର୍ଶଦାତା ଏବଂ ସାମନ୍ତରାଜା ଭଳି ଶାସକ ଥିଲେ । ରାଜା ସମଗ୍ର ରାଜ୍ୟର ମୁଖ୍ୟ ଶାସକ ଥିଲେ । ସଂରପାଲି ନାଗର ସରଫଗଡ଼, ହେମଗିରି, ରାଏବରା ଓ ହାତୀବାରୀ ଆଦି ଅଞ୍ଚଳଗୁଡ଼ିକ ଗାଙ୍ଗପୁର ରାଜ୍ୟର ଜମିଦାରୀ ଅଞ୍ଚଳ ରୂପେ ପରିଚିତ ଥିଲା । ସୁନ୍ଦରଗଡ଼ ଗାଙ୍ଗପୁର ରାଜାଙ୍କର ରାଜବାଟୀ ଥିଲା ।

ଗାଙ୍ଗପୁର ରାଜାଙ୍କର ଭ୍ରାତୃଗଣ ବୀରବାଗ, ଲାଇଙ୍ଗ୍, ହେଟପୋଷ, ହେଟବାହାଲ, ଲିଫ୍‌ଲେଇ ଏବଂ ଓଡ଼ଗାଁମାରେ ରହୁଥିଲେ । ଏମାନଙ୍କ ମଧ୍ୟରୁ କେତେକଙ୍କର ବଂଶଧର ବର୍ତ୍ତମାନ ଅଛନ୍ତି ।

**ଖରପୋଷ :** ଖରପୋଷର ଅନ୍ୟ ନାମ ମାଫିଦାର । ରାଜାଙ୍କର ନିଜ ଭାଇ, ସମ୍ପର୍କୀୟ ଭାଇ ଏବଂ ବନ୍ଧୁମାନଙ୍କୁ ଖରପୋଷ ଆକାରରେ ଛୋଟ ଛୋଟ ଅଞ୍ଚଳର ମାଲିକାନା ସତ୍ତ୍ୱ ଦିଆଯାଇଥିଲା । ମାଫିଦାରମାନଙ୍କୁ ଭୂରାଜସ୍ୱ (ଭୂକର) ଛାଡ଼ ଥିଲା । ଖରପୋଷ ଅଧିକାରୀମାନେ ସାମାନ୍ୟ କିଛି ଉପଢୌକନ ଭେଟୀ ସ୍ୱରୂପ ରାଜାଙ୍କୁ ଦେଇ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ହାତୀବାରି ଖରପୋଷ ହାତୀବାରି ଜମିଦାର ଦିଗମ୍ବର ଶେଖରଦେଓଙ୍କ ବଂଶ ଭୋଗ କରୁଥିଲେ ।

ପସର, କଣ୍ଡରୁ, ସିହଲଯୋର, ହରପାଲି, ଝିରପାଣି ଏବଂ ହମିରପୁର ଗ୍ରାମାଞ୍ଚଳଗୁଡ଼ିକୁ ଖରପୋଷ ଆକାରରେ ହମିରପୁର ଖରପୋଷଦାର ମଦନ ବେହେରା, ପାଣ୍ଡୁ ବେହେରା ଭୋଗ କରୁଥିଲେ ।

ରେଲପୋଷ, ଖରପୋଷ, ପତରପାଲି ଖରପୋଷ ଗତାଖଣ୍ଡ ଖରପୋଷ ଏବଂ ଗାଭିଗ ଖରପୋଷ ଅଞ୍ଚଳଗୁଡ଼ିକୁ ଯଥାକ୍ରମେ ଶ୍ୟାମସୁନ୍ଦର ସିଙ୍ଗ୍, ନୀଳାମ୍ବର ସିଙ୍ଗ୍ ଓ ସଦାନନ୍ଦ ସିଙ୍ଗ, ମହେନ୍ଦ୍ର ସିଙ୍ଗ୍ ଏବଂ ହିଗସିଙ୍ଗ୍ ଆଦି ଖରପୋଷଦାରମାନେ ଭୋଗ କରୁଥିଲେ ।

ଲଇଙ୍ଗ, ହେଡପୋଷ, ରାଇକେରା, ଚାର୍କି, ବିଲେଇଗଡ଼ଗଡ଼ିକୁ ଖରପୋଷ ନାମରେ ନାମିତ କରାଯାଇଥିଲା । ତେନ୍ତେରକେଲ ଖରପୋଷ ନାଗରା ଜମିଦାରଙ୍କ ବଂଶଜ କୁଶ ପ୍ରଧାନ ଅଧୀନରେ ଥିଲା । ଏହାଙ୍କର ବଂଶଧର ଜୀବୀତ ଅଛନ୍ତି ।

**ବାର୍ହ:** ପାଞ୍ଚଖଣ୍ଡରୁ ଅଧିକ ଗ୍ରାମ ବାର୍ହଦାର ଅଧୀନରେ ଥିଲା । ବାର୍ହର ଅପର ନାମ ଇଲକାଦାର । ଇଂରେଜ ଶାସନ ଅମଳରେ ବାର୍ହକୁ ହେଡଗଞ୍ଜୁ ରୂପେ ନାମିତ କରାଗଲା । ଏମାନେ ଭୂରାଜସ୍ୱର ଶତକଡ଼ା ପଇଁଚାଳିଶ ନିଜେ ଭୋଗକରି ଅବଶିଷ୍ଟ ପଞ୍ଚାବନ ରାଜକୋଷକୁ ଦେଉଥିଲେ । କେତେକ ଅଞ୍ଚଳକୁ ନେଇ ଗୋଟିଏ ଗୋଟିଏ ବାର୍ହ ଗଠିତ ହୋଇଥିଲା । ବାର୍ହଦାରଙ୍କ ଅଧୀନରେ ଥିବା ଗ୍ରାମସଂଖ୍ୟା ଏବଂ ଅଧୀକାରୀଙ୍କ ବଂଶଜ ନାମ ନିମ୍ନଲିଖିତ ବିବରଣୀରୁ ଜଣାପଡ଼େ ।

କୁଶ ପ୍ରଧାନ ବଂଶ ଜରେଇକେଲା କାତେପୁର ବାର୍ହ ପଗ୍ରଣରୁ ପଞ୍ଚାବନ ଖଣ୍ଡି ମୌଜାକୁ ନେଇ ନାମିତ କରାଯାଇଥିଲା । ବର୍ତ୍ତମାନ ପର୍ଯ୍ୟନ୍ତ ତିରିଶରୁ ପଇଁତିରିଶ ଗ୍ରାମର ଭୂସମ୍ପତ୍ତିକୁ କୁଶ ପ୍ରଧାନ ବଂଶଧରମାନେ ଭୋଗ କରୁଅଛନ୍ତି ।

ନାଗରାର ପ୍ରଖ୍ୟାତ ବୀର ଉପରୋକ୍ତ କୁଶ ପ୍ରଧାନ ଖ୍ୟାତି ଏହି ରାଜ୍ୟର ଜନସାଧାରଣଙ୍କ ମୁଖରେ ଅଦ୍ୟାବଧି ପର୍ଯ୍ୟନ୍ତ ମୁଖରିତ ହୋଇ ଆସିଅଛି ।

ତେନ୍ତେରକେଲା ଖରପୋଷ ଅଧିକାରୀ ନାଗରା ଜମିଦାର (ସିଂହ ମହାପାତ୍ରଙ୍କ ବଂଶଜ କୁଶ ପ୍ରଧାନ ଏବଂ ଜରେଇକେଲା କାତେପୁର ବାର୍ହ ଅଧୀକାରୀ କୃଷ୍ଣ ପ୍ରଧାନ ଉଭୟଙ୍କ ମଧ୍ୟରୁ ନାଗରାର ପ୍ରଖ୍ୟାତ ବୀର କୁଶ-ପ୍ରଧାନ କିଏ ? ଏ ସମ୍ପର୍କରେ ଦୁଇ ପ୍ରକାର ମତବାଦ ଜନଶ୍ରୁତିରୁ ମିଳୁଛି । ଦଳେ ତେନ୍ତେରକେଲା ଖରପୋଷଦାରଙ୍କୁ ସ୍ୱୀକାର କଲାବେଳେ ; ଅପରଦଳ ଜରେଇକେଲା କାତେପୁର ବାର୍ହଦାରଙ୍କୁ ସ୍ୱୀକୃତି ଦେଉଅଛନ୍ତି ।

ଲେଖକ ଉଭୟ ଦଳଙ୍କୁ ସମ୍ମାନ ଦେଇ କୁଶ ପ୍ରଧାନର ବୀରତ୍ୱଗାଥାକୁ ସ୍ୱ କାବ୍ୟ ସିଂହାବଲୋକନରେ ସ୍ଥାନ ଦେଇଅଛି । ମୁଦ୍ରଣ ପରେ ଜଟେଇକେଲା କାତେପୁର ବାହ୍ଁ ବଂଶଧର ଶ୍ରୀ ଚକ୍ରଧର ପ୍ରଧାନଙ୍କ ହସ୍ତ ଦସ୍ତଖତ ଥିବା ଏକ ଚିଠି ଗତ ଉଣେଇଶି' ଛୟାଅଶି ମସିହା ଅଗଷ୍ଟ (ଭାଦ୍ରବ ଆରମ୍ଭ)ରେ ପାଇଅଛି । ଉକ୍ତ ପତ୍ରରେ କୁଶ ପ୍ରଧାନଙ୍କ ବଂଶାବଳୀ ଏବଂ ବୀରତ୍ୱ ଗାଥା ବର୍ଣ୍ଣିତ ହୋଇଅଛି ।

ବିଶ୍ରାବାର୍ହ୍ : ବିଶ୍ରାବାହ୍ଁ ମଦର ନାୟକ, ଖଗେଶ୍ୱର ନାୟକ, ମଣିଧର ନାୟକଙ୍କ ଅଧୀନରେ ଥିଲା । ବାରଗୋଟି ମୌଜାକୁ ନେଇ ଏହି ବାର୍ହ୍ ଗଠିତ ହୋଇଥିଲା । ଏହାର ଅଧିକାରୀଙ୍କ ପିତୃପୁରୁଷଗଣ ଯମସର କେଶରୀ ରଜାଙ୍କ ପାଇକ ଥିଲେ ।

ଡୁମିର୍ଡା ବାର୍ହ୍ (ଦେବୀ ଗଡ଼) : ଅଧୁନା ଝିରପାଣି ନିବାସୀ ଶ୍ରୀ ଜଗନ୍ନାଥ ମାଝିଙ୍କ ପୂର୍ବପୁରୁଷଙ୍କ ଅଧୀନରେ ଡୁମିର୍ଡା ବାହ୍ଁ ଥିଲା । କେତେ-କାଳ ପରେ ଏମାନେ ଅହିରବନ୍ଧ ବାହ୍ଁ ଅଞ୍ଚଳର ଅଧିକାରୀ ହୋଇ ପଇଁତିରିଶ ମୌଜା ଭୋଗ କରୁଥିଲେ । ଅନେକ କାଳ ପରେ ସାତଟି ଗ୍ରାମ କଟିଯାଇ, ଅଠେଇଶିଟି ଗ୍ରାମର ମାଲିକାନା ବାହଁଦାର (ହେଡ୍‌ଗଞ୍ଜୁ) ସତ୍ୱ ସ୍ୱାଧୀନ ଭାରତ ଜମିଦାରୀ ଉଚ୍ଛେଦ ପର୍ଯ୍ୟନ୍ତ ଏମାନେ ଭୋଗ କରୁଥିଲେ । ଏହି ବଂଶର ମୁଣ୍ଡା ମାଝି, କପିଳ ପଣ୍ଡାଙ୍କ ଦ୍ୱାରା ଜଗନ୍ନାଥ ବିଗ୍ରହ ପ୍ରତିଷ୍ଠା କରାଇ ଜଗନ୍ନାଥ ଏବଂ ରଥଯାତ୍ରାର କୀର୍ତ୍ତି ସ୍ଥାପନ କରିଯାଇଅଛନ୍ତି । ଜଗନ୍ନାଥ ମାଝିଙ୍କ ପୂର୍ବସୂରୀଗଣ ଯମସର ଗଡ଼ କେଶରୀ ରଜାଙ୍କ ପାଇକ ଥିଲେ ।

ଏରେଗେଡ଼ା ବାର୍ହ୍ : ଏରେଗେଡ଼ା (ବଲଣି) ବାହ୍ଁ ବାରଟି ଗ୍ରାମକୁ ନେଇ ଗଠିତ ହୋଇଥିଲା । ଏହି ବାହ୍ଁ ଲୋଚନ ଅମାତ ରାମଚନ୍ଦ୍ର ଅମାତଙ୍କ ବଂଶଧର ଅଧୀନରେ ଥିଲା । ଏହାର ମାଲିକାନା ସତ୍ୱ ମଦନ ମୋହନଙ୍କ ପର୍ଯ୍ୟନ୍ତ ବଳବତ୍ତର ଥିଲା । ସ୍ୱର୍ଗତ ମଦନମୋହନ ଅମାତ ଓଡ଼ିଶା ବିଧାନ ସଭାର ସଦସ୍ୟ ଥିଲେ । ଏହାଙ୍କ ପୁତ୍ର ଶ୍ରୀ ଦେବାନନ୍ଦ ଅମାତ ଲୋକ-ସଭାର ସଦସ୍ୟ ଥିଲେ । ବର୍ତ୍ତମାନ ସେ ଲୋକସଭା ସଦସ୍ୟ ଭତ୍ତା ପାଉଅଛନ୍ତି । ଉକ୍ତ ବଂଶର ପୂର୍ବପୁରୁଷମାନେ ଯମସର କେଶରୀ ବଂଶର ପାଇକ ଥିଲେ ।

କେମାଙ୍ଗ ଗଡ (ସେମେର୍ତ୍ତା) ବାହି : ଉକ୍ତ ବାହିର ଅଧିକାରୀ ଯମସଗ କେଶରୀ ଗଡ଼ ରଜାଙ୍କର ମୁଖ୍ୟ ସେନାପତି ପଟୋକେମେଙ୍ଗିଆ ରୂପେ ପରିଚିତ ଥିଲେ । ବ୍ରିଟିଶ ରାଜତ୍ୱ ସମୟରେ କେମେଙ୍ଗିଆ ବଂଶ ସେମାନଙ୍କ ପଦବୀ ପରିବର୍ତ୍ତନ କରି ନାୟକ ପଦବୀ ଗ୍ରହଣ କଲେ । ଏହି ବଂଶର ଭୁଲେଶ୍ୱର ନାୟକ ସେମେର୍ତ୍ତା ବାହିର ଅଧିକାରୀ ଥିଲେ । ଏହାଙ୍କ ପୁତ୍ର ସ୍ୱର୍ଗତ କୃଷ୍ଣଚନ୍ଦ୍ର ନାୟକ ଓଡ଼ିଶା ବିଧାନ ସଭାର ସଦସ୍ୟ ଥିଲେ । ଲେଖକର ସିଂହାବଲୋକନ ପାଣ୍ଡୁଲିପିଟି କୃଷ୍ଣଚନ୍ଦ୍ର ନାୟକ ପଢ଼ି ଯେଉଁ ମୌଖିକ ମନ୍ତବ୍ୟ ଦେଇଥିଲେ ସେ ମନ୍ତବ୍ୟ ସବୁଦିନ ଲେଖକ ପ୍ରାଣରେ ଅପାର ଆନନ୍ଦ ସୃଷ୍ଟି କରି ଆସୁଅଛି । ମନ୍ତବ୍ୟଟି ହେଉଛି "ଆପଣ ମୋ ଗୃହକୁ ଜଣେ ପର୍ଯ୍ୟଟକ୍ ହିସାବରେ ଆସି ମୋର ହଜିଲା ରତ୍ନକୁ ମୋ ହସ୍ତରେ ଉପଢୌକନ ଦେଇ ପାରିଥିବାରୁ, ଏହାଠାରୁ ଅଧିକ ଆନନ୍ଦ ମୋ ପାଖରେ ଆଉ କ'ଣ ଅଛି ? ଆପଣ ଦୟାକରି ମୋ ଜୀବୀତାବସ୍ଥାରେ ଏହାକୁ ମୁଦ୍ରଣ କରାଇଲେ ଆମେ ଅଶେଷ ଉପକୃତ ହେବୁଁ ।" ପରିତାପର ବିଷୟ ବାହଦାରଙ୍କ ଜୀବଦ୍ଦଶାରେ ଲେଖକ ସିଂହାବଲୋକନ ପାଣ୍ଡୁଲିପି ଛପାଇବା ପାଇଁ ସମର୍ଥ ହୋଇ ପାରିଲା ନାହିଁ ।

ଲୁକୁମବେଡ଼ା ବାହି : ସତରା ବିଂଶୀଧର ନାୟକଙ୍କ ବଂଶ ମାଝି ପଦବୀରେ ରହି ଲୁକୁମବେଡ଼ା ବାହିର ବାହିଦାର ଥିଲେ । ବର୍ତ୍ତମାନ ଯଦୁମଣି ନାୟକ ମାଝି ବାହିଦାରଙ୍କ ବଂଶଜ ଅଟନ୍ତି ।

କଲଙ୍ଗବୀର ବାହି : ଏହି ବାହି ମିର୍ଦ୍ଧା (ବିଞ୍ଝିଆ) ବଂଶ ବାହିଦାରଙ୍କ ଦ୍ୱାରା ପରିଚାଳିତ ହେଉଥିଲା ।

ପାଞ୍ଚପାଲି : ପାଞ୍ଚଗୋଟି ଗ୍ରାମର ପରିସୀମାକୁ ନେଇ ପାଞ୍ଚପାଲି ନାମିତ ହେଉଥିଲା । ପାଞ୍ଚପାଲିର ଅଧିକାରୀ ଭୂ-ରାଜସ୍ୱ (ଭୂକର) ଶତକଡ଼ା ପଇଁତିରିଶ ନିଜେ ଭୋଗ କରି ଅବଶିଷ୍ଟାଂଶ ଶତକଡ଼ା ପଞ୍ଚଷଠି ରାଜକୋଷରେ ଜମା ଦେଉଥିଲେ ।

ରାଉରକେଲା ପାଞ୍ଚପାଲି : ରାଉରକେଲା, ଝାରମୁଣ୍ଡା, ଉର୍ଦ୍ଧମ (ବର୍ତ୍ତମାନ ଇସ୍ପାତ ସହରର ଏକବିଂଶ ସେକ୍ଟର), କରଲା ଖମନ (ସୁନା ପାହାଡ଼ ଅଞ୍ଚଳ) ଟାଙ୍ଗରପାଲି ଏବଂ ଭଙ୍ଗାମୁଣ୍ଡା ପ୍ରଭୃତି ଗ୍ରାମାଞ୍ଚଳକୁ ନେଇ ରାଉରକେଲା ପାଞ୍ଚପାଲି ନାମିତ ହୋଇଥିଲା ।

ଅଧୁନା ରାଉରକେଲା ରେଳଷ୍ଟେସନ ଅଞ୍ଚଳ ପୂର୍ବର ମହୁଲ ପାଲି ନାମରେ ନାମିତ ହୋଇଥିଲା । ମହୁଲ ପାଲିର ପୂର୍ବକୁ ପ୍ରାୟ ଦୁଇମାଇଲ ଉର୍ଦ୍ଧ ଦୂରରେ ପ୍ରକୃତ ପ୍ରାଚୀନ ରାଉରକେଲା ଗ୍ରାମ ଥିଲା । ଏହି ଗ୍ରାମରେ ଭୂୟାଁ-ମାନେ ବାସ କରୁଥିଲେ । ଏହାର ଅନ୍ୟ ନାମ ରାଉରକେଲା ପାଞ୍ଚପାଲି ଥିଲା । କାଳକ୍ରମେ ପାଞ୍ଚପାଲି ନାମ ଲୋପ ହୋଇ କେବଳ ରାଉରକେଲା ନାମ ସରକାରୀ ଖାତାରେ ରହିଲା । ରାଉରକେଲା ଗ୍ରାମର ଗଞ୍ଜ ଗୋବିନ୍ଦ ନାୟକ (ଭୂୟାଁ) ଥିଲେ । ଏହାଙ୍କ ପୂର୍ବ ପୁରୁଷଗଣ ପାଞ୍ଚପାଲି ଭୋଗ କରିଥିଲେ । ଗୋବିନ୍ଦ ନାୟକଙ୍କ ପୁତ୍ର ମଣିଧର ନାୟକଙ୍କ ଅମଳରେ ରାଉରକେଲା ଗଞ୍ଜଆନା ସ୍ୱତ୍ୱ ଲୋପ ପାଇଲା । ଗୋବିନ୍ଦଙ୍କ ପୁତ୍ର ଭଗୀରଥି ନାୟକ ବିରକେରାରେ ରହିଲେ ।ଭଗୀରଥିଙ୍କ ବଂଶଧର ଜୀବିତ ଅଛନ୍ତି ।

ପାଞ୍ଚପାଲି ପରେ ଉର୍ଦ୍ଧମ ନାଗରା ଜମିଦାର ବଂଶଜ; ଝାଗମୁଣ୍ଡା ତାମ୍ଭୁଡ଼ିଆ; ଭଙ୍ଗାମୁଣ୍ଡା ଓରାମ; ଟାଙ୍ଗର ପାଲି ରାଉଟିଆ ଏବଂ ରାଉରକେଲା ଭୂୟାଁ ଜାତିର ଗଞ୍ଜମାନଙ୍କ ଅଧୀନରେ ରହିଲା ।

ରାଉରକେଲା ନାମକରଣ : ପ୍ରାଚୀନ ରାଉରକେଲା ଗ୍ରାମରେ ବିଶେଷ ଖ୍ୟାତି ସମ୍ପନ୍ନ ରାଉଳିଆ (ଭୂୟାଁ ସମ୍ପ୍ରଦାୟର ତନ୍ତ୍ରସାଧକ)ମାନେ ରହୁଥିଲେ । ରଉଳିଆମାନଙ୍କ ବାସସ୍ଥାନ ନାମ ରଉଳିଆ ଥିଲା । କାଳକ୍ରମେ ରାଉଳିଆ ନାମ ପରିବର୍ତ୍ତିତ ହୋଇ ରାଉରକେଲା ନାମ ଧାରଣ କଲା । ଉକ୍ତ ଗାଥା ସ୍ଥାନୀୟ ବାସିନ୍ଦା ବୃଦ୍ଧବ୍ୟକ୍ତିମାନେ କହି ଆସିଅଛନ୍ତି ।

ବିରକେଲା ପାଞ୍ଚପାଲି କୁଉଁ ନାୟକ, ଶତ୍ରୁଘନ ନାୟକ, ବଲଣ୍ଡା ପାଞ୍ଚପାଲି ଓ କିଲିଙ୍ଗ ପାଞ୍ଚପାଲି ଉଭୟ ତର୍ଙ୍କିଆ ଚାଟ, ସତର୍ଷା-ପାଞ୍ଚପାଲି (ସାତରୁ ଆଠ ଗ୍ରାମକୁ ନେଇ) ବଂଶୀଧର ନାୟକଙ୍କ (କେଶରୀ ରାଜାଙ୍କ ପାଇକ ବଂଶ) ଆଦିଙ୍କର ପାଞ୍ଚପାଲି ଭୂସତ୍ୱ ଅଧୀନରେ ଥିଲା ।

ଗଞ୍ଜୁ (ଗଞ୍ଜୁଆନା) : ଏକ ଗ୍ରାମ ଅଥବା ଏକରୁ ଊର୍ଦ୍ଧ୍ୱ ଗ୍ରାମ ସଂଖ୍ୟକ ଅଞ୍ଚଳକୁ ଗଞ୍ଜଆନା ନାମରେ ନାମିତ କରାଯାଇଥିଲା । ଏହାର ସତ୍ୱାଧିକାରୀମାନଙ୍କୁ ଗଞ୍ଜୁ ଆଖ୍ୟା ଦିଆଯାଇଥିଲା । ଗଞ୍ଜୁମାନେ ଶତକଡ଼ା ପଚିଶ ଭୋଗକରି, ଶତକଡ଼ା ପଞ୍ଚସ୍ତରୀ ଅଂଶ ଭୂ-ରାଜସ୍ୱ ରାଜକୋଷକୁ ଦେଉଥିଲେ । ଗଞ୍ଜୁମାନଙ୍କ ଅଧୀନରେ ଗଉଟିଆମାନେ ଗ୍ରାମର ଭଲ ମନ୍ଦ ବୁଝୁଥିଲେ ।

ଜବା ଘାଟ, ଦୁର୍ଗାପୁର, ତୁମ୍ବକେଲା, ବିଜୁବନ୍ଧ, ରିଉଁ, କଦଳୀ ବାହାଲ, ବଣ୍ଡୋମୁଣ୍ଡା, ଗଇଲେ ଗର୍ଜନ, ମାହାଲିଆ ପାଲି, ଦଣ୍ଡିଆ ପାଲି, କନଉସ୍ଥୁଆଁ, ଓଛାନି, ବୈଦ୍ୟନାଥପୁର, ପୂର୍ଣ୍ଣାପାନି (ପୁରୁଣା ପାଣି) ମିଲିମିଲି, ଝରାବାହାଲ, ଗୁନ୍ଦିପୋଷ, ଉସରା, ବିଜାଡ଼ିହୀ, ହେରାପୋଷ (ଦାନ ସ୍ୱରୂପ ଉସରା ଗଞ୍ଜୁ ପୁରୁଷୋତ୍ତମ ରଥଙ୍କୁ ମିଳିଥିଲା ) ଏବଂ କନ୍ଦରକେଲା ଆଦି ଗ୍ରାମଗୁଡ଼ିକ ବ୍ରହ୍ମୋତ୍ତର ରୂପେ ବ୍ରାହ୍ମଣ ଗଞ୍ଜୁମାନଙ୍କ ଦ୍ୱାରା ଶାସିତ ହେଉଥିଲା ।

ଟାଙ୍ଗରାଣୀ—ତିନି ଗୁଡ଼ୋଟି ମୌଜାକୁ ନେଇ ବୈରୀଗଞ୍ଜନ ନାୟକ ଟାଙ୍ଗରାଣୀର ଗଞ୍ଜୁ ଥିଲେ ।

ସିହିରିଆ ଗଞ୍ଜୁଆନା ସୂତ୍ରରେ ଭୂୟାଁ ପାଇକ ଆଖଡ଼ାର ଗୁରୁଙ୍କ ବଂଶଧରଙ୍କୁ ଦିଆଯାଇଥିଲା ।

ଦେଶ କାଲେ କମ୍ପୁ କାଲେଙ୍କ ବଂଶଧରମାନେ ଇଡ଼ୋସରା, ବାନିଗୁନି, ସଟେଣ୍ଡା ପୋଷ, ପଦମ-ପୁର (ପଦ୍ମପୁର), କେଉଟେନ ପୋଷ, ଚଟା ଲୁଙ୍ଗେଇ ପ୍ରଭୃତି ମୌଜାର ଗଞ୍ଜୁଆନା ସତ୍ତ୍ୱ ଭୋଗ କରୁଥିଲେ ।

ଶମର ଝୁଲ, ରୁଟୁକୁ ପିଡ଼ି, ଜିଆ ବାହାଲ, ଯମୁନା ଢିପା, ମାଣ୍ଡିଆ କୁଦର, ବସ୍ତୁଆ ଆଦି ଗ୍ରାମଗୁଡ଼ିକର ଗଞ୍ଜୁଆନା ସତ୍ତ୍ୱ ଗଉଡ଼ମାନଙ୍କ ଅଧୀନରେ ଥିଲା ।

ପଟୁଆ ଏବଂ ସୁଇଡ଼ିହୀ ଉଭୟରେ କିସାନ ଗଞ୍ଜୁ ଥିଲେ ।

ବନମୁଣ୍ଡା, ବ୍ରାହ୍ମଣମରା, ତଲସରା, ଭଣ୍ଡାର ପ୍ରଭୃତି ମୌଜାଗୁଡ଼ିକର ବିଞ୍ଝିଆ ଗଞ୍ଜୁ ଥିଲେ ।

ଗାଙ୍ଗପୁରର ପଦା ଲମଲେଇ, ଲିପଲେଇ, ଗୁଡିଆଲି, ଝାରବେଡ଼ା ଆଦି ଗ୍ରାମଗୁଡ଼ିକ ପ୍ରଖ୍ୟାତ ବୀର ମାଦ୍ରିକାଲେଙ୍କ ବଂଶଧରଙ୍କ ଗଞ୍ଜୁଆନା ଅଧୀନରେ ଥିଲା ।

ବନକୋବା, କରଡେଗା, ଇନ୍ଦରପୁରରେ ଯଥାକ୍ରମେ କୃଷ୍ଣଚନ୍ଦ୍ର ନାୟକ, ମୁରଲୀଧର ମିର୍ଦ୍ଧା, ସାଧୁ ବଡାଏକ, ବିଞ୍ଝିଆ ଗଞ୍ଜୁ ରୂପେ ସୁପରିଚିତ ଥିଲେ । ମଧୁପୁର ମଧ୍ୟ ବିଞ୍ଝିଆ ଗଞ୍ଜୁ ଅଧୀନରେ ଥିଲା ।

ଲସେ-ବଘିଆଯୋର ବେଣ୍ଡାପଡ଼ା ଲସେ କବିତା ପାଠକ (ଆବୃତ୍ତିକାର) ମାନଙ୍କୁ ପ୍ରଦତ୍ତ ହୋଇଥିଲା ।

ଅଟାଘାଟ ଚଣ୍ଡୀ ସେବାକାରୀଙ୍କୁ ଗଞ୍ଜୁ ରୂପେ ଦାନ କରଯାଇଥିଲା ।

ଗୋପପୁର, ସାତ ଯୁଆଡ଼ି, କରମା ବାହାଲ, କୁଣ୍ଡଗ, ବାଘଢ଼େଗା, ଘୋଡ଼ାବନ୍ଧ ଆଦି ଗ୍ରାମଗୁଡ଼ିକର ତେଲି ଗଞ୍ଜୁ ଥିଲେ ।

ନାକଖେଣ୍ଡି, ଚୂରିଆ ଗଞ୍ଜୁ, ଲୁଆକେଗ, ବିଷପୁର ଓ ଖୁଣ୍ଟଗାଁରେ ଖରଡ଼ା (କଂସାରୀ) ଗଞ୍ଜୁ ଥିଲେ ।

ଭଲୁଲତା ଜମିଶାଳୀ ଆକାରରେ ଉର୍କିଆ ପ୍ରଧାନ ପଟକା ଅଧୀନରେ ଥିଲା ।

ସରଲରେ ସର୍ଲିଆ ବଂଶର ଲୋକେ ରହୁଥିଲେ ।

ସୁନା ପର୍ବତ ବାଘଲତା ଅର୍ବା ମିଟକେରକେଟା ଟିମ୍‌ଯୋର ଗୋପଡ଼ିହୀ (ଗୁପଡ଼ିହୀ) କଂସର ଦେଓଗାଁ ବେଲଡ଼ିହୀ ଛେଣ୍ଡ୍ ଗର୍ଜନ ଲଇଙ୍ଗ୍ ଗଏକେଗ କୁଆଁରମୁଣ୍ଡା ପଦ୍ମପୁର ଜବାଘାଟ ଟାଇଁସର ଆଦି ଗ୍ରାମ-ଗୁଡ଼ିକରେ ଝଗ ମାଝିଆ ଓ କେଉଟମାନଙ୍କର ବସତିମାନ ଥିଲା । ବର୍ତ୍ତମାନ ମଧ୍ୟ ଅଛନ୍ତି ।

ଧୋବା ନାପିତ ତେଲି ପାଣ କୁମ୍ଭାର (ଯଥା : ରଣା କୁମ୍ଭାର, ତାମ୍ବୁଡ଼ିଆ କୁମ୍ଭାର, ନାଗପୁରିଆ କୁମ୍ଭାର) କୁଡ଼ୁ ଆଦି ଜାତିର ଲୋକେ ସେବା-କାରୀ ରୂପେ ରହିଥିଲେ ।

ଅନ୍ୟାନ୍ୟ ଭୂୟାଁ (ଖଣଣ) ଇଚ୍ଛାଧୀନ ଜମି ଗ୍ରହବାସ କରି ଚଳୁଥିଲେ । ଏମାନେ ରଜାଙ୍କର ପଦାତିକ ସୈନିକ ରୂପେ ରହିଥିଲେ ।

କେତେକ କିସାନ "କଳା ପିଠିଆ ପ୍ରଜା" ଉପାଧି ପାଇଥିଲେ । ମାଲିକମାନେ ପ୍ରତି ଦେବା-ଦେବୀ ସେବା କିମ୍ବା ଦୁର୍ଗାଷ୍ଟମୀ ପୂଜନ କରିବା ସମୟରେ ଏହି ପ୍ରଜାଙ୍କ କାନ୍ଧରେ ବହୁପରିମାଣରେ ଜଡ଼ାତେଲ ଢଳାଇ ଏମାନଙ୍କୁ ସମ୍ବର୍ଦ୍ଧନା ଅର୍ଥାତ୍ କଲ୍ୟାଣ କରୁଥିଲେ । ଏମାନଙ୍କୁ ସେବାକାରୀ ଶ୍ରେଣୀରେ ଅନ୍ତର୍ଭୁକ୍ତ କରଯାଇଥିଲା ।

ପାଣ ଡମ ତନ୍ତ୍ରଶିଳ୍ପକମାନେ ସେବକ ରୂପେ ଜମି ବାଡି ଚାଃଯଗିର (ଜାଗିରି) ପାଇ ରହିଥିଲେ ।

ହରିନାମ ଶ୍ରବଣ କରଉଥିବା ବୈଷ୍ଣବ ସମ୍ପ୍ରଦାୟର ଲୋକମାନେ ଏବଂ ଥାଳ ଧରି ଭିକ୍ଷା କରିବା ଯୋଗୀମାନେ କେତେକ ଗ୍ରାମରେ ସୁବିଧା ନେଇ ବସବାସ କରୁଥିଲେ ।

ପୁରୁଣା ପାଣି : ପୁରୁଣା ପାଣିର ଘାଷି ନାୟକ ପୂର୍ବସୂରୀମାନେ ଯମସର କେଶରୀ ଗଡ଼ର ମୁଖ୍ୟ ଜଗୁଆଳି ଥିଲେ । ଏମାନଙ୍କୁ ଗଡ଼ନାୟକ ପଦବୀ ମିଳିଥିଲା ।

ଗମ୍ଭାରୀ ଡ଼ିହୀ : ଶ୍ରୀକ୍ଷେତ୍ରର ଶ୍ରୀଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଗମ୍ଭାରୀଡ଼ିହୀ ଦେବୋତ୍ତର ଜମି ଶ୍ରୀ ଗଜେନ୍ଦ୍ର ମାଝି ଚାଷ କରୁଅଛନ୍ତି । ଏହାଙ୍କର ପୂର୍ବପୁରୁଷମାନେ ଝଗଡ଼େଶ୍ୱରୀ ଠାକୁରାଣୀଙ୍କ ସେବକ ଥିଲେ ।

ଦେଓଗାଁ :ସ୍ୱର୍ଗତ ଲକ୍ଷ୍ମଣ ଦେହୁରୀ ଦେଓଗାଁ ଶିବାଳୟର ମୁଖ୍ୟ ପୂଜକ ଥିଲେ । ବର୍ତ୍ତମାନ ଏହାଙ୍କର ବଂଶଧର ଉକ୍ତ ଶିବଙ୍କର ସେବା କରୁ-ଅଛନ୍ତି । ସ୍ୱର୍ଗତ ଲକ୍ଷ୍ମଣ ଦେହୁରୀଙ୍କ ପୂର୍ବ ସୂରୀଙ୍କ ଅଧୀନରେ ବାଚଖଣ୍ଡି ମୌଜା ଦେବୋତ୍ତର ଜମି ହିସାବରେ ଥିଲା ।

ଚୈନପୁର : ଚୈନପୁରର ଗଞ୍ଜୁ ସ୍ୱର୍ଗତ ଗଣେଶ ଗଉଡ । ଏହାଙ୍କ ପୂର୍ବଜଙ୍କ ଠାରୁ ବର୍ତ୍ତମାନ ବଂଶଜ ପର୍ଯ୍ୟନ୍ତ କୋଇଲି ନଦୀ ନିକଟସ୍ଥ ବ୍ରାହ୍ମଣୀ ପାହାଡ଼ ପାଦଦେଶରେ ଥିବା ବ୍ରାହ୍ମୀ ଠାକୁରାଣୀଙ୍କ ଦେବୋତ୍ତର ଭୂସମ୍ପତ୍ତି ଭୋଗ କରି ଦେବୀଙ୍କ ସେବା କରି ଆସୁଅଛନ୍ତି ।

ବେଦବ୍ୟାସ : ବେଦବ୍ୟାସ ଧାମ ସନ୍ନିକଟ ଦେହୁରୀ ପଡ଼ାର ସ୍ୱର୍ଗତ ଗଦାଧର ଦେହୁରୀ ବେଦବ୍ୟାସ ଶିବାଳୟର ଦେବୋତ୍ତର ଜମି ଭୋଗ କରି ଶିବଙ୍କର ସେବା କରୁଥିଲେ । ଏହାଙ୍କ ବଂଶଧରମାନେ ଅଦ୍ୟାବଧି ଦେବୋତ୍ତର ଜମି ଭୋଗ କରି ଠାକୁରଙ୍କ ସେବା କରୁଅଛନ୍ତି ।

ଏତଦ୍ ବ୍ୟତୀତ ଦୁଧ ଖଡ଼ିଆ କିସାନ ଖଡ଼ିଆ ଓଗମ ମୁଣ୍ଡା ଏବଂ ଅନ୍ୟାନ୍ୟ ସମ୍ପ୍ରଦାୟର ଲୋକେ ଯଥାକ୍ରମେ ବିରୁନାଗପୁର, କେଶରପୁର, ମାନଭୂମ,

ସିଂହଭୂମ, ଧଳଭୂମ ଓ ଶିଖରଭୂମ ଆଦି ପଡ଼ୋଶୀ ରାଜ୍ୟରୁ ଆସି ନାଗରର ଅସ୍ଥାୟୀ ବାସିନ୍ଦା ହେଲେ । ଏମାନଙ୍କର ପରବର୍ତ୍ତୀ ବଂଶଧରମାନେ କାଳକ୍ରମେ ନାଗରାର ସ୍ଥାୟୀ ବାସିନ୍ଦା ହୋଇ ଏ ପର୍ଯ୍ୟନ୍ତ ଏହି ଅଞ୍ଚଳରେ ରହିଆସିଅଛନ୍ତି ।

## ଭୂସମ୍ପତ୍ତି ଓ ସାମାଜିକ ସଂସ୍କୃତିର ବିବର୍ତ୍ତନବାଦରେ ବର୍ତ୍ତମାନ ସ୍ଥିତି :

ନାଗରର ବର୍ଣ୍ଣିତ ଭୂସମ୍ପତ୍ତି ବିବରଣୀର ଚିତ୍ର ଆମ ସ୍ୱାଧୀନ ଭାରତ ଗଣତନ୍ତ୍ର ସରକାରଙ୍କ ଜମିଦାରୀ ଉଚ୍ଛେଦ ନିୟମରେ ପରିବର୍ତ୍ତିତ ହୋଇ ; ତହିଁରୁ କେତେକ ପୂର୍ବସର୍ତ୍ତର ଜମି ଉପରୋକ୍ତ ନାଗରବାସୀଙ୍କ ଅନ୍ତର୍ଭୁକ୍ତ ବଂଶଜମାନେ ଭୋଗ କରୁଅଛନ୍ତି । ଅବଶିଷ୍ଟ ଭୂସମ୍ପତ୍ତିରୁ ଅଧିକାଂଶ ଅଞ୍ଚଳକୁ ନାନାବିଧ ସରକାରୀ ବେସରକାରୀ ଅନୁଷ୍ଠାନ ଓ ଶିକ୍ଷାଞ୍ଚଳରୂପେ ଘୋଷିତ କରଯାଇ ସେଥିରେ ଅନୁଷ୍ଠାନ ସହିତ ଅନୁଷ୍ଠାନର ସ୍ଥାୟୀ ଅସ୍ଥାୟୀ କର୍ମଚାରୀମାନଙ୍କୁ ସ୍ଥାପନ କରାଯାଇଅଛି । କେତେକ ସ୍ଥଳରେ ପୂର୍ବର ଜନବସତି ନାମରେ ଉପନାମ ଦିଆଯାଇ ନୂତନ ଜନବସତି ମୁଣ୍ଡ ଟେକିଛି । ଅନ୍ୟ କେତେକ ଅଞ୍ଚଳ କୂଟନୀତିର ଚକ୍ରାନ୍ତରେ ସ୍ଥାୟୀ ଅସ୍ଥାୟୀ ନୂତନ ପଡ଼ା ଏବଂ ଟୋଲି ନାମରେ ନବାଗତଙ୍କୁ ଆଶ୍ରୟ ଦେଇଅଛି । ଅନ୍ୟ କେତେକ ନୂତନ ଜନବସତି ନୂତନ ନାମ ଧାରଣ କରି ସୁନ୍ଦରଗଡ଼ ଜିଲ୍ଲାର ଅଙ୍ଗ ମଣ୍ଡନ କରୁଅଛି । ଏହାହିଁ କୌତୁହଳ ସୃଷ୍ଟି କରେ ।

ଉତ୍‌ଥାନ ପତନ ଭିତ୍ତିରେ ନାଗରର ଭୂସମ୍ପତ୍ତିର ପରିବର୍ତ୍ତନ ଭଳି ଏହାର ରାଜନୈତିକ ସାମାଜିକ କ୍ଷେତ୍ରରେ ଅନେକ ପରିବର୍ତ୍ତନ ସଂଘଟିତ ହୋଇ ଆସିଅଛି । "ଗଣ୍ଡ ଭୂୟାଁ ଜାଗେଦାର" ଏବଂ "ବର୍ଢ଼ିଲେ ବିଞ୍ଝିଆ ଛିଡ଼ିଲେ କୋନ୍ଧ" ଲୋକ ପ୍ରବଚନ ଦ୍ୱୟ । ପରେ ଉକ୍ତ ରାଜ୍ୟକୁ ଇଂରେଜ ଶାସନ ପରୋକ୍ଷ ପ୍ରଭାବ ଏହାକୁ ଗ୍ରାସ କଲା ।

ପ୍ରାୟତଃ ଊନବିଂଶ ଶତାବ୍ଦୀର ଶେଷ ଦଶକ ଠାରୁ ବିଂଶ ଶତାବ୍ଦୀର ସ୍ୱାଧୀନତା ପର୍ଯ୍ୟନ୍ତ ଇଂରେଜ ଶାସକ ଅଧୀନରେ ନାଗର ରାଜତନ୍ତ୍ର ଶାସନର କେତେକ ଗୁରୁତର ତ୍ରୁଟିର ଶିକାର ହୋଇ ଭୂମିହୀନ ଅଶିକ୍ଷିତ ଜନତା ଶୋଷଣ ନିର୍ଯ୍ୟାତନାର ମୁକ୍ତି ପାଇଁ ବ୍ୟାକୁଳିତ ହେଲେ । ପରିସ୍ଥିତିର ସୁଯୋଗ

ନେଇ ଖ୍ରୀଷ୍ଟିୟାନ୍ ପାଦ୍ରୀମାନେ "ମଧୁ ତିଷ୍ଠତି ଜିହ୍ୱାଗ୍ରେ, ହୃଦୟେତୁ ହଳାହଳମ୍" ନୀତିରେ ନାଗରର ନିଷ୍ପେସିତ ଅନୁନ୍ନତ ଶ୍ରେଣୀର କେତେକ ଲୋକଙ୍କୁ କିଛି ଆର୍ଥିକ ସାହାଯ୍ୟ ଦେଇ ଏମାନଙ୍କ ସାମାଜିକ ସ୍ଥିତିରେ କ୍ରମ ପରିବର୍ତ୍ତନ ଆଣିଲେ । ଏମାନେ ଇଂରାଜୀ ଶିକ୍ଷା ସଂସ୍କୃତିର ପ୍ରଲୋଭନକୁ ଗ୍ରହଣ କରି ଖ୍ରୀଷ୍ଟିୟାନ ହୋଇଗଲେ । ଫଳରେ ଏହି ମାଟିରେ ବିଚ୍ଛିନ୍ନତାବାଦର ବୀଜ ବପନ ହେଲା । ଏହି ବୀଜ ଅଙ୍କୁରିତ ହୋଇ ବୃକ୍ଷରେ ପରିଣତ ହେଲା । ସମୟ କ୍ରମେ ବୃକ୍ଷ ନିଜର ସ୍ଥିତି ସ୍ୱତନ୍ତ୍ର ବଜାୟ ରଖିବା ପାଇଁ ଯେଉଁ ଗୁପ୍ତ ସଂଗ୍ରାମ ଚଳାଇ ଆସୁଅଛି ; ତାହା ଅଧୁନା ଅଳ୍ପ ବହୁତ ଅନୁଭୂତ ହେଉଅଛି ।

ରାଉରକେଲା ୧୯୬୨ ମସିହାରେ ଲେଖକଙ୍କୁ ଉପରୋକ୍ତ ଏକ ତିକ୍ତ ମଧୁର ସ୍ୱାଦ ଆସ୍ୱାଦନର ପ୍ରଲୋଭନ ଦେଖାଇଥିଲା । ସୌଭାଗ୍ୟବଶତଃ ଲେଖକ ସ୍ୱାଦକୁ ପ୍ରତ୍ୟାଖ୍ୟାନ କରି ପରମ ସୁଖ ଲାଭ କରୁଅଛି । କାରଣ ଶ୍ରୀମଦ୍ ଭଗବତ୍ ଗୀତା କହେ :

"ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍
ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ" । ୩୫ ଶ୍ଳୋକ ।

( କର୍ମଯୋଗ ; ତୃତୀୟ ଅଧ୍ୟାୟ )

ଉଣେଇଶ ପନ୍ଦର ମସିହା ପୂର୍ବରୁ ଖ୍ରୀଷ୍ଟିୟାନ ମୁସଲମାନଙ୍କ ପ୍ରଭାବ ଗାଙ୍ଗପୁର ନାଗରରେ ପ୍ରାୟତଃ ଅନୁଭୂତ ହେଉନଥିଲା । ସମାଜର ଶତକଡ଼ା ନବେ ଜଣ ହିନ୍ଦୁ ଥିବାବେଳେ, ଅଣହିନ୍ଦୁ ଶତକଡ଼ା ଦଶଜଣ ଥିବା ଜନଶ୍ରୁତି କହେ ।

ଉଣେଇଶ ପନ୍ଦର ମସିହା ପରଠାରୁ ଇତି ମଧ୍ୟରେ ଖ୍ରୀଷ୍ଟିୟାନ ମୁସଲମାନ ଏବଂ ଅନ୍ୟାନ୍ୟ ଅଣହିନ୍ଦୁଙ୍କ ସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ହେବା ସ୍ଥଳେ, ହିନ୍ଦୁମାନଙ୍କ ସଂଖ୍ୟା ହ୍ରାସ ପାଉଥିବା ଖବର ଜନବାଣୀରୁ ସ୍ପଷ୍ଟ ଜଣା-ପଡ଼ୁଅଛି । ସରକାରୀ ଜନଗଣନା ଅନୁସନ୍ଧାନ କଲେ ପ୍ରକୃତ ସତ୍ୟର କେତେକାଂଶ ଉଦ୍‌ଘାଟିତ ହେବ ।

ଯମସର କେଶରୀ ଗଡ଼ର ରଜାମାନଙ୍କ ରାଜତ୍ୱ ସମୟରୁ ଯେଉଁ ବୀର ଭୂୟାଁ ପାଇକ ବାହିନୀ ନାଗର ପରେ ଗାଙ୍ଗପୁର ରାଜ୍ୟର ସୁରକ୍ଷା ଦାୟିତ୍ୱ

ବହନ କରିଥିଲେ ; କାଳର କୁଟିଳ ଚକ୍ରାନ୍ତରେ ଏମାନଙ୍କ ବଂଶଧରମାନଙ୍କ ମଧ୍ୟରୁ ଅନେକ ଆଜି ସର୍ବହରା । ସ୍ୱାଧୀନ ଭାରତ ସରକାରଙ୍କ ନିୟମାବଳୀ ଅନୁଯାୟୀ ଏମାନେ ଆଜି ତଫସିଲଭୁକ୍ତ ଉପଜାତିରେ ପରିଚିତ ହୋଇଅଛନ୍ତି । ଫଳରେ ଏମାନଙ୍କର ପୂର୍ବ ଗୌରବକୁ ଅପହରଣ କରାଯାଇଅଛି । ଆଧୁନିକ ସଭ୍ୟତାର ଅନ୍ତରାଳରେ ଏମାନେ ଅନୁନ୍ନତ ଅବସ୍ଥାରେ ପଡ଼ିରହିଅଛନ୍ତି । କେତେକଙ୍କ ଅବସ୍ଥାରେ କ୍ରମୋନ୍ନତି ପରିଲକ୍ଷିତ ହେଉଅଛି । ଐତିହାସିକମାନେ ଏମାନଙ୍କର ଐତିହ୍ୟ ପ୍ରତି ଉଦାସୀନ ଥିବା ପରି ମନେ ହେଉଛି ।

କାଲି ଯେଉଁ ହିନ୍ଦୁ ଏବଂ ଅଣହିନ୍ଦୁ ଭୂୟାଁ ଜାତିର ଦୟାର ପାତ୍ର ହୋଇ ନାଗରରେ ଆଶ୍ରୟ ନେଇଥିଲେ ; ଆଜି ସେଇ ହିନ୍ଦୁମାନଙ୍କ ମଧ୍ୟରୁ ଅନେକ ଖ୍ରୀଷ୍ଟିୟାନ ମୁସଲମାନ ହୋଇ ଅଣହିନ୍ଦୁଙ୍କ ସହିତ ହାତ ମିଳାଇ ବୀର ଭୂୟାଁ ଜାତିର ମହାନ ଜାତୀୟତାର ଗୌରବକୁ ଭୂଲୁଣ୍ଠିତ କରିବାରେ ବ୍ୟସ୍ତ ଅଛନ୍ତି । ଉକ୍ତ ଜନଶ୍ରୁତିରେ କିଛି ସତ୍ୟ ନିହିତ ଥିବା ମନେହୁଏ ।

ଲେଖକ କେତେକ ଭୂୟାଁ ଗ୍ରାମକୁ ଯାଇ ସେମାନଙ୍କ ସାମାଜିକ ଜୀବନ ଧାରାକୁ ଗଭୀରଭାବେ ଅନଧ୍ୟାନ କରିଅଛି । ଅତୀତ ଭୂୟାଁ ଜାତିର ଗଣତାନ୍ତ୍ରିକ ସାମ୍ୟବାଦ ଜାତୀୟ ଜୀବନର ବିଲୟ ଘଟିଅଛି । କୃଷି ପାରିଧି ମୁଖ୍ୟ ଜୀବିକା ଛାଡ଼ି କେତେକ ଚାକିରି କରି ସ୍ୱ-ସଂସ୍କୃତିର ଭାବଧାରାରୁ କ୍ରମଶଃ ଦୂରେଇ ଯାଉ-ଛନ୍ତି । ଦାରିଦ୍ର୍ୟତା ଅଶିକ୍ଷା ନିଶା ସେବନ ପରସ୍ପର ଭ୍ରାତୃବିବାଦ ପ୍ରଭୃତି ବ୍ୟାଧିରେ ଏ ସମାଜ ହନ୍ତସନ୍ତ ହେଉଥିବାବେଳେ ଅଣହିନ୍ଦୁମାନେ ଏମାନଙ୍କ ବିରୁଦ୍ଧରେ ନାନାପ୍ରକାର କୁତ୍ସା ରଟନା କରି ବ୍ୟାଧିକୁ ବଳବତ୍ତର କରଉଅଛନ୍ତି । ଧର୍ମାନ୍ତରିତ ଗୋହତ୍ୟା, ମାଦକଦ୍ରବ୍ୟ ସେବନ ଅଭିଯାନର ଗତିକୁ ଭୂୟାଁ ସମାଜ ବନ୍ଦ କରାଇବାରେ ବିଫଳ ହେଉଅଛି ।

ଅପର ଦିଗରେ ଆମ ସ୍ୱାଧୀନ ଗଣତନ୍ତ୍ର ସରକାର ଭାରତରେ ଶୋଷଣ-ମୁକ୍ତ ସାମ୍ୟବାଦ ସାକ୍ଷର ଉନ୍ନତ ସମାଜ ଗଠନ ଅବା ମହାମାନବ ମହାତ୍ମା ଗାନ୍ଧୀଙ୍କ "ମୋ ସ୍ୱପ୍ନର ଭାରତ" ଗଠନ ପାଇଁ ଯୋଜନା ପରେ ଯୋଜନା ଆଠଟି ପଞ୍ଚବାର୍ଷିକ ଯୋଜନା କରି ଚାଲିଛନ୍ତି । ଏହାରି ମାଧ୍ୟମରେ ବହୁବିଧ କୋଡ଼ିଏ ଦଫା, ଚବିଶ ଦଫା ସମନ୍ୱିତ ଜନକଲ୍ୟାଣ ନୀତି ଏବଂ ଦେଶର ସୁରକ୍ଷା ପାଇଁ ବିଦେଶରୁ ଅଜସ୍ର ଅର୍ଥ ଋଣ ଆଣି ଖର୍ଚ୍ଚ କରୁଅଛନ୍ତି । ଋଣଭାରର କୁ-ପ୍ରଭାବରେ

ଜନସାଧାରଣ ଅଣନିଃଶ୍ୱାସୀ ହେବାବେଳେ, ସରକାର ନିଜ ଦଳୀୟ ପରିସର ଭୁକ୍ତ ସମର୍ଥକଙ୍କର ଯଶଗାନ ବେତାର ଦୂର ଦର୍ଶନରେ କରୁଅଛନ୍ତି । ସ୍ଥପନ୍ନ କୃଫଳ ନଥିପତ୍ର ବିଡ଼ା ସମୂହ ସରକାରୀ ଗୋଦାମ ଘରେ ପଡ଼ି ସଢ଼ୁଅଛି । ନିରପେକ୍ଷ ଦୃଷ୍ଟିରେ ଦେଖିଲେ ଦେଶର ଅର୍ଥନୀତି, ଶିକ୍ଷା ନୀତିର ଅଧଃପତନ ହୋଇଗଲିଛି । କଳାଧନର ଶୋଷଣ ରାକ୍ଷସ କବଳରୁ ଜନସାଧାରଣ ମୁକ୍ତି ପାଇଁ ବିଶ୍ୱପତିଙ୍କ ଅବତାରକୁ ଅପେକ୍ଷା କରିଛନ୍ତି । ମୁଷ୍ଟିମେୟ ମାଲିକ ଶ୍ରେଣୀର କୁଚକ୍ରାନ୍ତରେ ଶାସକ ପ୍ରଭାବିତ ହୋଇ ସ୍ୱାଧୀନତାର ପ୍ରକୃତ ମୂଲ୍ୟକୁ ମୂଲ୍ୟାଙ୍କନ କରିବାରେ ଅସଫଳ ହେଉଛି । ଆଧୁନିକ ବିଜ୍ଞାନର ଅଭ୍ୟୁତ୍ଥାନ ଏବଂ ଦେଶ-ରକ୍ଷା ବିଭାଗର ଶକ୍ତି ବର୍ଦ୍ଧନ ଦିଗରେ ସରକାର ବିଶେଷ ଦୃଷ୍ଟି ଦେଇ ; ଭାରତୀୟ ଆଧ୍ୟାତ୍ମିକ ଚେତନାର ବିକାଶ ପ୍ରତି ଅବଚେତନ ରହୁଥିବାରୁ ; ଭାରତର ପ୍ରକୃତ ଶକ୍ତି ଖଣ୍ଡିତ ହେଉଛି । ଏସବୁ ଦୃଷ୍ଟିରୁ ନାଗର (ଅଧୁନା ସୁନ୍ଦରଗଡ଼ ଜିଲ୍ଲାର କିଛି ଅଂଶ)ର ବର୍ଣ୍ଣିତ ଅଭିଯାନ ସରକାରଙ୍କ ଅନ୍ତରାଳରେ ବଳବତ୍ତର ହେବା ପରି ଜଣାପଡ଼ୁଅଛି ।

ଏହିଭଳି ପରିସ୍ଥିତିରେ ପୂର୍ବସ୍ମୃତିକୁ ମନେ ରଖି ବୁଢ଼ାବନ୍ଧ ବୁଢ଼ା ମହାଦେବ, ବାଇବାଗ ପାଟ, ବଣ୍ଡରାୟ ଠାକୁର, ଝଗଡ଼େଶ୍ୱରୀ, କୋନ୍ତକୁମାରୀ ଶିଖରବାସିନୀ, ବ୍ରାହ୍ମୀ (ବ୍ରାହ୍ମଣୀ), ବିନ୍ଧ୍ୟବାସିନୀ ଠାକୁରାଣୀମାନଙ୍କ ପଦବନ୍ଦନା ଭୂୟାଁ ଏବଂ ବିଞ୍ଝିଆ ସମାଜ କରି ଆସୁଅଛି । ଉତ୍କଳୀୟ ଗୌଡ଼ୀୟ ସମ୍ପ୍ରଦାୟର ମିଶ୍ରିତ ଭାବଧାରା ମଧ୍ୟରେ ଜଗନ୍ନାଥ ଏହି ଅଞ୍ଚଳରେ ପୂଜିତ ହୋଇଆସୁଅଛନ୍ତି । ଫଳରେ ଅତୀତ ଭୂୟାଁ ବିଞ୍ଝିଆ ସମାଜର ସଂଘବଦ୍ଧ ଜୀବନ ସରଳ ବିଶ୍ୱାସ, ଅତିଥି ସତ୍କାର, ସର୍ବଧର୍ମ ସମନ୍ୱୟ ପ୍ରିତିଭାବ ଦୟା କ୍ଷମା ନିଜ ଧର୍ମ ପ୍ରତି ଅସୀମ ମମତା ପୂର୍ବର ଐତିହ୍ୟ ପ୍ରତି ସଚେତନତା ଆଦି ମାନବିକ ଗୁଣଗୁଡ଼ିକର କ୍ଷୀଣ ବିକାଶ କେତେକଙ୍କ ଠାରେ ପରିଲକ୍ଷିତ ହେଉଅଛି ।

## ନାଗରାର ଭୂୟାଁ ସମାଜ :

ଭୂୟାଁ ସମାଜରେ ମାଝି, ନାୟକ, ପଟେଲ, ମଲ୍ଲିକ, ବରଏକ, ଗଡ଼ତିଆ, ସାହା, ଅମାତ, ଭେଇ, ପ୍ରଧାନ, ବିଶ୍ୱାଳ, ରାଉତ, ଚଟରିଆ ଭିତିରିଆ, ସମରଥା, କାଲେ, ଦେହୁରୀ, ରାଜ୍ ଓ ବେହେରା ପ୍ରଭୃତି ସଂଜ୍ଞାଧାରୀ ଭୂୟାଁ ରହିଆସିଛନ୍ତି । ଏମାନେ ନାଗ, କାଶ୍ୟପ, କାନ୍ଦୁନ୍ୟ, ଇତ୍ୟାଦି ଗୋତ୍ରୀୟ ଭୂୟାଁ

ବଂଶର ବଂଶଧର ଅଟନ୍ତି । ଉକ୍ତ ସ୍ୱାଭିମାନୀ ଭୂୟାଁ ସମାଜ ସହିତ ଲେଖକର ଅନେକ ଦିନୁଁ ସୁସମ୍ପର୍କ ଅଛି । ପରିସ୍ଥିତି ଦୃଷ୍ଟିରୁ କେତେକ ଭୂୟାଁଙ୍କର ଗ୍ରାମ ନାମ, ଗୋତ୍ର, ଜାତିର ଟିପ୍ପଣୀ ଦିଆଯାଇଅଛି । ଯଥା :

| ଗ୍ରାମର ନାମ | ବ୍ୟକ୍ତିର ନାମ | ଗୋତ୍ର | ଜାତି |
|---|---|---|---|
| ଢେଣ୍ଡ | ଶ୍ରୀ ଜଗତ୍ ସାହା | ନାଟସ୍ୟ ଗୋତ୍ର | ଭୂୟାଁ |
| ବାଙ୍କିଆ | ଶ୍ରୀ ଉଦୟ ପ୍ରଧାନ | ,, | ,, |
| ସେମେର୍ଡା | ✓ କୃଷ୍ଣଚନ୍ଦ୍ର ନାୟକ | ,, | ,, |
| ଅହିଗଚନ୍ଧ ଝିରପାଣି କଲୋନୀ | ✓ ଜଗନ୍ନାଥ ମାଝି | ,, | ,, |
| ଦଳପୋଷ | ଶ୍ରୀ କମାର ମାଝି | ,, | ,, |
| ବୀରକେର | ଶ୍ରୀ ଲକ୍ଷ୍ମୀନାରାୟଣ ନାୟକ | ,, | ,, |
| ଗୋପପାଲି | ଶ୍ରୀ କିଶୋର ଚନ୍ଦ୍ର ନାୟକ | ,, | ,, |
| ଦେଓଗାଁ | ✓ ଲକ୍ଷ୍ମଣ ଦେହୁରୀ | କାଶ୍ୟପ ଗୋତ୍ର (ଏହି ଗୋତ୍ରକୁ କେତକ କଛପ ଗୋତ୍ର କହନ୍ତି) | ,, |
| ଦଲକି ନିକଟସ୍ଥ ତର୍କେର | ଶ୍ରୀ ଲକ୍ଷ୍ମଣ ମାଝି | କାଶ୍ୟପ ଗୋତ୍ର | ,, |
| ବଲଣି | କବି ଶ୍ରୀ ଅର୍ଜୁନ ଗଜ | ,, | ,, |
| ବଲଣି | ଶ୍ରୀ ଦେବାନନ୍ଦ ଅମାତ (ଲୋକସଭାର ଭୂତପୂର୍ବ ସଦସ୍ୟ) | କାନ୍ଦନ୍ୟ ଗୋତ୍ର | ,, |
| ... | ... | ... | ... ଇତ୍ୟାଦି । |

ଭୂୟାଁ କବି ଶ୍ରୀଯୁକ୍ତ ଅର୍ଜୁନ ଗଜଙ୍କ ଏକ ଲିଖିତ ବିବରଣୀରୁ ଭୂୟାଁ ଜାତିର ଜାତୀୟତାର ପରିଚୟ ମିଳେ । ବିବରଣୀ ନିମ୍ନରେ ଉଲ୍ଲେଖ କରଯାଇଅଛି ।

# ଆମ ଭୂୟାଁ ସଂସ୍କୃତି

ଭ-ଦୀର୍ଘ-ଉ-ଭୂ ଅନ୍ତସ୍ଥ-ଆକାର ୟା ଚନ୍ଦ୍ରବିନ୍ଦୁ-ୟାଁ ବ୍ୟୁତ୍ପତ୍ତିରେ ଭୂୟାଁ ଶବ୍ଦର ଏ ରୂପେକ ଅର୍ଥ । ଅର୍ଥାତ୍ ଭୂ ବୋଲି ପୃଥିବୀକୁ କହି । ପୃଥିବୀ ବୋଲନ୍ତେ ଭୂଇଁ ଜମି ବାଡି ଗାଁ ଗଣ୍ଡା ରାଜ୍ୟ ବାଡ଼ିକୁ ବୁଝାଇଥାଏ । ବିଶେଷତଃ ଆମ ଜାତି ଆଦ୍ୟାଶକ୍ତି ଯେ ଆ କାର ଚନ୍ଦ୍ର ସୁତ ଅର୍ଥ ବୁଧ ଇ କାରନ୍ତେ ବୁଦ୍ଧି ବଳକୁ ନେଇ ଏହି ଜାତି ରାଜ୍ୟ ବାଡ଼ି ସବୁକୁ ଅନ୍ତ ତଥା ଛାରଖାର ଓ ଥଇଥାନ ଅର୍ଥାତ୍ ନିରାପଦ ଭାବେ ସୁରକ୍ଷିରେ ରକ୍ଷିପାରିବାରେ ବରାବର ଜାଗରିତ ରହିଥାନ୍ତି । ତେଣୁ ଆମ ଜାତିକୁ ଲୋକେ ବାର ଭୂୟାଁ ବୋଲି ସମ୍ବୋଧି ଥାନ୍ତି । କାରଣ ବାର ବୋଇଲେ ଯୋଦ୍ଧାର ଆତ୍ମରକ୍ଷାକାରୀ ଏକମାତ୍ର ଆୟୁଧ ଢାଲ ଅବା ଫରିକୁ ବୁଝାଇଥାଏ । ବାର ଯେପରି ଯୋଦ୍ଧାର ପ୍ରାଣ ରକ୍ଷା କରିବାରେ ସାହାଯ୍ୟ କରିଥାଏ, ସେହିପରି ଆମ ଜାତି ରାଜ୍ୟେ ରାଜ୍ୟେ ରହି ରାଜ୍ୟ ରକ୍ଷା କରିବା ଦିଗରେ ସଦା ସଜାଗ ରହିଥାନ୍ତି । ତେଣୁ ଜନମାନସରେ ଏମାନେ ବାର ଭୂୟାଁ ନାମେ ଆଖ୍ୟାୟିତ ।

ପୁଣି ଖଣ୍ଡା ଶବ୍ଦରୁ ଜାତାର୍ଥରେ ଇତ ପ୍ରତ୍ୟୟକୁ ଘେନି ଖଣ୍ଡାୟତ । ଯେ ହେତୁ ଖଣ୍ଡାକୁ ଆୟତ୍ତରେ ରଖି ଖଣ୍ଡା ପରିଚାଳନା କରିବା । ଆମ୍ଭମାନଙ୍କର ପାରମ୍ପରିକ ରୀତିମାନ ମଧ୍ୟ ପରିଲକ୍ଷିତ, ତେଣୁ ଆମ୍ଭ ଶ୍ରେଣୀର ବ୍ୟକ୍ତିଙ୍କ ଖଣ୍ଡା ଚିହ୍ନିତ ସନ୍ତକ ବରାବର ରହିଥାଏ ।

୧୯୮୯ ମସିହା { ଶ୍ରୀ ଅର୍ଜ୍ଜୁନ ରାଜ୍
ବଲାଣି

## ନାଗରାର ବ୍ରାହ୍ମଣ ସମାଜ :

ନାଗରାର ବ୍ରାହ୍ମଣ ସମାଜରେ ପଣ୍ଡା, କର, ପାତ୍ର, ପତ୍ରୀ, ନନ୍ଦ, ପାଢ଼ୀ, ଦାଶ, ଆଚାର୍ଯ୍ୟ, ମିଶ୍ର, ପାଣିଗ୍ରାହୀ, ପତି ଓ ଦ୍ୱିବେଦୀ ଆଦି ସଙ୍ଗାଧାରୀ ବ୍ରାହ୍ମଣ-ମାନେ ଅଛନ୍ତି । ଲେଖକର ଏହି ସମାଜ ସହିତ ୧୯୬୫ ମସିହାରୁ ଆଜିପର୍ଯ୍ୟନ୍ତ ଘନ ସମ୍ପର୍କ ରହି ଆସିଅଛି । ବ୍ରାହ୍ମଣ ସମାଜରେ ସ୍ୱର୍ଗବାସ କରିଥିବା କେତେକ ବୃଦ୍ଧ ବ୍ୟକ୍ତିମାନଙ୍କ ସହିତ ପ୍ରୀତିଳାପ କରିବା ସୁଯୋଗ ନାଗରା ଲେଖକ

ଲାଭ କରିଥିଲ । ଏମାନଙ୍କର ବୟସ ପ୍ରାୟତଃ ୬୫ ବର୍ଷରୁ ୯୦ ବର୍ଷ ପର୍ଯ୍ୟନ୍ତ ଥିଲ । ଅଦ୍ୟାବଧି କେତେକଙ୍କ ସହିତ ଲେଖକ ଘନ ସମ୍ପର୍କ ରଖିଅଛି । ନିମ୍ନରେ ଉଭୟ ମୃତ ଏବଂ ଜୀବୀତ ବ୍ରାହ୍ମଣମାନଙ୍କର ନାମ ଗ୍ରାମ ଏବଂ ବୃତ୍ତି ସମ୍ବନ୍ଧରେ ସାମ୍ୟକ ପରିଚୟ ପାଠକଙ୍କର ଅବଗତ ନିମନ୍ତେ ଦିଆଯାଇଅଛି ।

| ବ୍ୟକ୍ତିର ନାମ | ଗ୍ରାମର ନାମ | ବୃତ୍ତି |
|---|---|---|
| ✓ ସତ୍ୟବାଦୀ ନାଥ | ଟାଙ୍ଗିସର | ଗୃହକର୍ମ |
| ✓ କୃଷ୍ଣଚନ୍ଦ୍ର ପାଢ଼ୀ | ଟାଙ୍ଗିସର | ପୁରୋହିତ<br>ପ୍ରତ୍ୟହ ଗୀତା ପାଠ କରୁଥିଲେ |
| ✓ ଜୟଦେବ ପାଢ଼ୀ | ଟାଙ୍ଗିସର | ପୁରୋହିତ |
| ✓ ଦୁର୍ଲ୍ଲଭ ପାଢ଼ୀ | ଗୋପଡ଼ିହି | ପୁରୋହିତ<br>ପ୍ରତ୍ୟହ ଚଣ୍ଡୀ ପାଠ କରୁଥିଲେ |
| ✓ ସତ୍ୟାନନ୍ଦ ତ୍ରିପାଠୀ | ଟିମଯୋର | ପୁରୋହିତ |
| ✓ ସତ୍ୟବାଦୀ ପାତ୍ର | ଗର୍ଜନ | ଗଞ୍ଜୁଆନା |
| ✓ ମଦନ ମୋହନ ଦାଶ | ଝରିପାଣି ରିସେଟେଲମେଣ୍ଟ କଲୋନୀ | ଚଣ୍ଡୀସାଧକ ଏବଂ ଜ୍ୟୋତିଷ ଶାସ୍ତ୍ର ବିଶାରଦ ଥିଲେ |
| ✓ ରତ୍ନାକର ମିଶ୍ର | ଝରିପାଣି ରିସେଟେଲମେଣ୍ଟ କଲୋନୀ | ପାଲା ଗାୟକ ଥିଲେ । ଏହାଙ୍କର ବାପା ✓ଫକୀର ମିଶ୍ର ନାଗରର ପ୍ରଖ୍ୟାତ ପାଲା ଗାୟକ ଥିଲେ । |
| ✓ ଗୋକୁଳ ନନ୍ଦ | ତୁମ୍ବକେଲା | ଗଞ୍ଜୁଆନା ଉଚ୍ଛେଦ ପରଠାରୁ ସ୍ୱଗୃହ କର୍ମରେ ରତ ଥିଲେ । |
| ✓ ପୀତାମ୍ବର ପାଢ଼ୀ | ଛେଣ୍ଡ୍ | ଗୃହକର୍ମ |
| ✓ ଶ୍ରୀଧର ପଣ୍ଡା | ହାତୀବାରି | ପୁରୋହିତ |
| ✓ ଗୋପୀନାଥ ଦାଶ<br>(ଡାକନାମ ପଲୋଉ ଦାଶ) | ବିଜୁବନ୍ଧ | ପୁରୋହିତ |

| ବ୍ୟକ୍ତିର ନାମ | ଗ୍ରାମର ନାମ | ବୃତ୍ତି |
| --- | --- | --- |
| ✓ ଦୟାନିଧି ପଣ୍ଡା | ଚନ୍ଦ୍ରମୁଣ୍ଡା | ପୁରୋହିତ |
| ✓ ଗଣନାଥ ଆଚାର୍ଯ୍ୟ | ଛବାଘାଟ | ଶିକ୍ଷକ |
| ✓ ମୁକୁନ୍ଦଦେବ ପତ୍ରୀ (ଡାକନାମ ବଣ୍ଡକୋ ପତ୍ରୀ) | ଉସରା | ଗୃହକର୍ମ |
| ✓ ଜାନକୀ ପତ୍ରୀ | ଉସରା | ଗ୍ରାମ୍ୟ ନାରୀ କବି ରୂପେ ପରିଚିତ ଥିଲେ । |
| ✓ ପଞ୍ଚାନନ ପାଢ଼ୀ | ଛେଣ୍ଡ୍ | ଚାକିରୀରୁ ଅବସର (୭୩ ବର୍ଷ) |

## ଜୀବୀତମାନଙ୍କ ପରିଚୟ

| ବ୍ୟକ୍ତିଙ୍କ ନାମ | ଗ୍ରାମର ନାମ | ବୃତ୍ତି | ବୟସ |
| --- | --- | --- | --- |
| ଶ୍ରୀ ଚୈତନ୍ୟ ନନ୍ଦ | ଝିରପାଣି କଲୋନୀ | ଗୃହକର୍ମ | ୮୧ |
| ଶ୍ରୀ ଗୋବର୍ଦ୍ଧନ ପଣ୍ଡା | ” | ଶୈବ ସେବକ | ୮୬ |
| ଶ୍ରୀ ପରୀକ୍ଷିତ ପଣ୍ଡା | ” | ଚାକିରୀ | ୬୪ |
| ଶ୍ରୀ ମଧୁସୂଦନ ପତ୍ରୀ | ” | ଗୃହକର୍ମ | ୬୦ରୁ ଊର୍ଦ୍ଧ୍ୱ |
| ଶ୍ରୀ ଦିଗାମ୍ବର ପତ୍ରୀ | ” | ଗୃହକର୍ମ | ୬୦ରୁ ଊର୍ଦ୍ଧ୍ୱ |
| ଶ୍ରୀ ଗୌତମ ମିଶ୍ର | ” | ଗୃହକର୍ମ | ୬୦ରୁ ଊର୍ଦ୍ଧ୍ୱ |
| ଶ୍ରୀ ହୃଷିକେଶ ପଣ୍ଡା | ” | ପୁରୋହିତ | ୭୧ ବର୍ଷ |
| ଶ୍ରୀ ପୀତାମ୍ବର ପଣ୍ଡା (କବି) | ଛବାଘାଟ | ଅବସରପ୍ରାପ୍ତ ସ୍କୁଲ ଏସ୍.ଆଇ. | ୮୧ ବର୍ଷ |
| ଶ୍ରୀ ଶିବନାରାୟଣ ପଣ୍ଡା | ” | ଗୃହକର୍ମ (ଶୈବଭକ୍ତ) | ୭୦ରୁ ଊର୍ଦ୍ଧ୍ୱ |
| ଶ୍ରୀ ଆଖଣ୍ଡଳମଣି ପଣ୍ଡା (କବି) | ” | ଚାକିରୀ | — |
| ଶ୍ରୀ ଫାସିଆର ଆଚାର୍ଯ୍ୟ (କବି) | ” | ବଡ଼ଦଇକି ହାଇସ୍କୁଲ ହେଡ୍‌ମାଷ୍ଟର | — |

| ବ୍ୟକ୍ତିଙ୍କ ନାମ | ଗ୍ରାମର ନାମ | ବୃତ୍ତି | ବୟସ |
|---|---|---|---|
| ଶ୍ରୀ ଗୌତମ ପାଢ଼ୀ | ଛେଣ୍ଡ୍ | ଗୃହକର୍ମ | ୭୫ ବର୍ଷ |
| ଶ୍ରୀ ବ୍ରଜମୋହନ ପାଢ଼ୀ | " | ଚାକିରୀରୁ ଅବସର | ୬୦ବର୍ଷରୁ ଊର୍ଦ୍ଧ୍ୱ |
| ଶ୍ରୀ ଘନଶ୍ୟାମ ପତ୍ରୀ | ଉସର | ଗୃହକର୍ମ | " |
| ଶ୍ରୀ ନୀଳାମ୍ବର ପତ୍ରୀ | " | ଚାକିରୀରୁ ଅବସର | " |
| ଶ୍ରୀ ଶ୍ରୀବତ୍ସ ପାଢ଼ୀ | ଟାଇଁସର | ଗୃହକର୍ମ | " |
| ଶ୍ରୀ ସନାତନ ପାଢ଼ୀ | " | ଶିକ୍ଷକରୁ ଅବସର | " |
| ଶ୍ରୀ ଈଶ୍ୱର ପାଢ଼ୀ | " | " | " |
| ଶ୍ରୀ ଦୟାନିଧି ପାଢ଼ୀ | ଗୋପଡ଼ିହି | ଗୃହକର୍ମ | " |
| ଶ୍ରୀ ଶ୍ରୀବତ୍ସ ପଣ୍ଡା | ହାତୀବାରି | " | " |
| ଶ୍ରୀ ଦିବାକର ଅଗସ୍ତି | ଟିମ୍ଯୋର | " | " |
| ଶ୍ରୀ ଯୁଧିଷ୍ଠିର ମିଶ୍ର | " | ଚାକିରୀ | — |
| ଶ୍ରୀ ସତ୍ୟନାରାୟଣ ମିଶ୍ର | ଭଲୁଲତା | ଗୃହକର୍ମ | — |
| ଶ୍ରୀ ଶିବ ନାରାୟଣ ମିଶ୍ର | " | " | — |
| ଶ୍ରୀ ସତ୍ୟବାଦୀ ମିଶ୍ର | ରାୟବଗା | " | ୭୦ ବର୍ଷ |
| ଶ୍ରୀ ସୁଦର୍ଶନ କର | ରିଉଁ | " | ୮୬ ବର୍ଷ |
| ଶ୍ରୀ ଆନନ୍ଦ ବିହାରୀ ପତି | କନ୍ଦରକେଲ | ଚାକିରୀ | ୫୦ ବର୍ଷରୁ ଊର୍ଦ୍ଧ୍ୱ |
| ଶ୍ରୀ ଶ୍ୟାମ ସୁନ୍ଦର ଦ୍ୱିବେଦୀ | କଲ୍ୟାରୁ | " | " |
| ✓ ଟଙ୍କଧର ପାଣିଗ୍ରାହୀ | ଉସର | ଇତି ମଧ୍ୟରେ | ୭୫ |
| ✓ ଅଭିନ୍ନ ପାଣିଗ୍ରାହୀ | ଉସର | ଦେହାନ୍ତ ହୋଇଛନ୍ତି | ୬୫ |

ଏତଦ୍ ବ୍ୟତୀତ ଅନେକ ବ୍ରାହ୍ମଣ ଯୁବକଙ୍କୁ ଲେଖକ ଜାଣିଅଛି ।

ପ୍ରାଚୀନ ନାଗରର ବ୍ରାହ୍ମଣ ସମାଜର ପଣ୍ଡା, କର, ପାତ୍ର ଏବଂ ପତ୍ରୀ ସଂଜ୍ଞାଧାରୀ ବ୍ରାହ୍ମଣମାନଙ୍କୁ ଘରି ଗୌର ବୋଲି କୁହାଯାଉଥିଲା । ଏହି ବ୍ରାହ୍ମଣ ସମାଜ ନାଗର ଏବଂ ଗାଙ୍ଗପୁର ରାଜ୍ୟରେ ଓଡ଼ିଆ ଭାଷାର ପ୍ରଚାର ପ୍ରସାର ପାଇଁ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ବହୁ ତାଳପତ୍ର ପୋଥି ସ୍ୱହସ୍ତରେ ଲେଖି ଭୂୟାଁ, ବିଞ୍ଝିଆ ସମାଜର ଗନ୍ତାଘର ସହିତ ନିଜ ଗନ୍ତାଘରଗୁଡ଼ିକୁ ସମୃଦ୍ଧ କରିଥିଲେ ।

ଏମାନଙ୍କର ପନ୍ଥାନୁସରଣ କରି ବ୍ରାହ୍ମଣ ଏବଂ ଭୂୟାଁ ସମାଜ ପ୍ରାୟତଃ ୧୯୩୫ ମସିହା ପର୍ଯ୍ୟନ୍ତ ଲେଖନୀ ଚାଳନା କରି ଶହଶହ ତାଳପତ୍ର ପୋଥି ଉତ୍କଳ ଭାରତୀ ଶ୍ରୀଚରଣରେ ଅର୍ପଣ କରିଥିଲେ । ଅଧୁନା ବ୍ରାହ୍ମଣ ସମାଜର ଅଧିକାଂଶ ନିଜ ପୂର୍ବସୁରୀଙ୍କ ଆଦର୍ଶକୁ ଭୁଲି ସାମ୍ପ୍ରଦାୟିକ ବିଭେଦ କନ୍ଦଳରେ, ନିଜର ନିଜତ୍ୱ ହରେଇ ବସୁଅଛନ୍ତି । ଉକ୍ତ ହୀନ ପ୍ରଚେଷ୍ଟାରୁ ନିବୃତ୍ତ ନହେଲେ ଆମ ଭବିଷ୍ୟତ ଅନ୍ଧକାର ହେବ । ଜଗନ୍ନାଥଙ୍କ କୃପାରୁ ଭାଇମାନେ ସୁପଥକୁ ଫେରି ଦେଶ ଦଶର କଲ୍ୟାଣ କରନ୍ତୁ । ଏହାହିଁ ଆଜିର ନିବେଦନ ।

## ନାଗଗ୍ରର ପର୍ବ ପର୍ବାଣି

ନାଗଗର ମୁଖ୍ୟ ଅଧିବାସୀ ଭୂୟାଁ, ବ୍ରାହ୍ମଣ, ବିଞ୍ଝିଆ ସମାଜରେ ନିମ୍ନୋକ୍ତ ପର୍ବ-ପର୍ବାଣିଗୁଡ଼ିକ ପାଳିତ ହୋଇ ଆସୁଅଛି ।

ଏମାନେ ମାଘ ମାସକୁ ବର୍ଷର ପ୍ରଥମ ମାସ ଓ ପୌଷକୁ ବର୍ଷର ଶେଷ ମାସ ରୂପେ ଗଣନା କରନ୍ତି । ମାଘରେ ମାଘସ୍ନାନ, ମକର ସଂକ୍ରାନ୍ତି, ଶିବରାତ୍ରୀ, ଶ୍ରୀପଞ୍ଚମୀ ; ଫାଲଗୁନରେ ଦୋଳୋତ୍ସବ ; ଚୈତ୍ରରେ ମଙ୍ଗଳା ପୂଜା, ବନଦୁର୍ଗା ପୂଜା, ରାମ ନବମୀ (ରାମ ଜନ୍ମୋତ୍ସବ) ; ବୈଶାଖରେ ପଣା ସଂକ୍ରାନ୍ତି, ମହାବୀର ପୂଜା, ଅକ୍ଷୟ ତୃତୀୟା ; ଜ୍ୟେଷ୍ଠରେ ସାବିତ୍ରୀ ବ୍ରତ ; ଆଷାଢ଼ରେ ରଜପର୍ବ, ଶ୍ରୀଗୁଣ୍ଡିଚା ଯାତ୍ରା, ବାହୁଡ଼ା ଯାତ୍ରା ; ଶ୍ରାବଣରେ ଶ୍ରାବଣ ପୂର୍ଣ୍ଣମୀ (ବଳରାମ ଜନ୍ମ), ଶ୍ରବଣାଭିଷେକ ; ଭାଦ୍ରବରେ ଶ୍ରୀକୃଷ୍ଣ ଜନ୍ମ, ଗଣେଶ ପୂଜା ; ଆଶ୍ୱୀନରେ ଦୁର୍ଗାଷ୍ଟମୀ (ଖଣ୍ଡା ପୂଜା), ଦଶହରା (ଦୁର୍ଗା ପୂଜା, ଜିମୁତ ବାହାନ ବ୍ରତ, ସୋମନାଥ ବ୍ରତ ; କାର୍ତ୍ତିକରେ କାର୍ତ୍ତିକ ସ୍ନାନ, ଦୀପାବଳୀ ଅମାବାସ୍ୟାରେ ଦୀପ ଦାନ, ଶରତ ରାସ, କାର୍ତ୍ତିକ ପୂର୍ଣ୍ଣମୀରେ ବୋଇତ ଭସାଣ ; ମାର୍ଗଶିରରେ ମାଣବସା ଓ ଲକ୍ଷ୍ମୀ ପୂଜା, ଗୋକୁଳାଷ୍ଟମୀରେ ରାସଯାତ୍ରା, ସୁଦଶାବ୍ରତ ; ପୌଷରେ ପୌଷ ପୂର୍ଣ୍ଣମୀକୁ ପୁଷ୍ୟାଭିଷେକ ରୂପେ ପାଳନ କରି ଆସୁଅଛନ୍ତି । ବର୍ଣ୍ଣିତ ପର୍ବ ପର୍ବାଣୀଗୁଡ଼ିକରୁ କେତେକ ପର୍ବୋତ୍ସବ ଅନ୍ୟାନ୍ୟ ସେବାକାରୀମାନଙ୍କ ମିଳନରେ ପାଳିତ ହୋଇଆସୁଅଛି । ଏତଦ୍ ବ୍ୟତୀତ କରମା ଯାହାର ଅନ୍ୟ ନାମ ଇନ୍ଦ୍ ; ପର୍ବକୁ ଇନ୍ଦ୍ ଯାତ୍ରା ରୂପେ ସର୍ବସାଧାରଣ ପାଳନ କରୁଥିଲେ । ଏବେ ମଧ୍ୟ ପାଳନ କରୁଅଛନ୍ତି । ପୂର୍ବର ନିଷ୍ଠା ଅଧୁନା ଉତ୍ସବଗୁଡ଼ିକରେ ପରିଦୃଷ୍ଟ ହୁଏନାହିଁ ।

ଅଣହିନ୍ଦୁଙ୍କ ମେଳରେ ମୁଖ୍ୟତ ବଡ଼ଦିନ ପର୍ବ ପାଳିତ ହେଉଥିଲା । ପରେ ପରେ ଇଦ୍ ପର୍ବ ପାଳିତ ହେଲା । ଅଧୁନା ବଡ଼ଦିନ ଏବଂ ଇଦ୍ ପର୍ବ ସହିତ ଅନ୍ୟ କେତେକ ପର୍ବ ପାଳିତ ହେଉଅଛି ।

———

# ଦ୍ୱିତୀୟ ପରିଚ୍ଛେଦ

ଆବହମାନ କାଳରୁ ଅଦ୍ୟାବଧି ପର୍ଯ୍ୟନ୍ତ ଗାଙ୍ଗପୁର ଓ ନାଗର ହିନ୍ଦୁ ସମାଜର ମୁଖ୍ୟ ଗଣ୍ଡ, ଭୂୟାଁ, ବ୍ରାହ୍ମଣ, ବିଞ୍ଝିଆ ସମାଜ ଉତ୍କଳୀୟ ଜଗନ୍ନାଥ ସଂସ୍କୃତିର ଗତିଧାର ସହିତ ପ୍ରତ୍ୟକ୍ଷ ଏବଂ ପରୋକ୍ଷଭାବେ ଓତଃପ୍ରୋତ ଜଡ଼ିତ ହୋଇ ଆସିଅଛି । ଏହାର ସତ୍ୟତାକୁ ପ୍ରତିପାଦନ କରିବାକୁ ଯାଇ ; ଲେଖକ ବିରଜାଇ (ବିରଜା) ଠାକୁରାଣୀଙ୍କ କୃପାଶିଷରୁ "ସିଂହାବଲୋକନ" ଐତିହାସିକ ଗାଥା କାବ୍ୟ ରଚନା କରି ପ୍ରକାଶିତ କରିଅଛି । କାବ୍ୟ ସମାପ୍ତି ପରେ ଉତ୍କଳୀୟ ଭାଷା ସଂସ୍କୃତିର ନିଛକ ସତ୍ୟ ପରିଚୟ ଦେବାକୁ ଯାଇ ନାଗର ଗାଙ୍ଗପୁରର ବ୍ରାହ୍ମଣ ତଥା ଭୂୟାଁ ସମାଜର ଗନ୍ତାଘର ଉଈ ମାଟିରୁ ସଂଗୃହୀତ କେତେକ ତାଳପତ୍ର ପୋଥିର ନମୁନା ନିମ୍ନରେ ଉଲ୍ଲେଖ କରିଅଛି ।

ପ୍ରାୟତଃ ବିଗତ ଚାରି ଅବା ପାଞ୍ଚଶହ ବର୍ଷରୁ ଉର୍ଦ୍ଧ୍ୱ କାଳ ଓଡ଼ିଆ ଭାଷା ଗାଙ୍ଗପୁର ନାଗର (ନାଗ୍ରା) ର ମୁଖ୍ୟ ଭାଷା ରୂପେ ପ୍ରଚଳିତ ଥିଲା । ବିଂଶ ଶତାବ୍ଦୀର ଆଦ୍ୟ ପାଦରୁ ଉତ୍କଳୀୟ ଭାଷା ସଂସ୍କୃତି ଇଂରାଜୀ ଓ ହିନ୍ଦି ଉଭୟ ଭାଷା ସଂସ୍କୃତିର ଆକ୍ରମଣରେ କ୍ରମଶଃ କ୍ଷୀଣ ହୋଇ, ନିଜର ପ୍ରାଧାନ୍ୟ ହରାଇ ଏମାନଙ୍କର ଦାସତ୍ୱ ବରଣ କଲା । ଏହି ଅଞ୍ଚଳ ❋ ଅଧୁନା ଉତ୍କଳର ସରହଦରେ

ଟୀକା : ଏହି ଅଞ୍ଚଳ — ପ୍ରାଚୀନ ନାଗର ରାଜ୍ୟର ପ୍ରାୟତଃ ଷୋହଳ ଅଂଶରୁ ଦଶ ଅଂଶ ବର୍ତ୍ତମାନ ଉତ୍କଳର ସରହଦରେ ରହିଅଛି ! ଅବଶିଷ୍ଟ ବିହାରରେ ଅଛି । (ଜନଶ୍ରୁତି କହେ)

ରହିଅଛି । ମାତ୍ର ଏହାର ଅତୀତ ଉତ୍କଳୀୟ ଐତିହ୍ୟର ପ୍ରଭାବ ଏବେ ମଧ୍ୟ ଉପରୋକ୍ତ ଦାସତ୍ୱ ବନ୍ଧନରୁ ମୁକ୍ତ ହୋଇନାହିଁ ।

## ନାଗରର ପ୍ରଚଳିତ ତାଳପତ୍ର ପୋଥି

ସୁନ୍ଦରଗଡ଼ ଜିଲ୍ଲା ପାନପୋଷ ମହକୁମାର ବିଭିନ୍ନ ଗ୍ରାମାଞ୍ଚଳରେ ଅନେକ ପ୍ରାଚୀନ ତାଳପତ୍ର ପୋଥି ଏବଂ ତାଳପତ୍ର ଖେଜା ବ୍ରାହ୍ମଣ, ଭୂୟାଁ ଏବଂ ବିଞ୍ଝିଆ ସମାଜରେ ଦେଖିବାକୁ ମିଳେ । ଆଞ୍ଚଳିକ ଜନମତରେ ବଡ଼ ପୋଥିକୁ ତାଳପତ୍ର ପୋଥି, ଛୋଟ ପୋଥିକୁ ତାଳପତ୍ର ଖେଜା ଏବଂ ବାଉଁଶ ଓ ବେତ ତିଆରି ପୋଥି ରଖିବା ପେଡ଼ିକୁ ତାଳପତ୍ର କମ୍ପ କୁହାଯାଏ । ଏହି ତାଳପତ୍ର ପୋଥି ଓ ତାଳପତ୍ର ଖେଜାରୁ ଯେଉଁ କେତେକ ଲେଖକର ଦୃଷ୍ଟି-ଗୋଚର ହୋଇଅଛି, ସେଗୁଡ଼ିକ ସାଧାରଣତଃ ପୁରାଣ, ଉପପୁରାଣ, ବିବିଧ ବ୍ରତ କଥା କାବ୍ୟ, ଖଣ୍ଡବାକ୍ୟ, ତନ୍ତ୍ର ଶାସ୍ତ୍ର, ବୈଦ୍ୟ ଶାସ୍ତ୍ର, ଜ୍ୟୋତିଷ ଶାସ୍ତ୍ର, ସଂହିତା, ନିତ୍ୟକର୍ମ, ସ୍ତୋତ୍ରାବଳୀ ଓ ଅମରକୋଷ ରୂପେ ପରିଚିତ ।

ସଂରକ୍ଷିତ ପୋଥିଗୁଡ଼ିକର ଶ୍ରେଣୀ ବିଭାଗ ନ କରି ରଚୟିତା ଓ ରଚନାର ନାମ ସହିତ ସ୍ଥାନଗୁଡ଼ିକର ବିବରଣୀ ନିମ୍ନରେ ଦିଆଯାଇଅଛି ।

**ରଚୟିତା ଓ ରଚନାର ନାମ :**

ଅତିବଡ଼ୀ ଜଗନ୍ନାଥ ଦାସଙ୍କ କୃତ ଭାଗବତ, ତୂଳାଭିଣା, ନାବକେଳି ; ବଳରାମ ଦାସଙ୍କ ବିରାଟ ଗୀତା, ମଙ୍ଗଳା ସ୍ତୁତି ; ଦୀନକୃଷ୍ଣ ଦାସଙ୍କ ନାମରତ୍ନ ଗୀତା, ରସକଲ୍ଲୋଳ ; କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପ୍ରେମ ସୁଧାନିଧି ; ମାଳି ଏବଂ ଗୋବିନ୍ଦାଇଙ୍କ ମାଳଶ୍ରୀ ; ମହାଦେବ ଦାସଙ୍କ କାର୍ତ୍ତିକ ମହାତ୍ମ୍ୟ ; ଗୋବର୍ଦ୍ଧନଙ୍କ ରାମାୟଣ, ପଚିଶ ପୋଇ ; ବିପ୍ର ବଳଭଦ୍ର ଦେବଙ୍କ ଭାରତ ସାବେତ୍ରୀ (ବେଦବ୍ୟାସୋକ୍ତ ଭାରତ ସାବେତ୍ରୀର ମୂଳ ସଂସ୍କୃତ ଓ ସଂସ୍କୃତର ଓଡ଼ିଆ ପଦ୍ୟାନୁବାଦରେ ରଚିତ) ; ମାଧେବ ଦାସଙ୍କ ମହା ଭାରତ, ନାଗାର୍ଜ୍ଜୁନ ଇତ୍ୟାଦି ।

**ରଚୟିତାର ନାମ ବିହୀନ ରଚନାର ନାମ :**

ବୈଷ୍ଣବପୋଥି, ପ୍ରଶ୍ନୋତ୍ତର, ଚିତ୍ରପୋଥି, ବୈଦ୍ୟଶାସ୍ତ୍ର, ନାନାବିଧ ତନ୍ତ୍ରଶାସ୍ତ୍ରଗୁଡ଼ିକ ଅତି ପ୍ରାଚୀନ କାଳରୁ ନାଗରର ଜନସମାଜରେ ପ୍ରସିଦ୍ଧି ଲାଭ କରି ଅତୀତରୁ ଅଦ୍ୟାବଧି ପର୍ଯ୍ୟନ୍ତ ପ୍ରଚଳିତ ହେଉଛି ।

**ସଂସ୍କୃତ ଓଡ଼ିଆ ଉଭୟ ଭାଷାର ମିଶ୍ରଣରେ ଓଡ଼ିଆ ଲିପିର ରଚିତ ରଚନା :**

ଜ୍ୟୋତିଷ ରତ୍ନମାଳା, ଗ୍ରଣକ୍ୟ ସାର ସଂଗ୍ରହ, ନାନାବିଧ ଗୁପ୍ତ ତନ୍ତ୍ର ଶାସ୍ତ୍ର, ନିତ୍ୟକର୍ମ ମନ୍ତ୍ରାବଳି ଓ ବିବିଧ ବ୍ରତକଥା. ଯଥା : ଶ୍ରୀଗଣେଶ ବ୍ରତକଥା, ନାଗୁଲୀ ବ୍ରତକଥା, ଅନନ୍ତ ବ୍ରତ କଥା. ଜିମ୍ଭୁତ ବାହାନ ବ୍ରତକଥା, ସୁଦଶା ବ୍ରତକଥା, ମହାଲକ୍ଷ୍ମୀ ବ୍ରତକଥା, ନିଶା ମଙ୍ଗଳବାର ବ୍ରତକଥା, ସୋମନାଥ ବ୍ରତକଥା, ଜିତବ୍ରତ ଓ ହରିତାଳିକା ବ୍ରତକଥା, ଧବଳେଶ୍ୱର ବ୍ରତକଥା, ତାରିଣୀ ବ୍ରତକଥା ଇତ୍ୟାଦି ।

**ଓଡ଼ିଆ ଲିପିରେ ରଚିତ ସଂସ୍କୃତ ରଚନା :**

ଶ୍ରୀମଦ୍ ଭଗବତ ଗୀତା, ସପ୍ତଶତୀ ଚଣ୍ଡୀ, କଣ୍ୱ ସଂହିତା, ପାରଶର ଗୃହ୍ୟ ଦଶକର୍ମ ସୂତ୍ର, ଦ୍ରୁପଦ ଗୋସ୍ୱାମୀଙ୍କ ହଂସଦୂତାଖ୍ୟ ଖଣ୍ଡକାବ୍ୟ, ଅନେକ ଜ୍ୟୋତିଷ ଶାସ୍ତ୍ର, ଅମରକୋଷ ଇତ୍ୟାଦି ।

**ଓଡ଼ିଆ ଲିପିରେ ରଚିତ ବଙ୍ଗଳା ରଚନା :**

ଚଣ୍ଡୀ ଦାସଙ୍କ ମଥୁର ମଙ୍ଗଳ ସଂପ୍ରଦା ଓ କିଶୋର ଦାସଙ୍କ ଅଷ୍ଟତାର ଇତ୍ୟାଦି ।

**ସଂରକ୍ଷିତ ଗ୍ରାମ, ବ୍ୟକ୍ତି ଓ ପୋଥିଗୁଡ଼ିକର ପରିଚୟ :**

ସଂରକ୍ଷିତ ଗ୍ରାମ ବ୍ୟକ୍ତିର ପରିଚୟ ସହିତ ତାଳପତ୍ର ପୋଥିଗୁଡ଼ିକର ଆଦ୍ୟ ଓ ଶେଷ ପଙ୍କ୍ତିଗୁଡ଼ିକର ଅବିକଳ ନକଲ ଲେଖକ ନିଜ ଲିପିରେ ଉଦ୍ଧାର କରି ପୋଥିର ପରିଚୟ ⁂ ନିମ୍ନରେ ଦେଇଅଛି ।

---

ସ୍ପଷ୍ଟୀକରଣ : ⁂ ପୋଥିର ପରିଚୟ—ତାଳପତ୍ର ପୋଥିଗୁଡ଼ିକରେ ଆଦ୍ୟ ପଙ୍କ୍ତିରୁ ପୋଥିର ବିଷୟର ନାମ, ରଚୟିତାର ଇଷ୍ଟର ନାମ ଏବଂ ଶେଷ ପଙ୍କ୍ତିରୁ ପୋଥିର ବିଷୟର ନାମ ଦେଖିବାକୁ ମିଳେ । ପୋଥିଗୁଡ଼ିକରେ ବିଭିନ୍ନ ରଚୟିତାମାନଙ୍କ ରଚିତ ମୂଳରଚନାଗୁଡ଼ିକ ଅନ୍ୟ ଲିଖନୀକାରମାନଙ୍କ ଦ୍ୱାରା ବାରମ୍ବାର ରଚିତ ହୋଇ ଆସିଅଛି । ସୁତରାଂ ରଚୟିତାର ନାମ, ତାହାର ଇଷ୍ଟର ନାମ ତଥା ଉଦ୍ଧାରକାରୀ ଲିଖନୀକାରମାନଙ୍କ ନାମ ସହିତ ପୋଥି ଲେଖା ଯାଇଥିବା ସ୍ଥଳଗୁଡ଼ିକର ସବିଶେଷ ବିବରଣୀ ପରିଚୟରେ ପ୍ରକାଶ କରଯାଇଅଛି ।

## ବାର୍କିଆ

ପଧାନ ପାଲି, ଲୁହାକେଗ, ଉଦରଟୋଲ୍ଲ, ଡାହିପୋଷ, ବାର୍କିଆ ମୌଜାଗୁଡ଼ିକ ମଧ୍ୟରେ ବାର୍କିଆର ଉତ୍କଳୀୟ ଚେତନା ଉଚ୍ଚକୋଟୀର ଥିଲ । ସ୍ୱର୍ଗତ ସାଧ ପ୍ରଧାନ ଗୋବର୍ଦ୍ଧନ ପ୍ରଧାନ ଦନାର ପ୍ରଧାନ, ବୁଧୁ ପ୍ରଧାନ ଏବଂ ମହଗୁ ପ୍ରଧାନ ପୁରୁଷାନୁକ୍ରମେ ବିଗଟ ଗୀତା, ନାମରତ୍ନ ଗୀତା ଆଦିର ଉପାସକ ଥିଲେ । ସ୍ୱର୍ଗତ ମହଗୁ ପ୍ରଧାନଙ୍କ ପୁତ୍ର ଶ୍ରୀ ଉଦୟ ପ୍ରଧାନ, ଜାତି-ଭୂୟାଁ, ଗୋତ୍ର-ନାଗସ୍ୟ ଗୋତ୍ର ଉପରୋକ୍ତ ତାଳପତ୍ର ଖେଜା ଦ୍ୱୟ ରଖିଅଛନ୍ତି । ଲେଖକ ତାଙ୍କଠାରୁ ତାଳପତ୍ର ଖେଜା ଆଣି ସେଗୁଡ଼ିକର ପରିଚୟ ଦେଇଅଛି ।

### ୧— ବିଗ୍ରଟ ଗୀତା ତାଳପତ୍ର ଖେଜା (ଅବିକଳ ନକଲ)

ଶ୍ରୀ ବିଗଟ ଗୀତା
ଲେଖନ ୦୪

ଶ୍ରୀରି ଓ ନମ ।। ଶ୍ରୀ ନିଗକାଚୟା ନମ ।।
ନମୟେ ଗୁରୁ ଦେବା ସ୍ୱାମି ।। ନମୟେ ଗୁରୁ
ଅନ୍ତର୍ଜ୍ୟମି ।। ନମସ୍ତେ ଗୁରୁ ଦାରୁ ବ୍ରହ୍ମ ।।
ମାହା ସୁନ୍ୟରେ ତୋ ବିଶ୍ରାମ ।।

ମାହା ସୁନ୍ୟରେ ତୋର ଥିତି । ତୁ ନାଥ ତ୍ରିଭୁବନ ପତି ।।
ତୁ ନାଥ ଜଗତ କାରଣ । ତେ ତହୁଂ ନାହିଂ ମୋର ଆନ ।।
ଅର୍ଜ୍ଜୁନ ବିନୟ ଭବରେ । ପଡ଼ଇ କୃଷ୍ଣର ପୟରେ ।।
ଆନନ୍ଦେ ବେଣି ପାଦ ଧରି । ସୁ-କ ଗଦ୍‌ଗଦେ ତନୁ ଘାରି ।।
ଅର୍ଜ୍ଜୁନ ବୋଲଇ ଗୋସାଇଂ । ନାଥ ସଶୟ କହ ଫେଇ ।।
ଅର୍ଜ୍ଜୁନ ଭଗତି ଭବରେ । ପଡ଼ଇ ଗୋବିନ୍ଦ ପୟରେ ।।
ମୋତେ ତ ସଂସୟ ଲଗିଲ । କାହୁଂତ ନାମ ଜାତ ହେଲ ।।
ତୋହର ରେଖ ରୁପ ନାହିଁ । ସୁନ୍ୟ ପୁରୁଷ ସୁନ୍ୟ ଦେହିଂ ।।
ବଲୁ ଜେ ସୁନ୍ୟ ମୋର ଦେହିଂ । ଆବର ନାମ ଥିଲ କାହିଂ ।।
ମାତାର ପଦ୍ମ ଯେ ଦେଖିଲୁ । ସେଠାରେ ନାମ ନ ବହିଲୁ ।।
ଆଦ୍ୟରେ ନାମ ଥାଉ ନାହିଂ । ଅନ୍ତରେ ନାମ ଥିଲ କାହିଂ ।।
ମର୍ତ୍ତ୍ୟେରେ ଜେତେ ନାମ ତୋର । ଫେଡ଼ି କହିବା ତୋ ଆଗର ।।

× × × × ×

ନାମ ବ୍ରହ୍ମରୁ ବିଷ୍ଣୁ ଜାତ । ନାମରୁ ଜଗତ ସମ୍ଭୂତ ॥
ଛପନ କୋଟି ଜିବ ଜେତେ । ନାମରେ ଅଛନ୍ତି ସମସ୍ତେ ॥
ନାମ ଜେ ଜଳ ଥଳ ତଳ । ପାଷାଣ ମୃତିକା ଆବର ॥
ନାମ ନଥିଲ କେବା କାହିଂ । ନାମ ଜେ ସବୁଠାରେ ରହି ॥
ଘଡଂଛିଂ ସର୍ବା ଘଣ୍ଟେ ନାମ । ନାମ ଛାଡ଼ିଲେ ଦେହ ସୁନ୍ୟ ॥
ନାମ ଛାଡ଼ିଲେ ନାମ ଗଲ । ଏ ଦେହ ଥକିତ ହୋଇଲ ॥
ସୁଣ ଅର୍ଜ୍ଜୁନ ମନ ଦେଇ । କହିଲୁଂ ନାମ ତତ୍ୱ ଫେଇ ॥
ତୁ ଏହା ମନେ ହେତୁ କର । ନାମକୁ ଘେନି ବେଗେ ତର ॥
କହଇ ବଳରାମ ଦାସ । ବିରଟ ଗିତା ମାହାରସ ॥

ଇତି ଶ୍ରୀ ବିରଟ ଗିତା ବ୍ରହ୍ମଂବିଦ୍ୟାଆ ବୟାସିକା ପରମହଂସଂ ସହିତୟାଂ ଶ୍ରୀହରି ଅର୍ଜ୍ଜୁନ ସଂମ୍ପୁର୍ଣ୍ଣେ ନାମୋ ପ୍ରଥମ ଅଧ୍ୟାୟ ॥ ❊ ॥

ଏହିଭଳି ଦ୍ୱିତୀୟ ତୃତୀୟ ଚତୁର୍ଥ ପଞ୍ଚମ ଷଷ୍ଠ ସପ୍ତମ ଅଷ୍ଟମ ନବମ ଦଶମ ଏକାଦଶ ଅଧ୍ୟାୟ ବର୍ଣ୍ଣିତ ହେବାପରେ ଦ୍ୱାଦଶ ଅଧ୍ୟାୟ ବର୍ଣ୍ଣିତ ହୋଇଅଛି ।

## ଦ୍ୱାଦଶ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ ବେନି କର ଜୋଡ଼ି । କୃଷ୍ଣ ଚରଣ ତଳେ ପଡ଼ି ॥
ବୋଲଇ ସୁକ ଗଦଗଦେ । ପ୍ରଣମ୍ୟ କରି କୃଷ୍ଣ ପାଦେ ॥
ଭୋ ନାଥ ଆରତ ଭଞ୍ଜଂନ । ଭଗତି ଜନକଂ କୋଠ ଧନ ॥
କଥାଏ ପଚ୍ଚରିବି ମୁହିଂ । ନିର୍ମାୟା କରି କହ ଫେଇ ॥
ସୃଷ୍ଟି ପାଳଣା ଜେ କହିଲ । ପ୍ରଳୟ କିମ୍ପା ଗୋପ୍ୟ କଲ ॥
ସୃଷ୍ଟି ପ୍ରଳୟ ମୋତେ କହ । ମନରୁ ଫେଡ଼ ମୋ ସନ୍ଦେଂହ ॥
ଏତ୍ଦେକ ସୁଖ ଦେବା ପାଇଁ । ଅଳପେ କିମ୍ପା ନ ସଜାଇ ॥
କିବା ଅଳପ ଆୟୁ ତାର । ଫେଡ଼ି କହିବା ମୋ ଆଗର ॥

## ଶ୍ରୀ ଭଗବାନ ଉବାଚ

### ଶ୍ଲୋକ

ମାଈଁ ଗଭି ସୁନ୍ୟଂ ବ୍ରହ୍ମା ଭବୋଗୁଥା ।। ଗୋପେ ନ୍ତଂ ନୂଂ ଅକମ୍ପେ ନମୋ ଭବ ବେତଂ ଗିତା ।।

ଶୁଣ ଅର୍ଜୁନ ମନ ଦେଇ । ଏତେକ ମୋର ଗ୍ୟାଂନ କହି ।।
ବାକଂତା ନ କହିବୁ କାହିଂ । ମୋ ପାଦ ପଦ୍ମ ଥାଅ କ୍ଷୁଇଂ ।।

× × ×

ସୁଣି ଅର୍ଜୁନ ହେଲା ତୁସ । ପାଇଲା ଗ୍ୟାଂନର ସନ୍ଦେଂସ ।।
ଗୋବିନ୍ଦ ଚରଣକୁ ଆସ । ଭଣିଲେ ବଳରାମ ଦାସ ।।

ଇତି ଶ୍ରୀ ବିରଟ ଗୀତା ବ୍ରହ୍ମବିଦ୍ୟାୟା ବଂୟାସିକା ପରମହଂସ ସହିତାୟାଂ ଶ୍ରୀ ହରି ଅର୍ଜୁନ ସମ୍ବାଦେ ନାମୋ ଦ୍ୱାଦସଅଧ୍ୟାୟଃ ।। ⁂ ।। ।। ଶ୍ରୀ ।। ଭିମ ସ୍ୟାପୋରଣେ ଭଗୋଂ ମୁନିରପି ମତିଭ୍ରମ ଜଦି ସୁଧ ମସୁଧ ମମ ଦୋସ ନ ବିଦ୍ୟତେଂ ।। ଶ୍ଳୋ ।। ଭଗ୍ନିଂ ପୁଷ୍ଟଂ କଟୀଗ୍ରିବଂ ଲେଦୁଷ୍ଟୟ ଧୋ ମୁଖଂ ଦୁଖେନ ଲିଖିତଂ ଗ୍ରଂନ୍ଥ ପୁତ୍ରବନ୍ତଂ ପ୍ରତିପାଳୟତା ପୁସ୍ତକ ହରନ୍ତେ ଜସ୍ତୋ କାଣୋ ଦୁଖୀ ଭବେତଂ ନର ମୃଖିୟା ସ୍ୱର୍ଗ ନ ଗଛିତଂ ପିତା ନର କହ ଜୟି ଗ୍ରନ୍ଥକ୍ରତା ମୁନି ବ୍ୟାସୋ ସୋଲୋଗ ଦ୍ୟେପିଦିନ୍ୟ ଅନ୍ତେ ସାଚର୍ଣ୍ଣିଲି ଦୁଧିଲୁ କାକ ଥାଇ ଗଘବ ।। ସମାପତ ହାନିସ୍ତେ ।। ନମସ୍ତେ ନମସ୍ତେ ସରସ୍ୱତି ନମସ୍ତେ ବିଘ୍ନରାଜ ନମସ୍ତୁତେ ।। ହେ ସୁଗ୍ୟଂଜନମାନେ ସୁଦ୍ଧ ଅସୁଦ୍ଧ ପୁରେଇ ଗାଇବ ।। ଲେଖନ କାରକୁ ଦୁସ ନ ଦେବ ।। ଏ ପୁସ୍ତକରେ ଜ୍ୟାହା ଥିଲା ତାହା ଲେଖିଲୁ ଥିଲା ନଥିଲା କାହୁଂ ଆଣିଦେବୁଂ ।। ଏ ପୁସ୍ତକ ବଢ଼ିଲା ମାର୍ଗଶିର ମାସରେ ସୁକଳ ପକ୍ଷରେ ଦୁଆଦ୍ୟସି ବୁଧୁବାର ଦିନରେ ମଧ୍ୟାହ୍ନ ସମୟ ବେଳ ଗୁରିଘଡ଼ିଠାରେ ସମାପତ ।। ଏ ପୁସ୍ତକ ଲେଖା ହୋଇଲା ନାଗର ରଜ୍ୟରେ ଲୁଆକେଲ ଗ୍ରାମରେ ।। ଶ୍ରୀରି ଶ୍ରୀରି ଗଡ଼ଢ଼େଂସ୍ୱର ଗଜପତି ନ୍ୟଂଗର ନିଂକଟ କଳେବର ବିରଧିବିରବର ହଚକ୍ରବ୍ରତି ସିରି ସିରି ମଞ୍ଜୁଦେବ ମହୋରଜାଙ୍କର ଅଗ୍ରେ ଲେଖା ହୋଇଲା ।। ଶ୍ରୀ ରଧାକାନ୍ତ ରକ୍ଷା କରିବେ ।। ଅଧମ ସୁଦ୍ରଚକେତ ପ୍ରଧାନକୁ ।। ଶ୍ରୀ ଗୁରୁ ନମସ୍ତେ ।। ଶ୍ରୀ ଜଗନ୍ନାଥଙ୍କ

ଚରଣେ ସରଣ ।। ଶ୍ରୀ ବୈଦ୍ୟନାଥଙ୍କ ଚରଣେ ସରଣ ।। ଶ୍ରୀ ରାମଚନ୍ଦ୍ରଙ୍କ ଚରଣେ ସରଣ ।। ଶ୍ରୀ ସାଧୁଜନଙ୍କର ଚରଣେ ସରଣ ।। ଶ୍ରୀ ଗୁରୁଙ୍କର ଚରଣେ ସରଣ ।। ଶ୍ରୀ ଗୋପି ଗୋପାଳଙ୍କର ଚରଣେ ସରଣ ।। ଶ୍ରୀ ହରି ଅର୍ଜୁନ ଚରଣେ ସରଣ ।। ଶ୍ରୀ ।।

## ୨ । ନାମରତ୍ନ ଗୀତା ତାଳପତ୍ର ପୋଥି (ଅବିକଳ ନକଲ)

ଶ୍ରୀରି ନାମରତ୍ନ ଗିତା ପ୍ରଥମ ଛନ୍ଦଂ ଏ ଲିଖନି ।। ଶ୍ରୀରି ଗଂନସାୟେ ନମଃ ।। ଶ୍ରୀ ଗୁରୁଓ୍ୟେ ନମଃ ।। ପରମ ଗୁରୁଓ୍ୟୋ ନମଃ ।। ଶ୍ଳୋକ ।। ଅମୋଙ୍କଃ ଘଳତା ଘଳ ଜଳଧିତାଂ ଧୁଳିନବଃ ।। ଶ୍ୱୈଶୋ ମୁକ୍ତା ଭୁଣେ କୁଳିସତା ବଜ୍ରଂ ତୁଣେଂ କ୍ଷିଣତାଂ ।। ବହ୍ନି ସିତଳତାଂ ନିମଂ ନ ଫଳୁ ମାୟାତି ଯସେ ଛୟା ସନାଦ୍ର ଘଟିନା ବିଧାନ ପଟବେ ଶ୍ରୀ କୃର୍ଷ୍ଣୟା ନମଃ ।। ଗିତାଉଁ ସୋହୋଦ୍ର ନାସ୍ତି ।। ମାହିଉଁ ନାସ୍ତ ବାନ୍ଧବା ।।

ଅର୍ଜୁନ ଉବାଚ ।। ଅର୍ଜୁନ ବୋଇଲେ ଶୁଣିବା ଗୋସାଇ ।। ଅସେସ ବ୍ରହ୍ମାଣ୍ଡର ତୁମ୍ଭେ ନାୟଥ ।। ସାବଧାନ ହୋଇ ଶୁଣିବା ଗୋସାଇଂ ।। ସକଳ ସାହାସ୍ତ୍ରମାନଙ୍କର ସାର ସାରତ ।। ଶ୍ରୀକୃଷ୍ଣ ଉବାଚ ।। ଶ୍ରୀ ହରି କହଓ୍ୟେ ମୁନି ଧନୁ ଜିତ୍ରା ଭଗଂ ଠିକେ ଏ କଥା ବିଗ୍ୱର ।। ସିସୁମତି ଶ୍ରୀକୃଷ୍ଣ ଦାସ ଭଣଇଂ ।। ଶ୍ରୀ ନାମରତ୍ନ ଗିତା ସାର ।। କଳସା ବାନିରେ ଗାଇବ ।।

ବନ୍ଦଂଇଂ ଯେ ଜଗନ୍ନାଥ ନିଳଗିରି ପତି
ଅଭିନବ ଜଳଧର ସୁନ୍ଦର ମୁରତି ।।
କର୍ଣ୍ଣିରେ ସୋହଇ ତୁମ ସୁବର୍ଣ୍ଣର ସୁତା

× × ×

୨ୟ ପତ୍ରରେ :— ଚୁଳରେ ଦୟଣା ସାଜ — ସୋହେ
କୋଟିଏ କନ୍ଦପ୍ର ଫିରି ତ୍ରିଭୁବନ ମୋହେ ।।
ଭକ୍ତଜନ ସଂଖାଳିକି ମୁକତିର ଘର
ତହିକି ସରଗ ଗଳି କୃଷ୍ଣ ଦାସ ଛାର ।।
ପାଦ ପଦ୍ମ ରେଣୁକୁ ମୁଁ କରିଛି ଭରସା
ଦିନଜନ ବନ୍ଧୁ ବୋଲି ପାଇଲି ଭରସା ।।

ଦେବାଧି ଦେବଙ୍କ ଉପରେ ଦେବରାଜ
ଶରଣ ରକ୍ଷଣ ସଙ୍ଖ ଚକ୍ର ଚତୁର୍ଭୁଜ ॥

ପବିତ୍ରଙ୍କି ଦିଶ ସିନ୍ଧୁ ଉତୁରଣ ମୁଖେ
ବିଜୟ ଅନାଦି କନ୍ଦ ନିଳଗିରି ସିଖେ ॥

ଦକ୍ଷିଣ କଳପ ବଟ ମୁରତି ମଣ୍ଡପ
ସଖଂନାଭି ମଣ୍ଡଳେ ବିଜଏ ବ୍ରହ୍ମରୂପ ॥

ଆରତ ତାରଣ ନାଥ ଭକ୍ତିକି ବଜ୍ରସେନା
ନିଳଚକ୍ର ଉପରେ ଉଡ଼ଇ ନୀଳବାନା ॥

ଢ଼ଳ ଢ଼ଳ ବିରାଜେ ମୁକୁତା କଣ୍ଠମାଳ
ବେନି ଶ୍ରବଣକୁ ସହେ ସ୍ୱବର୍ଣ୍ଣ କୁଣ୍ଡଳ ॥

ନବରତ୍ନ ପାଦେକାକୁ ବୀର ଭଲ ସାଜେ
ବଳନୟସ କର୍ଦ୍ଦି ଭେଜେ କଙ୍କନ ବିରାଜେ ॥

ଉପୁରି ଅଙ୍ଗାକୁ ଶୋହେ ରତ୍ନ ଓଢ଼ଣି
ଶ୍ରୀ ଅଗେଂ ଚନ୍ଦନ ଘସେ ଅଗେଂ ଉଂଛଣି ॥

ରପକୁ ସୋହଇ ଲକ୍ଷ କୁଟିଏ ମଦନ
ରଗଂା ଅଧରକୁ ସୋହେ ସୁନ୍ଦର ବହନ ॥

କଚଟି ବାହୁଟିଜେ ବିବିଧ ରତ୍ନ ଜଡି
ଦଏଣାର ଦଣ୍ଡାମାଳ ପାଦ ଯାଏ ପଡ଼ି ॥

କଙ୍କାମୁଖ ଗୋଟିକି ସୁନ୍ଦଂର ଚକାଡୋଳା
ପଦ୍ମ ପୁଷ୍କରିଣିରେ କି ଭୃଗଂ କରେ ନିଳା ॥

× × ×

୮୩ ପତ୍ରରେ :—ଏ କଥାକୁ ଜାଣି ହାଦେ ତିଥି ଦୂଲ ଜାଇ
ମାୟା ମୋଦେ ପଡ଼ି ପୁଣି ବୁଡ଼ୁକି ମରୁଥାଇ ॥ ୭୮

× × ×

ନାମର ମହିମା ଶୁଣି ପାଇଲି ଭରସା
ଆଜଠାରୁ ମୋହର ଜେ ଗଲ କଷ୍ଟ ଦସା ॥ ୮୪

ତୁମ୍ଭ ନାମ ଗୋଟି ଏକା ହୃଦ ପଦ୍ମ ଧରି
କଣ୍ଠ ତଟେ ଖଞ୍ଜିଥିବି ରତ୍ନମାଳ କରି ।। ୮୫
ଶ୍ରୀମୁଖ ବଚନ ଶୁଣି ପାଇଲି ଭରସା
ପାଦ ପଦ୍ମ ବିନୁ ମୋର ଅନ୍ୟେ ନାହି ଆସା ।। ୮୬
ଶ୍ରୀହରି ବୋଇଲେ ଶୁଣ କୁଷ୍ଟିରର ଘଇ
ଯେ ସାହାସ୍ର ଶୁଣିଲେ ଜେ ଗ୍ୟାନବନ୍ତ ହୋଇ ।। ୮୭
ଅମୃତ ଭୋଜନ ଠାରୁ ଅଡ଼ ଦ୍ରବ୍ୟ ପିତା
୮୪ ପତ୍ରରେ :—ଅସରନ୍ତି ରସବନ୍ତ ଶୁଣିଲେ ଗୀତା ।। ୮୮
ଶ୍ରୀମୁଖ ବଚନେ ଏଜେ ପବିତ୍ର ପୁନ୍ୟ ପାଠ
ଭଗତକୁ ଫଖାଳି ଏ ବୈକୁଣ୍ଠକୁ ବାଟ ।। ୮୯
ନାମ ରତ୍ନ ଗୀତା ମୋର ଜେ ପାରିବ ଧରି
କ୍ଷେଣେ ଜିବ ତେଣେ ତାକୁ କିଛି ହି ନାହାରି ।। ୯୦
ଅବୋଧମାନଙ୍କୁ ବୋଧ ଶୁଣ ପଣ୍ଡୁ ବଛି
ସବୁ ସାଶ୍ରମାନଙ୍କର ବିଜ ଏଥି ଅଛି ।। ୯୧
ଠିକ ଦୁଉ କରି ଏ ସାହାଶ୍ର କଲେ ଲୟେ
ଜନ୍ମପତି ଶୁଣି ତାକୁ କରିଥାଇ ଭୟେ ।। ୯୨ ।।
କ୍ଷତ୍ରିୟ ହୋଇ ଏ ସାହାଶ୍ର ପଢ଼ିଥାଇ ଜେହୁ
ସା ଗ୍ରାମରେ ଜସ ପାଇ ଜଏ କରେ ସେହୁ ।। ୯୩
ଚିତ-ଦୁଇ କରି ଜେ ମନରେ ଗୁଣୁଥିବ
ବନ୍ଧଂ ଘରେ ଥିଲେ ସେ ବନ୍ଧଂନ ଫିଟିଜିବ ।। ୯୪
ତିନି ଦିନ ଏ ସାହାଶ୍ର ଜେ ପାରିବ ପଢ଼ି
ନାନା ରୋଗ ବ୍ୟାଧି ତା ଦେହରୁ ଜିବ ଛାଡ଼ି ।। ୯୫
ସବୁ ସାଶ୍ର ବୀଜ ଏଥି ହୋଇଅଛି ଜୋଡ଼ା
୮୫ ପତ୍ରରେ :—ଗ୍ରହମାନେ ଶାନ୍ତ ହୋଇ ନ କରନ୍ତି ପିଡ଼ା ।। ୯୬
ଏ ଗିତାରେ ଫଳସ୍ତୁତି ଅଛି ପାର୍ଥ ଜେତେ
ଷବିଷୟଂ କରିବା କହିବା ପାର୍ଥ ତୋତେ ।। ୯୭
ଦେବତାଙ୍କୁ ଦୁର୍ଲଭ ମନସେଂ ଅଗୋଚର
ଭଗତକୁ ଫଖାଳି ଏ ମୁକତିର ଘର ।। ୯୮

ଏ ସାହାଣ୍ର ଛୁଦ ପଦ୍ମେ ଢେ କଶ୍ଚୁ ବନ୍ଦିଯେ
ଶ୍ଚେର ଖଣ୍ଡ ସହିଂକୁ ନ ଥିବ ତାର ଭୟେ ।। ୯୯

ଏ ସାଶ୍ରରେ ପ୍ରସଂସା ପାଇ ସନ୍ଥର ବଚନେ
ଗଜା ହାତ ଦେଖେଇ ତାକୁ ଅମୃତ ନୟନେ ।। ୧୦୦

ଦୁଃଖି ହୋଇ ଗିତା ଏ ମହିମା ଅତି ଗୁଣ
ଦେବ ସାଣ୍ରା ଥିବ କରି ସବୁ ଠାକୁରେଣ ।। ୧୦୧

ଅମୃତ ହୁଂ ଅଧିକ ଏ ସାଧୁ ରସ ବାଣି
ଫସାର ଜନକଂ ହିତେ କୃଷ୍ଣ ଦାସ ଭଣି ।। ୧୦୨

ଇତି ଶ୍ରୀ ନାମରତ୍ନ ଗିତା ହରି ଅର୍ଜୁନ ସମ୍ବାଦେ ଭଗତ ହ୍ରୁଦୟ ବିସ୍ତାରଣେ ନାମ ରତ୍ନ ଗିତା ଏ ଫସାର କାରଣେ ।। ନାମୋ ଦ୍ୱାଦସ ଅଧ୍ୟାୟଃ ।। ମନ୍ଦିରେ ପଢ଼ି ବ୍ରହ୍ମପାଠ ଧନ ଜନ ହୋଇ ।। = ।। ଶ୍ରୀ ।। ହେ ସାଧୁଜନ ମାନେ ସୁଧ ଅସୁଧ ଯୋଗେଇ ଗାଇବ ।। ଲେଖକକୋ ନାସ୍ତି ଦୋଷ ।। ୦ ।। ନ ଦେବ ।। ଯେ ପୋଥି ଠିକ ନାଗ୍ରା ଗଈଜରେ ବର୍ତ୍ତିଲ ନାବାଳିକ ମନ୍ଦିଜର ଥିବାରେ

୮୬ ପତ୍ରରେ :– ବିତିନାକି ବନ୍ଦଂ ଯୋୟେସେ ଗ୍ରାମରେ ବେଲ୍ଲ ନ ଘଡ଼ିଠାରେ କାର୍ତ୍ତିକ ମାସରେ ଉଜଳ ପକ୍ଷରେ, ସୁକୁରୁବାର ପଞ୍ଚମି ଦିନ ବେଳ ନ ଘଡ଼ି ଠାରେ ସପୁର୍ଣ୍ଣ ହୋଇଲକ ।। ପୁରା ।। ଥିଲ ନ ଥିଲ ପୁରାଇ ଗାଇବ, ଲେଖନକାରକୁ ଦୁସ ନ ଦେବ ।। ଏ ପୁସ୍ତେକ ବନ୍ଦଂ ପୁୟେ ସେଂ ଦ୍ୱାଡ଼ିଯା କାଲେଜ ରଖିୟା କରିବେ ।। ଶିରି ଶିରି ବେଦବ୍ୟାସ ରସି ଗୀତ ସରି ।। ଶ୍ରୀରି ଶ୍ରୀରି ଗ୍ରାମ ଦେବତା ରକ୍ଷା କରିବେ ।। ହାଡ଼ିପା କାଲେଜୁ ଏ ପୁସ୍ତିକା ।।

---

ସ୍ପଟୀକରଣ :—ନାମରତ୍ନ ଗୀତା ତାଳପତ୍ର ପୋଥିର ଅନେକ ଗୁଡ଼ିଏ ପତ୍ର ଉଇ ଖାଇ ନଷ୍ଟ ହୋଇ ଯାଇଅଛି । ପ୍ରଥମ ଅଧ୍ୟାୟରୁ ଦ୍ୱାଦଶ ଅଧ୍ୟାୟ ପର୍ଯ୍ୟନ୍ତ ବାରଗୋଟି ଅଧ୍ୟାୟର ସମ୍ପୂର୍ଣ୍ଣ ଲେଖା ମିଳିବା ସମ୍ଭବ ନ ହେବାରୁ ଉପରୋକ୍ତ ଭାବେ ପୋଥିଟିର ପରିଚୟ ଦିଆଗଲା ।

## ୩ । ବୈଦ୍ୟ ଶାସ୍ତ୍ର ତାଳପତ୍ର ପୋଥି (ଅବିକଳ ନକଲ)

ବାର୍ଙ୍କିଆ ଗ୍ରାମ ନିବାସୀ ଶ୍ରୀ ଉଦୟ ପ୍ରଧାନଙ୍କ ବଡ଼ ପୁଅ ଘର ଶ୍ରୀ ବାନେଶର ପ୍ରଧାନଙ୍କ ଗୃହରେ ଉକ୍ତ ବୈଦ୍ୟ ଶାସ୍ତ୍ର ତାଳପତ୍ର ପୋଥି ଦେଖିବାକୁ ମିଳେ । ପୋଥିଟିର କେତେକାଂଶ ଉଇ ଖାଇ ନଷ୍ଟ ହୋଇ ଯାଇଅଛି । କେତକ ପତ୍ର ଫାଟି ତହିଁରୁ କେତକ ଅଂଶ ନଷ୍ଟ ହୋଇ ଯାଇଅଛି । କେତେକ ପତ୍ର ସମ୍ପୂର୍ଣ୍ଣ ହଜି ଯାଇଅଛି । ଜରା ଜୀର୍ଣ୍ଣ ଭଗ୍ନକାୟ ଅବସ୍ଥାରେ ପଡ଼ି ରହିଥିବା ପୋଥିଟିର ପରିଚୟ ଉଦ୍ଧାର କରିବା ଲେଖକ ପକ୍ଷେ ଅସମ୍ଭବ ; ତଥାପି ପୋଥିଟିର ସାମ୍ୟକ ପରିଚୟ ନିମ୍ନରେ ଦିଆଯାଇଅଛି ।

ପ୍ରଥମ ପତ୍ର :—ବାସୁଦେବ ବିଶାରେଦଃ ।। ଚିତ୍ର ଗୁପତ ନମସ୍ତୁତେ ।। ତାଧରୁର ଦଣ୍ଡ ଅଜାଣୁ ଗଣେକ ମୁଖ ।। ପତ୍ରନାମା ଅଗ୍ରଯାତି ।। ସର୍ଗଂ ବିସମ ସନ୍ଧ୍ୟା ନ ଜାଣନ୍ତି ଉଲରି ।। ··· ··· ଝଇଦ୍ୟ ବୋଲନ୍ତି ବଡ ତ ବ୍ୟଧ ... ... ... ମୃତ୍ୟୁ ଦେନା ଲକ୍ଷ୍ଣ ବିସ୍ତର ... ... କାୟତେ ।। ୪ ।। ରକ୍ତ ବର୍ଣ୍ଣ ଉତ ପତିତ ।। ହରିତ ରକ୍ତ ବର୍ଣ୍ଣ ଭବେ କାସ ସଲସିମା ଉଣବନ୍ତି ।। ୪ ।। କସ୍ତୁପତି କର୍ଣ୍ଣ ବଧିର ।। ··· ···

ଦ୍ୱିତୀୟ ପତ୍ର :— ... ... ... ... ସ୍ତନ ମାପିତେ ମୃତ୍ୟୁ ।। ବିନା ଗତେ ଉବେ ମୃତ୍ୟୁ ।।

**ଅଥ** — ବାଦ ବିବସୟଂ ।। ମଦିନା ଦାନା ସୟମ୍ ।। ପିତାନାସାୟା —ଲିଘନେ ଅର୍ଗ୍ନି କମ୍ପଂନାମୟା ।। ... ... ... ...

ନାସାୟା ଲର୍ଘ୍ନିଲେ ।। ନାଡ଼ି ମୃତ୍ୟୁ ପରିମାୟା ।। କିଓ୍ୟାନ ଚର୍ଥେ ବବନ ।। ଯେବି ଯାସନ ଜାଣିମା ।। ସୋନ୍ଧି ଝୁଦ୍ୟ ବିସ୍ତରତୁ ।। ନାଡ଼ି କିଓ୍ୟା ମୃତ୍ୟୁ ଲକ୍ଷଣ ।। ଭେନେ କାନ୍ତି ।। ମାର ଯେଜା ମୁଜୁତୁନାଂ ।। ସୋ ବୈଦ୍ୟ ପିତୁବବ ଦୁଇନମା । ସଜରେନା ।। ପାନଯୋ ସ୍ତଭ ଲକ୍ଷଣଂ ।। ଅର୍ଥ ।। ପ୍ରସର କେବେ ରକ୍ତ ବର୍ଣ୍ଣ ଦିଶଇ ।। ଲେକ ପଡ଼ିଲେ ଚରକି ଯାଇ ।। ଯେହାକୁ ସ୍ନାନ କରଇବ ।। ଚନ୍ଦ୍ର ନପ ଖାଲି ଦେବ ।। ... ... ଇତ୍ୟାଦି

ନିମ୍ନଲିଖିତ ବ୍ୟାଧିଗୁଡ଼ିକର ଲକ୍ଷଣ ଏବଂ ଚିକିତ୍ସା ପଦ୍ଧତି ପୋଥିରେ ପରିଲକ୍ଷିତ ହୁଏ । ଯଥା— ମଗାଦାଏ, ପୁନାଦି ପାଟନଃ, ବଡ଼ାରକ୍ତଃ, ଅସ୍ତଖ କମ୍ପ ତାଡ଼ିବାକୁ ପାଣ୍ଡକାମଲି କଡି ବଧୁ, ବିଡ଼ ଦାଦ୍ରକୁ (ଦେହର କଣ୍ଡୁ ଭଇ

ହେବାକୁ), କାକୁଟୀ ବାତିକୁଣ୍ଠି ବଧରକୁ, ନାନା ଧିକାନ୍ତକୁ, ଛୂଛୂ ନ୍ଦ୍ରାକୁ, ଅନ୍ତକୁଷ୍ଠ ବଡ଼ଆକୁ, ରକ୍ତ କାଲ ବାତକୁ, ସାପ କାମୁଡ଼ାକୁ, ପେଟବଥାପାକୁ, ଗଗରତ କାସକୁ, ପୋଟୁଳାଧୀ ପାଚନଃ, ଭର୍ଗିଅବ ହେଲେ କାଶ ଶ୍ୱାସ ମନ୍ଦାଗ୍ନିକୁ, ଅମଳାଧୀ ପାଚଂନ, ସାଳମୁଳି ପାଚଂନ, ଅତି ଅନ୍ତ ତୃସାକୁ, ଦେହ ଡାହା ଅତି ଅନ୍ତ ତୃସାକୁ, ସର୍ବ ଗମୁଲ, ମୁଳୁଛଦି ପାଚନ, ତିତାମାରତଣ୍ଡକୁଃ, ପୁରଜରକୁ, ମଦାଅନି ଜରକୁ, ଡେଣା, ବିସମ ଜରକୁ, ମୁଗ ଆରସାକୁ, ମୁଗ ଦୁଲକୁ ଇତ୍ୟାଦି

ଶେଷପତ୍ର :— ପ୍ରକୁତ ରେକ୍ତ ପଡ଼ଇ ଜେହୁ ଘଣ୍ଡଇ ।। ଶ୍ରୀରି ସିବ ଗ୍ରାହ ଅନୁଗ୍ରହେ ।। ମାହାତ୍ର ଭବତେ ହେ ର୍ବଦ୍ୟ ପଣ କରିବ ।। ଶ୍ରୀ ଜଗନ୍ନାଥ ଚରଣେ ସରଣେ। ।। ହେ ସୁଗ୍ୟଜନମାନେ ।। ମମ ଦୋସ ନ ଭବିତେ ।। ଯାହା ଥିଲ ତାହା ଲେଖିଲୁ ।। ଥିଲ ନଥିଲ ମୁଗେଇ ପଢ଼ିବ ।। ଲେଖନ କାରକୁ ଦୋସ ନ ଦେବ ।। ସମ୍ପୁର୍ଣ୍ଣ ହେଲ କାଲିଗ୍ରାଣ ସାହାତଂ ଯେ ।। ଶ୍ରୀରି ବାଣେସର ରଖା କରିବେ ।। ଅରକ୍ଷିତ ବିନଦ୍ ଭୋଇଲେ ।। ଗୁରୁବାର ଦିନରେ ବଡ଼ୀଲ ।। ଗନ୍ଧରିକା ବେଲରେ ।। ଶ୍ରୀ ରାଧାକାନ୍ତ ରଖା କରିବ ଶ୍ରୀକୃଷ୍ଣ ରଖା କରିବ ।। ଶ୍ରୀ ବିଜାଟୀ ଗ୍ରାମରେ ବଡ଼ିଲଂ ।।

—୧୦୪—

## ହମିରପୁର

ଗଡ଼ରଜେଲ ଇସ୍ପାତ ସହର ସନ୍ନିକଟ କୋଇଲି ନଦୀ କୂଳରେ ପ୍ରାଚୀନ ହମିରପୁର ମୌଜା ଅବସ୍ଥିତ । ଏହି ଗ୍ରାମର ସ୍ୱର୍ଗତ ସୁଗ୍ରୀବ ବେହେରା ରେଙ୍ଗେଟା ବେହେରା, ପୂର୍ଣ୍ଣଚନ୍ଦ୍ର ବେହେରା ଏବଂ ମଦନ ବେହେରା ବୃତ୍ତିଷାନୁଯାୟୀ ଖରପୋଷଦାର ରୂପେ ପରିଚିତ ଥିଲେ । ଏମାନଙ୍କର ବଂଶଧର ଶ୍ରୀ ବୃନ୍ଦାବନ ବେହେରା, ସ୍ୱର୍ଗତ ମଧୁସୂଦନ ବେହେରା ଏବଂ ଶ୍ରୀ ସାଧୁ ଚରଣ ବେହେରା ଅଟନ୍ତି । ଗୀତା ଭଗବତ ଚର୍ଚ୍ଚା, ଅତିଥି ଅଭ୍ୟାଗତ ଓ ସାଧୁ ସନ୍ଥଙ୍କ ସେବା ଏହି ବଂଶରେ ସମ୍ମାନିତ ହୋଇ ଆସିଅଛି । ଲେଖକ ଶ୍ରୀ ବୃନ୍ଦାବନ ବେହେରା ଏବଂ ଶ୍ରୀ ସାଧୁ ଚରଣ ବେହେରା ; ଉଭୟଙ୍କ ନିକଟରୁ ଖଣ୍ଡିଏ ତାଳପତ୍ର ଖେଜା ଓ ଖଣ୍ଡିଏ ତାଳପତ୍ର ପୋଥିର ନକଲ ଖାତା ସଂଗ୍ରହ କରି ସେଗୁଡ଼ିକର ପରିଚୟ ଦେଇଅଛି ।

# ଶ୍ରୀ ଯିମୂତ ବାହାନ ବ୍ରତ କଥା (ତାଳପତ୍ର ପୋଥିର ନକଲ)

ଶ୍ରୀ ଯିମୁତ ବାହାନ ବ୍ରତ କଥା ଲେଖନ ।। ଶ୍ରୀ ସୁଭମସ୍ତୁ ।। ଆଦ୍ୟେ ବରୁଣ ପୁଯା କୃତ୍ୟ ।। ତଦନନ୍ତରେ ସଙ୍କଳ୍ପ ।।

ପ୍ରଥମ ଦିନ ବ୍ରତୀମାନେ - ସୌଚ ବ୍ରତ ହୋଇ - ମହୁଲ କାଠି ଦାନ୍ତ ଧାବନ କରି ହଳଦି ଗନ୍ଧା ଘେନି – ସ୍ନାନ କରି ସଳୁ ବସ୍ତ୍ର ପିନ୍ଧିବ ।। ନବିନ ପାତ୍ରରେ ଉଆ ଗୁଡଳ ହବିଷ ଦ୍ରବ୍ୟ ରନ୍ଧଣା କରିବ ।। ଶ୍ରୀ ଯିମୁତ ବାହାନଙ୍କୁ ନୈବେଦ୍ୟ ଦେଇ ଏକବେଳ ଭୋଜନ କରି ରହିଥିବ ।। ଆରଦିନ ପ୍ରଭାତୁ ଉଠି ହଳଦି ଗନ୍ଧରେ ସ୍ନାନ କରି ସମସ୍ତ ସାମଗ୍ରି ତିୟାର କରିବ ।। ଅଷ୍ଟବର୍ଣ୍ଣ ଫୁଲ ।। କିଆ–କେତକି–କନେଅର–ମନ୍ଦାର–ମଲି–ମାଳତି–ଯାଇ–ଯୁଇ ଏମନ୍ତ ଆଠବର୍ଣ୍ଣ ଫୁଲ କରିବ ।। ଆଠବର୍ଣ୍ଣ ଫଳ କରିବ ।। କାକୁଡ଼ି–ମକା–ଯନ୍ହି–ବୋଦି–ତାମ୍ବରଷ–ବଡ଼ଳ – ଗୁଆ–ନଡ଼ିଆ–ହରିଡ଼ା– ଅଏଁଳା ଏମନ୍ତ ଆଠବର୍ଣ୍ଣ ଫଳ କରିବ ।। ସାରିଆ–ମାଲମୁଆ – କାକର–ଲଡ଼ୁ– ଖପର ମଣ୍ଡା – ପୁଳି–ପୁଆ ଏମନ୍ତ ଆଠ ବର୍ଣ୍ଣ ପିଠା କରିବ ।। ଇତ୍ୟାର୍ଦି ଇତ୍ୟାର୍ଦି ... ... ସମସ୍ତ ସାମଗ୍ରୀ ତୀଆର କରି ଆଶ୍ୱୀନ ମାସ କୃଷ୍ଣ ପକ୍ଷ ଅଷ୍ଟମି ଦିନ ଶ୍ରୀ ଯିମୁତ ବାହାନଙ୍କୁ ପୁଯା କରିବ ।। ଏ ମନ୍ତ୍ରରେ ।। ଓଁ ସୂର୍ଯ୍ୟେ ସୁତୋ ମହାତେଯୋ ଯାଳ ପାବକ ଲୋଚନଆ ।। ପୁଯା ଓ ଭକ୍ତି ଭବେନଂ ଦେହି ମେ ବାଞ୍ଛିତଂ ଫଳଂ ।। ଓଁ ଯିମୁତ ବାହାନାୟ ମହାବାୟାମି ଅତ୍ରାଗଚ୍ଛ ।। ଏ ରୁପେ ଯିମୁତ ବାହାନଙ୍କୁ–ଆସନ–ପାଦାସନ–ଅର୍ଘ୍ୟ ଗନ୍ଧ ପୁଷ୍ପ ଧୁପ ନୈବେଦ୍ୟ ଦେଇ ପୁଯା କରିବ ।। ବ୍ରତ ସମସ୍ତଙ୍କର ଅଶ୍ୱସ୍ଥ ଗଛରେ ଚଢ଼ାଇ ଦେବ ।। ଶ୍ରୀ ଯିମୁତ ବାହାନାୟ ବ୍ରତଂ ଗୃହ ନମଃ ।। ଅଥ ପୁଷ୍ପାଞ୍ଜଳି ନମସ୍କାର ।। ଶ୍ଳୋକ ପୁଯ୍ୟ ନିତ୍ୟଂ ଯଥା ସହା ଗୃହୟାତ୍ ପୁଣମାଞ୍ଜଳୀ ।। ଅଥ ନମସ୍କାର ।। ଶ୍ଳୋକଃ ।। ନମସ୍ତେ ଶାକ୍ତି ପୁତ୍ରଷ୍ଟ ନମସ୍ତେ ଅର୍କ ନନ୍ଦନଂ ।। ପ୍ରଣମ୍ୟଂ ଶିରସ୍ୟା ଦେବ୍ୟଂ ଦେହିମେ ବାଞ୍ଛୀତଂ ଫଳଂ ।। ପୁତ୍ର ପୌତ୍ରୀ ଧନୈସୂର୍ଯ୍ୟବର୍ଦ୍ଧତୁ ଯିବିତୀ ତଥା ।। ପ୍ରିତ୍ୟର୍ଥେ ନ ବ୍ରତଂ କୁର୍ଯ୍ୟାତ୍ ଫଳେ ନ ଫଳମାଦିୟେତ୍ ।। ଅଥ ତଦ୍‌ଗତେନ ।। କଥା ଶୃଣୁୟାତ୍ ।। ହେ ବ୍ରତୀମାନେ ଏକ ମନ ଏକେ ଚିତ୍ତ ହୋଇ କଥା ସୁଣ ।। ଋଷି ଉବାଚ ।। ଶ୍ଳୋକ ।। ଲମ୍ବୋଦର ଗଣାଧ୍ୟକ୍ଷଂ–ଗଜ ବକ୍ତ୍ର ବୀନାୟକେ ।।

ନମାମି ପାର୍ବତି ପୁତ୍ରଂ—ଅଗ୍ରପୂଯା ଗଯାନନଂ ।। ଏବଂ ଭୁତ ଯେ ଗଣେଶ୍ୱର ତାହାଙ୍କୁ ମୋର ନମସ୍କାର ।। ସେ ସର୍ବଦେବଙ୍କ ଅଗ୍ର ପୂଯୀ ଅଟନ୍ତି ।। ହେରିମାନେ ଏକମନ ହୋଇ ଶୁଣ ।।

ବିନ୍ଧ୍ୟାଚଳ ବଲି ଏ ଗିରି ଅଛି ।। ସେ ନର ରଯାର ନାମ ବିଦ୍ୟୁଚଳା । ମନ୍ତ୍ରୀର ନାମ ଧର୍ମଦତ୍ ।। ସେ ରଯା ବଡ଼ ଧର୍ମବନ୍ତ ।। ବଡ଼ ପଣ୍ଡିତ ବିଷ୍ଣୁଭକ୍ତି ସକଳ ଗୁଣେ ପରିପୂର୍ଣ୍ଣ ।।

× × × ×

ଶ୍ରୀ ଯିମ୍ଯୁତ ବାହାନ ଅମୃତ ପାଇ ଦେହ ବହି ଅଯାଘର ହୋଇ ନରଲୋକେ ପୂଯା ପାଉଅଛନ୍ତି ।। ସେହିଦିନ ଠାରୁ ନରଲୋକେ ଶ୍ରୀ ଯୁମ୍ଯୁତ ବାହାନଙ୍କ ବ୍ରତ ବିକ୍ଷାତ ହୋଇ ରହିଲା ।। ସେହିଦିନଠାରୁ ନର ନାରି ଏ ବ୍ରତ କରୁଅଛନ୍ତି ।। ଏ ବ୍ରତ ଯେ ଏକ ଚିତ ତଦ୍‌ଗତ କରି କରଇ ଯେ ଯାହା ମନ ବାଞ୍ଛା କରଇ ତାହା ଫଳ ଲଭଇ ।।

× × × ×

ହେ ବ୍ରତୀମାନେ ହୁଳହୁଳି ସଙ୍ଖ ଶବଦ କରି ନୈବେଦ୍ୟ ଦେଇ— ଶ୍ରୀ ଯିମ୍ଯୁତ ବାହାନଙ୍କୁ ଅର୍ଘ୍ୟ ବନ୍ଦାପନା କରି ନମସ୍କାର କରିବ ।। ପ୍ରସାଦ ଶିରେ ଘେନିମ ।। ଘୋଡ଼ ଘାଲି ଶୋଇବ ।। ରାତ୍ର ଉଯାଗର ରହିବ ।। ଯଯ ଯୟ କାର କରି ତଦ୍‌ଗତେ ରାତ୍ର ପୁହାଇବ ।। ଶ୍ରୀ ଯିମ୍ଯୁତ ବାହାନଙ୍କୁ ଯେ ଯାହା ବାଞ୍ଛା କରିବ ।। ବ୍ରାହ୍ମଣଙ୍କୁ ଦକ୍ଷିଣା ଦେବ ।। ନମସ୍କାର କରିବ ।। ଆରଦିନ ପ୍ରଭାତୁ ସ୍ନାନ କରି ମେଲାଣି ଦେଇ ଅର୍ଘ୍ୟ ଦେବ ।। ଗୃହକୁ ଆସି ହବିଷ ଅର୍ଣ୍ଣ ପାକ ସମ୍ପାଦ କରି ନୈବୀଦ୍ୟ ଦେଇ ପାରଣା କରିବ ।। ଏଥିରେ ମନ ଚଞ୍ଚଳ ନ କରି ବିକଳ୍ପ ନୋହିବ ।। ଏକ ଚିତ ହୋଇ ଏ ବ୍ରତ କରିବ ।। ସକଳ ସମ୍ପଦ ଲଭିବ ।।

ଇତି ଶ୍ରୀ ଆଦିତ୍ୟ ପୁରାଣେ ପରକୃତ ମତେ— ସୁତ ସନକ ସମ୍ବାଦେ ଶ୍ରୀ ଯିମ୍ଯୁତ ବାହାନ ପୁଜା ବ୍ରତ କଥା ସମ୍ପୁର୍ଣ୍ଣ ।। ୪୪୫ ।। ଭିମସ୍ୟାପି ରଣେ ଭଙ୍ଗୋ ମୁନିରପି ମତିଭ୍ରମଂ ।। ଯଦି ସୁଦ୍ଧଂ ମସୁଧଂ ବା ମମ ଦୋଷ ନ ବିଦ୍ୟତେ ।। ହେ ସୁଜନମାନେ ସୁଦ୍ଧ ଅସୁଧ ପୁରେଇ ପଢ଼ ବ ।। ଲେଖନକାରଙ୍କୁ ଦୋଷ ନ ଦେବ ।।

ଲେଖାରେ ଯାହା ଥିଲା ତାହା ଲେଖିଲି ।। ଶ୍ରୀ ଯିମୁତ ବାହାନ ରକ୍ଷା କରିବେ ।। ଅରକ୍ଷିତ ଶ୍ରୀ ଭ୍ରଗବତ ସାହୁଙ୍କ ।। ଶ୍ରୀ ସରସ୍ୱତୀ ଶରଣଂ ମମ ।। ଆଶ୍ୱିନ ମାସ ଶୁକ୍ଳ ପକ୍ଷ ଦ୍ୱାଦଶୀ ବୁଧବାର ଦଶଘଣ୍ଟା ସମୟେ ଏ ପୁସ୍ତକ ସମ୍ପୂର୍ଣ୍ଣ ।। ଇଂରାଜି ତା ୨୬ । ୯ । ୧୯୨୮ ମସିହା ।। ଝାଡ଼ ତରଙ୍ଗ ।। ❊

ଟୀକା :— ❊ ଉପରୋକ୍ତ ଶ୍ରୀ ଯିମୁତ ବାହାନ ବ୍ରତ କଥା ଲେଖନ ତାଳପତ୍ର ପୋଥି ପାନପୋଷ୍ ନିକଟସ୍ଥ ଝାଡ଼ ତରଙ୍ଗ ଗ୍ରାମର ନିବାସୀ ସ୍ୱର୍ଗତ କଟି ସାହୁ ଗୋତ୍ର ନାଗସ୍ୟ ଗୋତ୍ରଙ୍କ ଗୃହରେ ଥିଲା । ସ୍ୱର୍ଗତ ଭଗବତ ସାହୁ ତାଳପତ୍ର ପୋଥିରୁ "ଶ୍ରୀ ଯିମୁତ ବାହାନ ବ୍ରତ କଥା ଲେଖନ" ବାଲି କାଗଜ ଖାତାକୁ ଉଦ୍ଧାର କଲେ । ହମିରପୁର ସ୍ୱର୍ଗତ ମଧୁସୂଦନ ବେହେରା ଭଗବତ ସାହୁଙ୍କ ଠାରୁ ବାଲିକାଗଜର ଶ୍ରୀ ଯିମୁତ ବାହାନ ବ୍ରତ କଥା ଲେଖନ ଖାତା ଆଣି ନିଜ ଘରେ ରଖିଲେ । ମଧୁସୂଦନଙ୍କ ଭାଇ ଶ୍ରୀ ସାଧୁ ଚରଣ ବେହେରାଙ୍କ ଠାରୁ ଖାତାଟି ଆଣି ପରିଚୟ ଦିଆଯାଇଅଛି ।

## ଗୁପତ ବିଦ୍ୟା ତାଳପତ୍ର ଖେଳା (ଅବିକଳ ନକଲ)

ଗୁପତ ବିଦ୍ୟା ତାଳପତ୍ର ଖେଳା ହମିର ପୁର ଶ୍ରୀ ବୃନ୍ଦାବନ ବେହେରାଙ୍କ ଘରେ ପଢ଼ିବା ସୁଯୋଗ ଲାଭ କରିଅଛି । ଏହାର୍ ସୂଚନା ନିମ୍ନରେ ଦିଆ ଯାଇଅଛି ।

ଓଁ ଗଣେଶାୟ ନମଃ ।। ଭଲ ଭଲ ବାଣୁୟାରେ ପଗ୍ୱରଇଂ ତୋତେ ।। ସିହଂ ଶଜ ନକିରେ ଉତ୍ତର ବିଗ୍ୱର କହି ଦେବୁ ମୋତେ ।। ନ କରିବୁ କଳି ଭାଇରେ ନ କରିବୁ ଛଣ ।। ଗୁରୁ ଖଟିଥିଲେ ଭାଇରେ ନକିର ନାମ କିସ ।। କଳ କାନି ଜମୁକି ନଉର ଘର ଘ୍ରରି ।। ଏମାନଙ୍କର ନାମ ଭାଇରେ କହିଦେବୁ ଫେଡ଼ି କରି ।। ମାଛି କି ବୋଲି ଭାଇରେ ଗଜର ନାମ କିସ ।। ସିହଂ ସଜ ଦାନି ଭାଇରେ କାହୁଂ ହୋଇଲା ପରକାସ ।। ଦାରୁ ଗୁଳି ଭାଇରେ ରଞ୍ଜକ ନାମ କହି ।। କୁନ୍ଦା ବନ୍ଧ ଭାଇରେ କାହିଂ ଛୁଆ ଛୁପାଇ ।। ଆଡ଼ ବନ୍ଧ ବିଲୁଟି ଭାଇରେ କୁକଟିକା ପାଗ ।। କାଛଲେଣା ଭାଇରେ କହିଦେବୁ ଆଜ ।। ମାଟି କାହୁଂ ଭାଇରେ ଲଗାଇଲୁ ଆଜ ।। ଏମାନଙ୍କର ନାମ କିସ ଗୁରୁ କହିଛନ୍ତି କି ପୁଣି ।।

କାହିଂକି ଦେବାତା ଭଇରେ କି କରି କରି ପୂଜା ।। ଗୁରୁଙ୍କ ନାମ ଭଇରେ କହି କିରି ଜା ଜା ।।

+ + + +

ପ୍ରଶ୍ନୋତ୍ତର ମଧ୍ୟରେ ଅନେକ ଗୁପ୍ତ ବିଦ୍ୟା ବର୍ଣ୍ଣିତ ହୋଇଅଛି । ପ୍ରସଙ୍ଗ କ୍ରମେ କେତେକ ଶବ୍ଦ ଏବଂ ବାକ୍ୟାଂଶ ଉଦ୍ଧାର କରଯାଇପାରେ । ଯଥା :—ଜମଦାଢ, ଭଇରେବ ମୁତି, ଇଶ୍ୱରଙ୍କ ସିହନାଦ ଭଇରେ ଆଡ଼ବନ୍ଧ ହେଲ । ଚଂଅଂର ଦ୍ୟାଦଶ ଆଙ୍ଗୋଳି, ଏଠାରେ ଆହୁରି ଯଉଂଯୁଗେ, ଉଦେଗିରି ବୋଲି ଭଇ ଚବିତର ନାମ, ସେ ସହସ୍ର ଶୟ୍ୟୁଗେ ପଶୁରାମଙ୍କୁ ଦେଲେ, ଯୁଦ୍ଧରେ, ବାଂସ ସଟମୁନି ଯଜ୍ଞରୁ ଜାତ, ବୈସି ବିଦରେ ପୁରେଇ, ଅଇଲ ଲଣ୍ଡା, ବିକଟ କୁମାରି, ଲଣ୍ଡା ମହାବିରୁ, ନବ ଲକ୍ଷ କୁଆଂରୀ, ଗନ୍ଧପୁକ ଝାଡ଼ିବାକୁ ମନ୍ତ୍ର, ଗଳାରେ ଇମାଇ, ଗ୍ରିଧିନି. ମାହାବିରି, ଛତିଶ କୋଟି ୁସିଘାଂର, ନବକୋଟି କାତ୍ୟାନି, ଚୂଡ଼ଗଂଦେବଙ୍କ କୋଟି କୋଟି ଆଜ୍ଞା, ବାପା ନରସିଂହ ଦେବତାର, ଗୋ ଶାସ୍ତ୍ର ମନ୍ତ୍ର, ତଥି ଉପରେ, କଉଂଠାଏ, ସମ୍ବାଦ, ଛାମୁରେ ପାର୍ବତି କହନ୍ତି ଉଭରି ; ଧରଣି ବନ୍ଧା ମନ୍ତ୍ର, ନିର୍ଝରରେ ଝଗ୍ଡୁ, ଧୁଳାଇବା ମନ୍ତ୍ର, ଏଠାରୁ ଗୋଶାସ୍ତ୍ର ଲେଖନ, ରୁଗ, ଅଉଂ ହାଥ, ଉମି ଉମି ଥିଲୁ କାହିଂ ; ପାଟର ଖଣ୍ଡା ; ରଜା ଗୋବିନ୍ଦ ସିଂହ ଦେବତାଙ୍କର କୋଟିଏ ଆଜ୍ଞା, ଆଣୁକି ଗୋ ମା ବ୍ରହ୍ମକୁମାରି, ହୃଦୟ ଗୋଟି ଏଥି ନାରାୟଣ ଲକ୍ଷ୍ମି ଅଧିପତି ; ବେଲ ତଳେ ଗାଇ ବିଆଇଲ, ଲୁଣ ମନ୍ତ୍ର, ପରସରଙ୍କର ହାକ ଡାକ ନ ସୁଭିଲ, ଅଦ୍ଭୁସ୍କି ଛାଡ଼ି ଦୁସିକି ବାନ୍ଧ, ପତ୍ର ତୁଳିବ, ରଇ ଭରିଆ, ଓଁ ପାର୍ବତୀ ବୋଇଲେ ଯୁଗିଆ ମନ୍ଦ କୃତ୍ୟୁ କଲୁ, ଭର ସିମ୍ବାର ସିଂଘାର ଭଗୁଣି ପଦ ଇତ୍ୟାଦି ।

ଉକ୍ତ ତାଳପତ୍ର ପୋଥିର ପରି ଶେଷରେ :— ପିଲଙ୍କୁଂ ପିହୁଳା ଜର କରିଥିଲେ ।। ବେଙ୍ଗଂଟୁଣିଟିଏ ଆଣି ।। ପିଲଙ୍କ ବେକରେ ଡୁର ଖଣ୍ଡେ ବାନ୍ଧି ଉଳାଇ ଦେବ ।। ବେଙ୍ଗଂଟିକି ପିହୁଗମର ଛାଡ଼ଇ ଆଉ ନ ମାରଇ ।। ❊ ।। ଗୁପତ ବିଦ୍ୟା ଏ ପ୍ରକଟ ନ କରିବ ।। ❊ ।। ପୁସ୍ତକ ହରତେ ଯସ୍ତୁ କାଣୋ ଦୁଖି ଭବେଉନର ମୃତ୍ୟୁାସର୍ଗ ନ ଗଛତି ପିତରଂ ନରକଂ ବ୍ରଯେଉ ।।୦୦୦।।

# ଝିରପାଣି ପୁନର୍ବଶତି କଲୋନୀ

ସ୍ୱର୍ଗତ ଶ୍ୟାମଘନ ପଣ୍ଡା ଢ଼େଙ୍କାନାଳ ଜିଲ୍ଲାର କୁନ୍ଦନପୁର ଶାସନରୁ ଆସି ଗାଙ୍ଗପୁର ରଜ୍ୟର ନାଗର (ନାଗ୍ରା) ପ୍ରାଗଣାର ବରସୋଲିଆ ମୌଜାରେ ବାସକଲେ । ଅଧୁନା ବରସଲିଆ ବିହାର ପ୍ରଦେଶ ଅଧୀନରେ ଅଛି । ଏହାଙ୍କର ବଂଶଧରମାନେ ବରସଲିଆରେ ଅଛନ୍ତି । ଶ୍ୟାମଘନ ପଣ୍ଡାଙ୍କର ନାତି ଶ୍ରୀବତ୍ସ ପଣ୍ଡା ରଉର୍କେଲା ଇସ୍ପାତ୍ ସହର ନିକଟସ୍ଥ ଝିରପାଣି ପୁନର୍ବସତି କଲୋନୀରେ ବାସ କରୁଅଛନ୍ତି । ଲେଖକ ଶ୍ୟାମଘନ ପଣ୍ଡାଙ୍କ କୁନ୍ଦନଦେଇ ପୁରରୁ ଆଣିଥିବା ପ୍ରାଚୀନ ତାଳପତ୍ର ପୋଥି ଶ୍ରୀବତ୍ସ ପଣ୍ଡାଙ୍କଠାରୁ ଆଣି ଏହାର ପରିଚୟ ଦେଉଅଛି ।

## ନାମବିହୀନ ତାଳପତ୍ର ଖେଳା

ଉପରୋକ୍ତ ପ୍ରାଚୀନ ତାଳପତ୍ର ଖେଳାର ପ୍ରଥମ ଏବଂ ଶେଷ ଉଭୟ ପଟରୁ କେତେକ ପତ୍ର ନାହିଁ । ପ୍ରତି ପତ୍ରର ଡାହାଣ ଭଗରେ ଅକ୍ଷରରେ ଶୁଭ ଅଶୁଭର ବିବରଣୀ ଲେଖା ଯାଇଅଛି । ବାମ ଭଗରେ ଗୋଟିଏ ଗୋଟିଏ ଚିତ୍ର ଅଙ୍କିତ ହୋଇଅଛି । ନିମ୍ନରେ କେତେକ ପତ୍ର ଲେଖାର ଅବିକଳ ନକଲ ଦିଆଯାଇଅଛି ।

ଊନତ୍ରିଂଶ ପତ୍ର :

ଆରୋଗ୍ୟଂ ବନ୍ଧୁ ମିତ୍ରଞ୍ଚ
ଶୁଖ ପ୍ରାପ୍ତି ଫଳଂ ଲଭତେ ॥
ସର୍ବସିଦ୍ଧ ଶୁସିଦ୍ଧଞ୍ଚାଃ
ଧ୍ୱଯା ପତାକା ଶୁଦର ଶନାତୋଃ ॥

ପଞ୍ଚବିଂଶ ପତ୍ର :

ଧନ ଧାନ୍ୟ ମହାଶୁଖଂ
ଗର୍ଭ ଶୁଖଂ ମହେସ୍ତଥା ॥
ଦୀଦୀ ଲଭ କରେତାଞ୍ଚ
ମାହାଦେବ ପବୋ ବୃସନାତୋଃ

ଏହି ଭଳି ଅନ୍ୟ ଏକ ପ୍ରାଚୀନ ତାଳପତ୍ର ପୋଥି ଲଠିକଟା ନିକଟସ୍ଥ ବଲଣି ନିବାସୀ ଭୂୟାଁ କବି ଶ୍ରୀଯୁକ୍ତ ଅର୍ଜୁନ ଗଜଙ୍କ ଗୃହରେ ଦେଖିବାକୁ ମିଳେ ।

ପୋଥିର ପ୍ରଥମ ପତ୍ରରେ :

ପ୍ରବିତି ବିଷ୍ଣୁଂ ପୂଜାୟଂ ଫର୍ସୁକାର୍ଯ୍ୟୌ
ସୁଖ ଭୋଗ ପ୍ରାପତ ଜାତ୍ରା ମଗଂଳଂ
ଫଖଂ ଚିଲ ଦେଖଂନ୍ତେଣ ।।

ଏକବିଂଶ ପତ୍ର :

ସୁଖ ସଂସ୍ୱତି ଅରଥ ଲଭ ।।
ସୁଖ ଭୋଗ ପ୍ରାପତ ବହୁପୁତ୍ର ସଦା ସୁଖି
ଗୋ ମାତାକୁ ଦେଖନ୍ତେ ।।

ଉଭୟ ପୋଥିରେ ଶୁଦ୍ରସନ ଚକ୍ର, ଗହୁମୁଣ୍ଡ, କୁକୁଡ଼ା ମୃତ୍ୟୁ ସଭୟେ, ହସ୍ତି, ପଦ୍ମ, ଚକ୍ର, ବୁଲୁଆ, ମହାଲକ୍ଷ୍ମୀ, ଉଲ୍ଲୁକ, ସମୁଦ୍ର, ଘୋଡ଼ା- ମୁଣ୍ଡମାଳା, ଲିମ୍ବ, ବରାହ, ଫଖଂ, ଯମଦୂତ, ଗରୁଡ଼, ସର୍ପ, ଗଣ୍ଡ (ମୁଣ୍ଡ ବିହୀନ ଗଣ୍ଡି), ଗୋର, କୂର୍ମ, ସାଗୁଣା, ମାହାଦେବ, ହନୁମାନ, ଛତ୍ର, ମଇଷୀ, ଧଯା, କୁମ୍ଭୀର, କର୍କଟ, ମୃଗ, ବ୍ରାଘ, ପତାକା (ବିମାନର) ଗୋମାତା ସଖଂଚିଲ ଗମ ଲଇକ୍ଷଣ ଗଜହଂସ ମେଞ୍ଜାରୀ, ନାରଦ, ଇତ୍ୟାଦି ଅନେକ ଚିତ୍ର ଦୃଷ୍ଟି ଗୋଚର ହୁଏ ।

କୌଣସି ବ୍ୟକ୍ତି ନିଜର ହଜିଥିବା ଦ୍ରବ୍ୟ ସମ୍ପର୍କରେ ଭଲ ମନ୍ଦ ଜାଣିବା ପାଇଁ ଇଚ୍ଛା କଲେ ଏହି ଧରଣ ପୋଥିର ଆଶ୍ରୟରେ ଭଲ ମନ୍ଦ ଜାଣିପାରେ ।

ଉପରୋକ୍ତ ପୋଥିର ବ୍ୟବହାର :—

ପ୍ରଶ୍ନକର୍ତ୍ତା ଗୋଟିଏ ଅଥବା ତିନୋଟି ଦୁବ ଆଣି ଗୋମୟ ଦ୍ୱାରା ଲିପା ଯାଇଥିବା ଭୂମି ଉପରେ ରଖିବେ । ସେହି ଦୁବ ଉପରେ ନିଜର ଇଷ୍ଟଦେବତା, ଗ୍ରାମ ଦେବତା ଅଥବା ଧର୍ମ ଦେବତାଙ୍କୁ ସ୍ମରଣ କରି ପୋଥିଟିକୁ ରଖିବେ । ଏହାପରେ ଥର ଥର କରି ତିନିଥର ଉପରୋକ୍ତ ପଦ୍ଧତିରେ ପୋଥିକୁ

ଉଠାଇ ଦେଖିବେ । ପୋଥି ଖୋଲି ପତ୍ରରେ ଯେଉଁ ଚିତ୍ର ଦେଖିବେ ତହିଁର ବିବରଣୀରୁ ନିଜର ଭଲ ମନ୍ଦ ଜାଣି ପାରିବେ । ଅଦ୍ୟାବଧି ଶ୍ରୀ ଅର୍ଜୁନ ରଥଙ୍କ ଚିତ୍ର ପୋଥିଟି ବ୍ୟବହୃତ ହେଉଅଛି ।

## ଦୁର୍ଗାପୁର (ଉଦିତନଗର ଓ ବାସନ୍ତୀକଲୋନୀ)

ସ୍ୱର୍ଗତ ଗୋପୀନାଥ ପଣ୍ଡା ଯାଜପୁରରୁ ଆସି ଗାଙ୍ଗପୁର ରାଜ୍ୟର ରଘୁବଂଶୀରେ ବାସ କଲେ । ପରେ ଯଥାକ୍ରମେ ରଘୁବଗାରୁ ହାତିବାରି ଆମକୋ-ସିମକୋ ଶେଷରେ ତୁମ୍ବକେଲା ମୌଜାରେ ବାସକଲେ । ଏହାଙ୍କର ପୁତ୍ର ଲମ୍ବୋଦର ପଣ୍ଡା ନାଗରା ଜମିଦାର ବାଲିକ୍ସି ସିଂହ ମହାପାତ୍ରଙ୍କ ନୂତନ ବନ୍ଧ (ପୁଷ୍କରିଣୀ) ପ୍ରତିଷ୍ଠା କର୍ମର ମୁଖ୍ୟ ପୁରୋହିତ ହୋଇ କର୍ମ ସମ୍ପାଦନ କଲେ । ଦାନ ସ୍ୱରୂପ ପିଶାଚୀ ଭୂଇଁ (ଅଧୁନା ଉଦିତ ନଗର ଓ ବାସନ୍ତୀ କଲୋନୀ ଅଞ୍ଚଳକୁ) ଜମିଦାର ମହାପାତ୍ରଙ୍କ ଠାରୁ ଲାଭ କଲେ । ପିଶାଚୀ ଭୂଇଁକୁ ନିଜ ଇଷ୍ଟ ଦେବୀଙ୍କ ନାମାନୁସାରେ ଦୁର୍ଗାପୁର ଶାସନ ନାମରେ ପରିଚିତ କରାଇ ଏଠାରେ ବାସ କଲେ । ଲମ୍ବୋଦର ପଣ୍ଡାଙ୍କ ପୁତ୍ରମାନଙ୍କ ମଧ୍ୟରେ ଗୋବିନ୍ଦ ପଣ୍ଡା ଜଣେ ଲେଖନକାର ଥିଲେ । ନାତି ନିଶାକର ପଣ୍ଡା ନାଗରା ତଥା ଗାଙ୍ଗପୁରର ଜଣେ ପ୍ରଖ୍ୟାତ ସଂସ୍କୃତ ପଣ୍ଡିତ ଥିଲେ । ସ୍ୱର୍ଗତ ନିଶାକର ପଣ୍ଡାଙ୍କ ବଡ଼ ପୁଅ ଶ୍ରୀ ହୃଷିକେଶ ପଣ୍ଡା ବର୍ତ୍ତମାନ ଝିରପାଣି କଲୋନୀରେ ବାସ କରୁଅଛନ୍ତି । ତାଙ୍କ ପାଖରେ ଥିବା ଗୁରିଖଣ୍ଡି ପୋଥିର ପରିଚୟ ନିମ୍ନରେ ଦିଆଯାଇଅଛି ।

## ସପ୍ତଶତୀ ଚଣ୍ଡୀ ତାଳପତ୍ର ପୋଥି

ଅସ୍ୟ ସ୍ତୋତ୍ରସ୍ୟ ବାଚନତ୍ରମୋସ୍ତୁପରମ ଗୁରୁ ଚରଣ କୃତ ଦୁର୍ଗା ଗ୍ରନ୍ଥସର ସଗ୍ରହେ ବାରିହାତତ୍ରେଚ । ଯାବନ୍ନ ପର୍ଯ୍ୟବେଧ୍ୟାୟ ସ୍ତ୍ୟବନ୍ନବିରମେ ପଠନ୍ । ଯଦି ପ୍ରମାଦଧ୍ୟାୟେ ବିରାମ ଭବତି ପ୍ରିୟେ । ପୁନରଧ୍ୟାୟମାରଭ୍ୟ ପଠେ ସର୍ବଂ ମୁହୁର୍ମୁହୁଃ । ଅନୁକ୍ରମା ସଠେଦ୍ ଦବିଶିରଃଙ୍କ ପାର୍ଦିକଂତ୍ୟଜେତ୍ । ନମାନସଂ ପଠେ ସ୍ତୋତ୍ରଂ ବାଚିକଂତୁ ପ୍ରଶସ୍ୟତେ । ନ ସ୍ୱୟଂ ଲିଖିତଂ ସ୍ତୋତ୍ର ନା ବ୍ରାହ୍ମଣ ଲିଖିତଂ ପଠେତ୍ କଂଠତଃ ପାଠାଭବେଚ୍ଚ ପୁସ୍ତକୋ ପରିବାଚ-ୟେତ୍ । ଇତି । ଯନ୍ତ୍ର (ତ୍ର) ଆଧାରେ ସ୍ଥାପୟିତ୍ୱା ତୁ ପୁସ୍ତକଂ ବାଚୟେତ୍ତତଃ ।

ହସ୍ତ ସଂସ୍ଥାପନା ଦେବ ଭବେଦର୍ଦ୍ଧଫଳଂ ଧ୍ରୁବ ମିତି । ତସ୍ୟ ବ୍ୟବସ୍ଥାପିତ ନ୍ତ୍ରେବ । ପୁସ୍ତକେ ବାଚନଂ ହସ୍ତେ ସହସ୍ରାସ୍ରାଦଧିକଂ ଯଦି ତତୋନ୍ୟନସ୍ୟତୁ ଭବେ ବାଚନଂ ପୁସ୍ତକଂ ବିନାସହସ୍ରାନ୍ନ୍ୟନ ମନ୍ତ୍ରସ୍ୟ ପାଠସରହପୁସ୍ତକଂ ବିତ୍ରେବ ବାଚନଂ । ତଦଭବେ ଆଧାରେ ପୁସ୍ତକ ସ୍ଥାପନେ ନୈବ ବାଚନଂ । ସହସ୍ରାଧି-କସ୍ୟ ତୁ ପାଠମହେବାଧାର ସ୍ଥାପିତ ପୁସ୍ତକୋପର୍ଯ୍ୟେବ ବାଚନ ମିତି ତଦ୍ବଚନାର୍ଥଃ । ଇତି-ସଂସ୍କୃତ ସ୍ତୋତ୍ରସ୍ୟ ସହସ୍ରାନ୍ନ୍ୟନତ୍ୱାତତଃ କୃତାଞ୍ଜଳି-ର୍ଭୂତ୍ୱାସ୍ତୁବୀତ ଚରିତୈରିମୈରିତିଟୋକୃତି କରହସ୍ୟେ ବିଧାନାତ୍ । ପାଠାଭବେ ମୁସ୍ତକସ୍ୟାଧାର ସ୍ଥାପନେ ନୈବ ବାଚନଂ କଣ୍ଠ ପାଠୀକୃତ୍ୟ ପୁସ୍ତକଂ ବନୈବତ କୃତାଞ୍ଜଳିତୟା ପଠନ ମୁତ୍ତମ ମିତି ଦ୍ରଷ୍ଟବ୍ୟ ମିତି ସ୍ପଷ୍ଟଂ ଶକ୍ତି ସଂଗ୍ରମ ତନ୍ତ୍ରେ । ତଦ୍ବଚନାଂତୁ ଦୁର୍ଗା ପ୍ରଦୀପେ ଦ୍ରଷ୍ଟବ୍ୟ ମିତି । ଲୁପ୍ତ ମୂଲାଃ ସପ୍ତସଫ୍ୟାଃ ସରଣୀରଚିତା ମୟା । ତୟାତୁଷ୍ୟାତୁ ସା ଦେବୀ ବାଲାଂ ବା ତ୍ରିପୁରେଶ୍ୱରୀ । ଅତ୍ର ସର୍ବତ୍ର ମୂଳ ବଚନାନ୍ୟସ୍ମ ଗୁଷ୍ଟ ଚରଣ କୃତ ଦୁର୍ଗାମଦେବଧୌ ଦ୍ରଷ୍ଟବ୍ୟ ନୀତି ଶିବଂ । ଇତି ପ୍ରୟୋଗ ବିଧିଃ ସମାପ୍ତଃ । ଶ୍ରୀ କାମ୍ୟ ପ୍ରୟୋଗେ—ଈଶ୍ୱର ଉବାଚ—ସମ୍ପୁଟଂ ଦ୍ୱିବିଧଂ ଜ୍ଞେୟ ମୁଦ୍ରିୟାସ୍ତକରଂ ପ୍ରିୟେ । ଶୃଣୁ-ତଦହମତ୍ରାଦୌଟଷ୍ଟୋଦସ୍ତଂ ବୟାର୍ମିତେ ।୧। ମନ୍ତ୍ରମୋଦୌ ପୁନଃ ଶ୍ଳୋକଂ ତେ ମନ୍ତ୍ର ପୁନଃ ପଠେତ୍ । ପୁନର୍ମନ୍ତ୍ର ପୁନଃ ଶ୍ଳୋକଂ କ୍ରମୋୟମୁଦୟେ ଶୁଭଃ ।୨। ଉଠ ଯୋ୍ରକର୍ଷ ଲଭୟସଂ ପୁଟାୟ ମୁଦାହୃତଃ । ଅତ୍ର ସର୍ବତ୍ର ଶ୍ଳୋକ ମିତି ମନ୍ତ୍ରୋପ ଲକ୍ଷଣଂ । ଅସ୍ତୁଂ ଚିକିତ୍ସାଶାସ୍ତ୍ରେଷୁ ଶଗବାଡ୍ୟାଂ କୃତଂ ଭବେତ୍ । ତତ୍ତେଽହଂ ପ୍ରବଦାମ୍ୟନ୍ତ ଏକା ପ୍ରକୃତି ମସଃ । ମନ୍ତ୍ରମଦୌ ପୁନଃ ଶ୍ଳୋକ ମଂତେ ମନ୍ତ୍ର (ମନ୍ତ୍ର) ବିପର୍ଯ୍ୟୟଂ । ପୁନର୍ମନ୍ତ୍ର ପୁନଃ ଶ୍ଳୋକଂ ପୁନଃ ର୍ମନ୍ତ୍ର ବିପର୍ଯ୍ୟୟଂ । ମାରଣୋ ଚାଟନେ ରନ୍ଧେ ସଂପୁଟୋୟ ମୁଦାହୃତଃ । ପ୍ରକାରେୟ ମନା — ତୁ୍ୟକୁର୍ବଓ୍ୟାମ୍ରା ପ୍ରକର୍ତ୍ତିତାଂ । ଘୋର ବାଦିଷୁ ପଚ୍ୟନ୍ତେ ଯାବଦା ଭୂତ ସଂପୁଟଂ ଇତି—

## ସପ୍ତଶତୀ ଚଣ୍ଡୀ ପ୍ରୟୋଗ ବିଧିଃ ପ୍ରାରମ୍ଭଃ

ପତ୍ର ସଂଖ୍ୟା ଏକ :—ଅଥ ପ୍ରୟୋଗ ବିଧିଃ । ଶ୍ରୀ ଗଣେଶାୟ ନମଃ । ଅଥ ପ୍ରୟୋଗାନ୍ତ ରଣିଂ କାତ୍ୟାୟନୀ ତନ୍ତ୍ରୋକ୍ତାନି । ପ୍ରତିଶ୍ଳୋକ ମାଦ୍ୟନ୍ତଯୋଃ

ପ୍ରଣବଂ ଜପେନ୍ମନ୍ତ ସିଦ୍ଧିଃ । ୧ । ଅଗ୍ରେ ସର୍ବତ୍ର ଶ୍ଳୋକ ପଦଂ ମନ୍ତ୍ରୋପ ଲକ୍ଷଣଂ ସପ୍ତଡାବମନୁଲୋମ ବ୍ୟାହୃତି ତ୍ରୟମାଦୌ ଅନ୍ତେ ତୁ ବିଲୋମଂ ତର୍ଦ୍ଦି ଯେବଂ ପ୍ରତିଶ୍ଳୋକଂ କୃଦ୍ୱାଶତା ବୃତ୍ତ ପାଠେତ୍ୱିତି ଶୀଘ୍ରଂ ସିଦ୍ଧିଃ ।୨। ପ୍ରତି ଶ୍ଳୋକ ମାଦୌ ଜାତବେଦସ ଇତ୍ୟୁ ଚଂ ପଠେତ୍ ସର୍ବକାର୍ଯ୍ୟ ସିଂଦ୍ଧିଃ ।୩। ଅପମୃତ୍ୟୁ ବାରଣାୟ ତ୍ର୍ୟମ୍ବକ ମନ୍ତ୍ରଂ ପଠେତ୍ । ଆଦାବଂତେ ଚ ଶତ ନିଂଯୁର୍ଥଃ । ପ୍ରତି ଶ୍ଳୋକଂ ତନ୍ମନ୍ତ୍ର ଜପଇତ୍ୟନନ୍ତ ।୪। ପ୍ରତିଶ୍ଳୋକଂ ଶୂଳେନ ପାହିନୋ ଦେବୀତି ପାଠାପମୃତ୍ୟୁ ନାଶଃ । ଅସ୍ୟ କେବଳ ସ୍ୟାପି ଶ୍ଳୋକସ୍ୟ ଲକ୍ଷମୟତଂ ସହସ୍ରଂ ଶତଂ ବା ଜପେ ଅପମୃତ୍ୟୁ ବାରଣଂ ।୫। ପ୍ରତିଶ୍ଳୋକଂ ଶରଣାଗତ ଦୀନାର୍ତ୍ତେତି ଶ୍ଳୋକଂ ପଠେ ସର୍ବକାର୍ଯ୍ୟ ସିଦ୍ଧିଃ ।୬। × × × ଏକୋନ ପଞ୍ଚାଶଦ୍ଦିନ ପର୍ଯ୍ୟନ୍ତଂ ପ୍ରତି ଶ୍ଳୋକଂ ଶ୍ରୀ ବୀଜ ସଂପୁଟି ତସ୍ୟ ପଞ୍ଚଦଶା ବୃତ୍ତୌ ଲକ୍ଷ୍ମୀ ପ୍ରାପ୍ତିଃ ।୨୭। ପ୍ରତି ଶ୍ଳୋକଂ ବାଗ୍‌ବୀଜ ସଂପୁଟି ତସ୍ୟ ଶତା ବୃତ୍ତ୍ୟା ବିଦ୍ୟା ପ୍ରାପ୍ତିଃ ।୨୮। ଅଥ ଶତ ଚଣ୍ଡୀ ବିଧିଃ ।

ଏହାପରେ କ୍ରମାନୁଯାୟୀ ଶତଚଣ୍ଡୀ ବିଧିଃ, ଦେବ୍ୟାଃ କବଚଂ; ଅଥ ସପ୍ତ ଶତୀ ଅର୍ଗଳା ଅର୍ଗଳା ସ୍ତୋତ୍ରଂ; କିଳକଂ; ନର୍ବାଣ ବିଧିଃ; ରାତ୍ରି ସୂକ୍ତଂ; ଅଥ ନ୍ୟାସାଃ; ଦେବୀ ସୂକ୍ତଂ; ପଞ୍ଜର ସୋତ୍ରଂ; ଶାପୋଦ୍ଧାରଃ; ନବାକ୍ଷରି ମନ୍ତ୍ରଂ, ମରଣ ବାରଣ ମନ୍ତ୍ରଂ ପ୍ରଥମ ଅଧ୍ୟାୟରୁ ତ୍ରୟୋଦଶ ଅଧ୍ୟାୟ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଅଛି । ଯଥା :—

## ସ୍ତବ ବର୍ଣ୍ଣନା

ଓଁ ଧ୍ୟାୟେ ସୁବର୍ଣ୍ଣ ବର୍ଣ୍ଣାଭ୍ୟାଂ ତ୍ରିନେତ୍ରାଂ ସୁହାସିନୀ ॥
ସର୍ବ ଲକ୍ଷଣ ସମ୍ପର୍ଣ୍ଣା ମର୍ଦ୍ଧେନ୍ଦୁ କୃତ ଶେଖରଂ ॥
ଚତୁର୍ଭୁଜାଂ ଶଙ୍ଖ ଚକ୍ରଂ ଧରଂ ବାଳଂ ସୁରୂପଣୀ ॥
ଉଦ୍ୟତ୍ରିଶୂଳ ନିର୍ଭିନ୍ନ ମହିଷାଂ ସିଂହବାହିନୀଂ ॥
ମୁକ୍ତାଦାମଲ ସଚ୍ଛଣ୍ଡାଂ ମୁନିଭିଃ ସ୍ତୁତି ପାଠକୈଃ ॥
ସିଦ୍ଧୈ ର୍ଦ୍ଦେବଗଣୈର୍ଜୁଷ୍ଟାଂ କୁମାରୀଭିଷ୍ଟ ସେବିତାଂ ॥
ସର୍ବକାମ ପ୍ରଦାଂ ଦୁର୍ଗାଂ ବରଦାଂ ଭକ୍ତ ବତ୍ସଳାଂ ॥

ଓଁ ନମଃ ଷଣ୍ଡିକାୟୈ । ମାର୍କଣ୍ଡେୟ ଉବାଚ ସାବର୍ଣ୍ଣିଃ ସୂର୍ଯ୍ୟ ତନୟୈ ଯୋ ମନୁଃ କଥ୍ୟତେଽଷ୍ଟମଃ । ନିଶାମୟତଦୁତ୍ପତ୍ତିଂ । ବିସ୍ତରାଦ୍‌ଗଦତୋ ମମ ।।୨।। ମହାମାୟାନୁ ଭବେନ ଯଥା ଲନବନ୍ତରାଧିପଃ ସର୍ବଭୂବ ମହାଭାଗଃ ସାବର୍ଣ୍ଣି ସ୍ତନୟୋରବେଃ ।। × × × ଏବଂ ବଭୂବାନ୍ତର୍ହିତା ସଦ୍ୟୋ ଭକ୍ତ୍ୟା ତଭ୍ୟା ମଭିଷ୍ଟୁତା । ଏବଂ ଦେବ୍ୟା ବରଂ ଲବ୍ଧ୍ୱା ସୁରଥଃ କ୍ଷତ୍ରିୟ ର୍ଷଭଃ ।୨୮। ସୂର୍ଯ୍ୟାଜନ୍ମ ସମାସାଦ୍ୟ ସାବର୍ଣ୍ଣିର୍ଭବିତା ମନୁଃ ।୨୯। ସାବର୍ଣ୍ଣିର୍ଭବିତା ମନୁରିତି । ଇତି ଶ୍ରୀ ମାର୍କଣ୍ଡେୟ ପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀ ମାହାତ୍ମ୍ୟେ ସୁରଥ ବୈଶ୍ୟୟୋର୍ବର ପ୍ରଦାନଂ ନାମ ତ୍ରୟୋଦଶୋଽଧ୍ୟାୟଃ ।। × ×× ଇତି ବୈକୃତିକଂ ରହସ୍ୟଂ ସମାପ୍ତଂ ।। ※

## ମୂର୍ତ୍ତି ରହସ୍ୟଂ

ଋଷି ରୁବାଚ ।। ନନ୍ଦାଂ ଭଗବତୀ ନାମଯା । ଭବିଷ୍ୟତି ନନ୍ଦ ଯା ।
ସ୍ତୁତାସଂ ପୂଜିତା ଭକ୍ତ୍ୟା ବଶୀ କୁର୍ଯ୍ୟା ଜଗତ୍ରୟଂ ।।୧।।
କନକୋତ୍ତମ କାନ୍ତିଃ ସାସୁକାନ୍ତିଃ କନକମ୍ବର ।
ଦେବୀ କନକ ବର୍ଣ୍ଣାଭ୍ର କନକୋତ୍ତମ୍ ଭୂଷଣା ।।୨।।
କମଳାଙ୍କୁଶ ପାଶାବ୍ଜୈରଲଂକୃତ ଚିତୁର୍ଭୁଜା ।
ଇନ୍ଦିର କମଳା ଲକ୍ଷ୍ମୀଃ ସା ଶ୍ରୀ ରୁକ୍ମାମ୍ବୁଜାସନା ।।୩।।

\+ \+ \+

ଜଗନ୍ମାତ ଷଣ୍ଡିକାୟାଃ କୀର୍ତ୍ତିତାଃ କାମଧେନବଃ ।
ଇଦଂ ରହସ୍ୟ ପରମଂ ନବାଚ୍ୟଂ କସ୍ୟଚିତ୍ତ୍ୱୟା ।।୧୨

ବ୍ୟାଖ୍ୟାନଂ ଦିବ୍ୟମୂର୍ତ୍ତୀ ନାମଧୀଷ୍ୱା ବହିତଃ ସ୍ୱୟଂ
ଏତସ୍ୟା ସ୍ତୁଂ ପ୍ରସାଦେନ ସର୍ବମାନ୍ୟୋ ଭବିଷ୍ୟସି ।।୨୩।।

ସର୍ବ ରୂପୀମୟୀ ଦେବୀ ସର୍ବଂ ଦେବୀମୟଂ ଜଗତ୍
ଅତୋଽହଂ ବିଶ୍ୱରୂପାଂ ତାଂନମାମି ପରମେଶ୍ୱରୀଂ ।।୨୪।।

ଇତି ମୂର୍ତ୍ତି ରହସ୍ୟଂ ସମାପ୍ତଂ । ଶ୍ରୀ ଜଗଦମ୍ବାର୍ପଣମସ୍ତୁ ।।※।।

ସମାପ୍ତୋଽୟଂ ଗ୍ରନ୍ଥ । ଯଦାବୟୋ ସଂପୂର୍ଣ୍ଣ ଚତୁର୍ବିଂଶତି ବର୍ଷ ସମାପ୍ତଃ ତଦା କାଶ୍ୟପ ଗୋତ୍ରୋଦ୍ଭବଃ ପଣ୍ଡା ନାମ ସଂଜ୍ଞକଃ ବିଦ୍ୟାର୍ଥୀ ଗୋବିନ୍ଦଃ ଇଦଂ ପୁସ୍ତକଂ ଲିଖିତଂ । ଶ୍ରୀ ଚଣ୍ଡିକା ରକ୍ଷା କରିବେଽଧମ ଗୋବିନ୍ଦ ପଣ୍ଡାକୁ । ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ବୀରାଧି-ବୀରବର ପ୍ରତାପ ଶ୍ରୀ ମୁକୁନ୍ଦ ଦେବ ମହାରାଜାଙ୍କର ବିଜୟେ ଶୁଭରାଜ୍ୟେ ସମସ୍ତ ଅ ୧୮ ଙ୍କେ ସମ୍ବତ ୧୬ ସ ୫୩ ସାଲେ କାର୍ତ୍ତିକ ୨୩ ଦିନେ ଶୁକ୍ଳ ପକ୍ଷ ଭୃଗୁ ବାସରେ ପ୍ରତିପଦ ତିଥୌ ତପନାସ୍ତ ସମୟେ—ଶ୍ରୀ ରାଙ୍ଗପୁର ରାଜାଧିରାଜ୍ୟେଶ୍ୱର ରଘୁନାଥ ଶେଖର ଦେବଙ୍କ ରାଜୁତ୍ୱରେ ନାଗର ପ୍ରଗଣା ବାଲକ ଯମିଦାର ହରିହର ସିଂହ ଚନ୍ଦନ ସିଂହ ମନିଜରଙ୍କର ପ୍ରତାପରେ । ଦୁର୍ଗାପୁର ଶାସନରେ ଚୂତ ବୃକ୍ଷ ମୂଳେ ଏ ଚଣ୍ଡୀ ପୁସ୍ତକ ସମାପ୍ତ ହେଲା— ନିବାସି ଦୁର୍ଗାପୁର ଶାସନ ।। ଗୋବିନ୍ଦ ପଣ୍ଡା ପ୍ରୋହିତଙ୍କର ଲେଖକ ଏ ।।

## ଶ୍ରୀମଦ୍ ଭଗବଦ୍ଗୀତା ଓ ବିଷ୍ଣୁ ସହସ୍ର ନାମ
## ତାଳପତ୍ର ପୋଥି

ପ୍ରଥମ :— ଶ୍ରୀ ଗଣେଶାୟ ନମଃ ।। ଅଥ ଶ୍ରୀମଦ୍ ଭଗବତ ଗୀତା ପ୍ରାରମ୍ଭ ।। ଋଷି ଉବାଚ ।। ଗୀତାୟ ଶ୍ଚୈବ ମାହାତ୍ମ୍ୟଂ ଯଥା ବଦ୍ ତଞ୍ଚେମବଦ । ପୁରାଣ ମୁନିନା ପ୍ରୋକ୍ତଂ ବ୍ୟାସେନ ମୁନି ନୋଦିତଂ ସୂତ ଉବାଚ । ପୃଷ୍ଟଂ ଭବଦ୍ଭି ଋଷିଭିଃ ସର୍ବ୍ବି ଗୋପ୍ୟ ପୁରାତନଂ । ଶକ୍ୟତେ କେନ ନ୍ଦୈ ବକ୍ତୁଂ ଗୀତା ମହାତ୍ମ୍ୟ ମୁତ୍ତମଂ ।୨। କୃଷ୍ଣୋ ଜାନାତିନ୍ଦୈସମ୍ୟଦିକ୍‌ଅହ୍ନ୍ତି ସୁତଃ ଫଳଂ । ବ୍ୟାସୋ ବା ବ୍ୟାସସୁତୋ ବା ଯାଜ୍ଞବଲ୍କ୍ୟା ଥ ମୈଥିଳଃ । ୩ । ସର୍ବୋପ ନିଷଦୋ ଗାବୋ ଦୋରଧା ଗୋପାଳ ନନ୍ଦନଃ । ପାର୍ଥ ବତ୍ସଃ ସୁଧୀର୍ଭୋକ୍ତା ଦୁଗ୍ଧଂ ଗୀତା ମୃତଂ ମହତ୍ । ୫ । ସାରଥ୍ୟା ମର୍ଜ୍ଜୁନସ୍ୟାଦୋକୁର୍ବନ ଗୀତା ମୃତଂଦଦୌ ଲୋକ ତ୍ରୟୋ ପକାରୟ ତସ୍ମୈ କୃଷ୍ଣାତ୍ମନେ ନମଃ । ୬ । × × × × ଶ୍ରୀ ଗୀତାର୍ଥ ପଠନଂ ନାସ୍ତି ନାଧମସ୍ତପରେ ଜନଃ । ଗୀତା ଗୀତଂ ନ ଯଜଜ୍ଞାନଂ ତଦ୍‌ବିତ୍ୟା ସୁର ସଂମତଂ । ୧୮ । ଚିନ୍ମୋଘଂ ଧର୍ମ୍ମ ରହିତଂ ବେଦ ବେଦାନ୍ତ ଗର୍ହିତଂ । ତସ୍ମାଦ୍ଧର୍ମମୟୀ ଗୀତା ସର୍ବଜ୍ଞାନ ପ୍ରୟୋଜିକା । ୧୯ ।

ଦ୍ୱିତୀୟ :— ଶ୍ରୀ ଗଣେଶାୟ ନମଃ । ଅଥ ଗୀତାର୍ଥ ସଂଗ୍ରହ ପ୍ରାରଭ୍ୟତେ । ଶ୍ରୀମତ୍‌କୃଷ୍ଣାୟ ନମଃ ॥ ବିଗାହେ ଯାମୁନଂ ତୀର୍ଥଂ ସାଧୁ ବୃନ୍ଦାବନ ସ୍ଥିତଂ ॥ ନିରସ୍ତଜିହ୍ମଗଭର୍ଶ ଯତ୍ର କୃଷ୍ଣଃ କୃତାଦରଃ ॥ ୧ ॥ ସ୍ୱଧର୍ମ ଜ୍ଞାନ ବୈରାଗ୍ୟ ସାଧ୍ୟ ଭକ୍ତୈକ ଗୋଚରଃ ॥ ନାରାୟଣଃ ପରଂବ୍ରହ୍ମ ଗୀତା ଶାସ୍ତ୍ରେ ସମୀରିତଃ ॥ × × ଇତ୍ୟାଦି ଅଷ୍ଟାଦଶ ଅଧ୍ୟାୟ ବର୍ଣ୍ଣିତ ହୋଇଅଛି ।

ତୃତୀୟ : ବିଷ୍ଣୁ ସହସ୍ର ନାମ

ଶ୍ରୀ ଗଣେଶାୟ ନମଃ ॥ ଅଥ ବିଷ୍ଣୁ ସହସ୍ର ନାମ ପ୍ରାରମ୍ଭ ॥ ଯସ୍ୟ ସ୍ମରଣ ମାତ୍ରେଣ ଜନ୍ମ ସଂସାର ବନ୍ଧନାତ୍ ॥ ବିମୁଚ୍ୟତେ ନମସ୍ତସ୍ମୈ ବିଷ୍ଣବେ ପ୍ରଭ ବିଷ୍ଣ ବିଷ୍ଣବେ ॥ ଓ ॥ ନମଃ ସମସ୍ତ ଭୂତାନାମାଦି ଭୂତାୟ ଭୂ ଭୃତେ । ଅନେକ ରୂପ ରୂପାୟ ବିଷ୍ଣବେ ପ୍ରଭ ବିଷ୍ଣବେ । ଓ । ବୈଶମ୍ପାୟନ ଉବାଚ ॥ ଶ୍ରୁତ୍ୱା ଧର୍ମାନ ଶେଷେଣ ପାବନାନି ଚ ସର୍ବଶଃ ॥ ଯୁଧିଷ୍ଠିରଃ ଶାନ୍ତ ନବଂ ପୁନରେ ବାଭ୍ୟ ଭଷତ ॥ ଇ ॥ କିମେକଂ ଦୈବତଂ ଲୋକେ କିମ୍ବା ପେକ୍ୟଂ ପରାୟଣଂ ॥ ସ୍ତୁବନ୍ତଃ କଂ କର୍ମର୍ଚ୍ଚନ୍ତଃ ପ୍ରାପ୍ନୁୟୁ ମାନବାଃ ଶୁଭଂ ॥ କୋ ଧର୍ମଃ ସର୍ବ ଧର୍ମାଣାଂ ଭବତଃ ପରମୋ ମତଃ କିଂ ଜପନ୍ମୁଚ୍ୟ ତେଜ ତୁ ର୍ଜନ୍ମ ସଂସାର ବନ୍ଧନାତ୍ । ଖ । ଭିଷ୍ମ ଉବାଚ ॥ ଜଗତ୍ପ୍ରଭୁଂ ଦେବ ଦେବ ମନନ୍ତଂ ପୁରୁଷୋତ୍ତମଂ । ସ୍ତବନ୍ନାମ ସହସ୍ରେଣ ପୁରୁଷଃ ସତତୋତ୍ଥିତଃ ॥ × × × ନିଯଂ ତୁଳସୀ ବନ ସସ୍ଥିତଃ । ୧୧ । ନରେମୁକ୍ତି ମବାପ୍ନୋତି ଚକ୍ରମାଣେ ବଗ୍ରେଯଥା । ବ୍ରହ୍ମଦଯାଦିକଂ ପାପଂ ସର୍ବଂଯଦେ୍ୟା ବିନଶ୍ୟତି । । ୧୪ । ଇତି ଶ୍ରୀ ମନ୍ମହାଭାରତେ ଶତ ସହସ୍ର ସଂହିତାୟାଂ ବୈୟାଶିକ୍ୟା ମାନୁଶାସନି ୧ ଓ ଲ କେ ପର୍ବଣି ଦାନ ଧର୍ମେ ଭୀଷ୍ମ ଯୁଧିଷ୍ଠିର ସମ୍ବାଦେ ଶ୍ରୀ ବିଷ୍ଣୋର୍ଦ୍ଦିବ୍ୟ ସହସ୍ର ନାମ ସ୍ତୋତ୍ରଂ ସମ୍ପୂର୍ଣ୍ଣଂ ॥ ॥ ଶ୍ରୀ ॥ ❋ ॥ ଶ୍ରୀ ॥ ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳବର୍ଗେଶ୍ୱର ବୀରଧୀ-ବୀରବର ପ୍ରତାପ ଶ୍ରୀ ମୁକୁନ୍ଦଦେବ ମହାରାଜସ୍ୟ ପଞ୍ଚଦଶାଙ୍କେ ଅଷ୍ଟୋତ୍ତର ତ୍ରୟୋବଂଶାବ୍ଦେ ବୈଶାଖେ ମାସି କୃଷ୍ଣପକ୍ଷେ ଅଦ୍ୟ ପଞ୍ଚମ୍ୟାୟାଂ ତିଥୌ ଚନ୍ଦ୍ର ବାସରେ ଅୟଂ ଗ୍ରନ୍ଥଂ ସମାପ୍ତଂ ॥ ॥ ବାମଣ୍ଡା ରାଜ୍ୟା ଓର୍ଗଡ଼ ନଦୀକୂଳ ପ୍ରଗଣା ତଭୂତ ଜଡ଼ାଗୋଳା ମହାଶାସନ ନିବାସୀ ପରାଶର ଗୋତ୍ରୋଦ୍ଭବ ଦ୍ୱିବେଦୀ ସଞ୍ଜକ ମକଦମୋପାଧେୟ ଶ୍ରୀମ ଶ୍ରୀ ରତ୍ନାକର

ମିଦଂ ପୁସ୍ତକଂ ।। ଶ୍ରୀ ।। ଯଂଶୈ ବାସମୁପାସତେ ଶିବ ଇତି ବ୍ରହ୍ମେତି ବେଦାନ୍ତିନୈ ବୌଦ୍ଧା ବୁଦ୍ଧ ଇତି ପ୍ରମାଣ ପଟବଃ କର୍ତ୍ତେତି ନୈୟାୟିକାଃ ।। ଅହିନିୟ୍ତ୍ଥ ଜୈନ ଶାସନରତା କର୍ମେତି ମୀମାଂସକାଃ ସୋୟଂ ବୋବିଧାତୁ ବାଞ୍ଛିତ ଫଳଂ ତ୍ରୈଲୋକ୍ୟ ନାଥୋ ହରିଃ ।। ଶ୍ରୀ ମନ୍ନାରାୟଣାୟ ନମଃ ।। ଶ୍ରୀ ।। ଓ ୧ ଭଗ୍ନ ପୃଷ୍ଠ କଟି ଗ୍ରୀବ ତୁଲ୍ୟ ଦୃଷ୍ଟି ରଧୋ ମୁଖଂ ।। ଦୁଃଖେନ ଲିଖିତଂ ଗ୍ରନ୍ଥ ପୁତ୍ରବତ୍ପରିପାଳୟେତ୍ ।। ଜଳାନ୍ରକ୍ଷ ସ୍ଥଳାନ୍ରକ୍ଷ ରକ୍ଷଣଂ ଶ୍ଳେଷ ବନ୍ଧନାତ୍ ।। ଆଖୁଭ୍ୟପେର ହସ୍ତେଭ୍ୟଂ ଏବଂ ବଦତି ପୁସ୍ତକଂ ।। ଶ୍ରୀ ।। ❊ ।। ଶ୍ରୀ ।।

## ହଂସଦୂତାଖ୍ୟ ଖଣ୍ଡକାବ୍ୟ (ତାଳପତ୍ର ଲେଖା)

ଅଥ ହଂସ ଦୂତାରମ୍ଭଃ ।। ଶ୍ରୀ ଗଣେଶାୟ ନମଃ ।। ଦୁକୂଳଂ' ବିଭଣୋ' ଦଳି ହେରିତାଳ ଦ୍ୟୁତି ହରଂ' ଜବା ପୁଷ୍ପ ଶ୍ରେଣୀ ରଚି ରଚିର ପାଦାମ୍ବୁଜ ତଳ'ଃ ।। ତମାଳ ଶ୍ୟାମା ଗୌ' ଦରହସିତ ଲିଳାଞ୍ଚିତ ମୁଖ'ଃ ପରାନନ୍ଦା ଭୋଗଃ 'ସ୍ଫୁରତୁ' ହୃଦି' 'ମେ' କୋପି' ପୁରୁଷଃ' ।।୧।। ଯଦା' ଯାତୋ' ଗୋପୀ ହୃଦୟ ମଦନୋ 'ନନ୍ଦ ସଦନା' ନୁ କୁ ନ୍ଦୋ' ଗାନ୍ଧିନ୍ୟାସ୍ତନ ଯ୍' ମନୁବିନ୍ଦ 'ମଧୁପୁରଂ' ତଦା ୧ ମାଙ୍କ୍ଷୀ' ଚିନ୍ତ ସରିତି' ଘନପୂର୍ଣ୍ଣା ପରିଚୟୈ' ରଗାଧାୟଂ' ବାଧାମୟ ପୟସି' ରାଧା' ବିରହିଣୀ ।।୨।। କଦାଚି' ଖେଦାଗ୍ନି' ବିଜାଟର୍ଯିତୁ' ୧ମେଓର୍ଗତ' ୧ମସୌ' ସହା'/ଲୀଭିର୍ ଲେଭେଚରଳିତ ମନା' ଯାମୁନ ତଟୀଂ' ।। ଚିରା' ଦସ୍ୟାଶ୍ୱିତ' ପରେଚିତ କୁଟୀରଂ ବକଳନା' ଦବସ୍ଥାଂ' ତସ୍ତାର' ସ୍ଫୁଟଂ୧ମଧ' ସୁସୁପ୍ତେଃ' ପ୍ରିୟସଖୀ ।।୩।। ତଦା ନିଷ୍କାନ୍ଦାର୍ଗୀ କଳିତନବଲନୀ ପଲ୍ଲବକୁଳୈ ପରୀଶାହାରହସ୍ତା ମକୁଶଳ ଶତା ଶଙ୍କିତ ହୃଦୟେଃ ।। ଦୁଗମ୍ଭୁରୀକୃତ ମିହିର ପୁତ୍ରୀ ଲୀହରିଭି' ର୍ବିଲୁନା' ଧିଳିନା' ମୁପରି' ପରିବଦ୍ରେ' (ପରିନଗ୍ରେ') ପରିଚ୍ଛନ୍ନୈଃ' ।।୪।। ତତ' ସ୍ରାଂନ୍ୟଦ୍ରାଜଂ'– ମୁରହ' ଲଳିତାୟା କମଳିନୀ ପଲାଶୈଃ କାଳିନ୍ଦୀ ସଲିଳ ଶିଶିରୈ' ର୍ବୀଜିତ' ତନୁଂ' ପରବୃତ୍ତ ଶ୍ୱାସାଙ୍କୁର କଳିତ କଣ୍ଠୀ' କଳୟତାଂ ସଶୀସ-ନୋହାନାଂ' ପ୍ରମଦ ଭରଶାଳୀ' ଧନି'୧ରଭୂତ୍ ।।୫।। ନିଧାୟାଙ୍କେ ପଙ୍କେ ପଙ୍କେଂରହଦଳବିଟଙ୍କଂସ୍ୟ' ଲଙ୍ଘିତା ତତୋ' ରାଧାଂ' ନୀରଦହରଣଶରଣୌ' ନ୍ୟସ୍ୟଂ ଚରଣୌ ।। ମିଳଓଂ' କାଳିନ୍ଦୀ ପୁଳିନ ଭବି'ଖେଲଞ୍ଚିତ ଗତିଂ' ଦଦର୍ଶ୍ୱା' ଗ୍ରେକଂଚି' ନ୍ନବିରତଂ' ଶ୍ୱେତଂଗରତଂ' ।।୬।। ତଦାଲୋକ

ସ୍ରୋ କୋଛସିତ ହୃଦୟ’ ସାଦର’ ମସୌ’ ପ୍ରଣାମଂ’’ ଶପନ୍ତି’ ଲଘୁ ଲଘୁ’ ସମା’ ସାଦ୍ୟସବିଧୂଂ ।। ଧୃତୋହ୍ଣୟା’ ସଦ୍ୟୋ’ ହରିସଦସି’ ସନ୍ଦେଶ ହରତୋ ବରଂ ଦୂତ୍ରଂ ମେନେ ‘ତ’ ର୍ମତି ଲଳିତଂ ହଓ ଲଳିତା’ ।। ୭ ।। ଅମର୍ଷା’ ପ୍ରେମେର୍ଷାଂ ସପଦି’ ଦଧତ୍ୱା’ କଂସ ମଥନେ’ ପ୍ରବୃତ୍ତା’ ସହାୟ’ ସ୍ୱ’ଽମଭିଳସିତଂ’’ ଶଂସିତୁ’ ମଧୌ’ ।। ନ ତସ୍ୟାଃ’ ଦୋଷୋ’ଽୟଂ ଯଦି ଚ’ ବିହଗଂ ପାର୍ଥିତବତୀ ‘ନ’ କସ୍ମିନ୍’ ବିଶ୍ରମ୍ଭଂ ଦିଶତି’ ହରିଭକ୍ତି ପ୍ରଣୟିତା’ ।। ୮ ।। × × ଶ୍ଳୋକଃ । ରସାନାମାଧାରୈ ରପରିଚିତ ଦୋଷଃ ସହୃଦୟେ ର୍ମୃଗଗତି କ୍ରୀଡ଼ାନିବିଡ଼ ଘଟନା ରୂପ ସହିତଃ ।। ପ୍ରବନ୍ଧୋଽୟଂ ବନ୍ଧୋରଖିଳ ଜଗତାଂ ତସ୍ୟ ସହସା’ ପ୍ରଭୋରନ୍ତଃ ସାନ୍ଦ୍ରାଂ ପ୍ରମଦଲହରୀଂ ପଲ୍ଲବୟତୁ ।। ୪୦ ।। ଅନ୍ୱୟଃ । ରସାନଂ ଆଧାରୈଃ ସହୃଦୟେଃ ଅପରିଚିତ ଦୋଷଃ ମୁଗଗତି କ୍ରୀଡ଼ା ନିବିଡ଼ ଘଟନା ରୂପ ସହିତଃ ।। ଅୟଂ ଅଖିଳ ଜଗତାଂ ବନ୍ଧୋଂ ପ୍ରବନ୍ଧଃ ତସ୍ୟ ପ୍ରଭୋ ଅନ୍ତଃ ସହସା ସାନ୍ଦ୍ରାଂ ପ୍ରମଦ ଲହରୀଂ ପଲ୍ଲବୟତୁ ।। ବ୍ୟାଖ୍ୟା ।। ଗ୍ରନ୍ଥସ୍ୟ ପ୍ରୟୋଜନଂ କୀର୍ତ୍ତୟ ନ୍ନୁପସଂହରତି ରସାନାମିତ୍ୟାଦି ରସାନାଂ ଶୃଙ୍ଗାରଦୀ ନାମା ଧାରୈ ରଣ୍ଡପ୍ରଭୂତୈଃ ସହୃଦୟୈ ସାମାର୍ଜିକୈଃ ଅପରିଚିତ ଦୋଷୋଽନେବ ଧାରିତ ଦୂଷଣଃ ମୁଗଗତେଃ ଶ୍ରୀକୃଷ୍ଣସ୍ୟ କ୍ରୀଡ଼ାନାଂ ବିଳାସାନାଂ ଯା ନିବିଡ଼ ଘଟନା ନିରନ୍ତର ରଚନା ତୟା ଯତ୍ ରୂପଂ ସୌନ୍ଦର୍ଯ୍ୟଂ ତେନ ସହିତଃ ଯୁକ୍ତଃ ।। ଯଦ୍ଵା ମୁଗଗତି କ୍ରୀଡ଼ା ନିବିଡ଼ ରଚନାଭିରପଲକ୍ଷିତାନି ଯାନି ରୂପାଣି ଶ୍ଳୋକାସୈ ସହିତଃ ରୂପଂ ସ୍ୱଭବେ ସୌନ୍ଦର୍ଯ୍ୟେ ନୃଲେକ ପଶୁଶବ୍ଦୟୋଃ ।। ଗ୍ରନ୍ଥାବୃତ୍ତୌ-ନାଟକାଦାବାକାର ଶ୍ଳୋକ ୟୋର ପୀଡି-ମେଦିନୀ ।। ଅୟଂ ଅଖିଳ ତ୍ରିଭୁବାନାନାଂ ଜଗତାଂ ବନ୍ଧୋଃ ଶ୍ରୀକୃଷ୍ଣ ସ୍ତସ୍ୟ ପ୍ରଭୋରନ୍ତଃ-ଅନ୍ତଃ କରଣେ ସହସ୍ରା ପଠିତ ଏବ ସାନ୍ଦ୍ରାଂ ପ୍ରଗାଢ଼ାଂ ପ୍ରମଦ ଲହରୀଂ ପ୍ରୀତି ପରମ୍ପରାଂ ପଲ୍ଲବୟତୁ ବର୍ଦ୍ଧୟତୁ ।। ୪୦ ।। ଇତି ଶ୍ରୀ ମଦ୍ରୂପଦ ଗୋସ୍ୱାମି କୃତ ହଂସ ଦୂତାଖ୍ୟ ଖଣ୍ଡକାବ୍ୟ ଟୀକା ସମାପ୍ତ । ।। ଶ୍ରୀମଦ୍ ଗୋବିନ୍ଦେନ ଶର୍ମ୍ମଣା ଲିଖିତ ମିଦଂ ପୁସ୍ତକଂ ।। ସମ୍ବତ୍ ୧୯୬୯ ସାଲ ।। ଓ ।।

## ଜ୍ୟୋତିଷ ଶାସ୍ତ୍ର (ତାଳପତ୍ର ପୋଥି)

ପ୍ରଥମ ପତ୍ର :—ଶ୍ରୀ ଗଣେଶାୟ ନମଃ ।। ତ୍ରିଲୋକୀ ସର୍ଜନା ରକ୍ଷା ସଂହାର କାତ କୀର୍ତ୍ତୟେ ।। ଅଉଷ୍ଟମର୍ତ୍ତୟେ ତସୌ ଦକ୍ଷିଣା ମୂର୍ତ୍ତୟେ ନମଃ ।।

ଦେବୀଂ ଭକ୍ତାମିକର ପଙ୍କଜ ସିଜମାନ ପାଶାଙ୍କୁଶା ଭୟବରାଂ ବରଦାଂ ବରେଣ୍ୟାଂ ।। ପାଦ ପ୍ରତ୍ୟମ୍ବ ସକଳେ ସ୍ଫଟିକକଣ୍ଠବଲ୍ଲୀଂ ଲୋକେଶ୍ୱରିଂ ସମୁଦିତାର୍କ ସମାନଭାସଂ ।। ୨ ।। ଶ୍ରୀ ନୀଳାଚଳ କନ୍ଦରୋଦର ଗତଂ ନିର୍ନିଦ୍ର ନିର୍ଲୋପଲଂ ପ୍ରେକ୍ଷଂ ଦୈତ୍ୟ ଗଜେନ୍ଦ୍ର ଦର୍ପ ଦଳନଂ ସ୍ୱର୍ଗାଦି ପଞ୍ଚାନନଂ ।। ଶଙ୍ଖ୍ୟା ଚଞ୍ଚଳୟା ପରିତ ମିମଳଂ ପକ୍ଷୀ ଶସନ୍ତୁଷ୍ଟପଂ ତଦ୍ଦେହୁତ ପାରିଜାତ ମଜରଂ ଚକ୍ରାୟୁଧଂ ମାଧବଂ ।। ଅଭ୍ରାନ୍ତ ସନ୍ତତ ଶିବାଚଳ ତୁଙ୍ଗ ଶୃଙ୍ଗ ସଙ୍ଘାଟନକ୍ଷଣ ବିଚକ୍ଷଣ ଦନ୍ତକୋଟିଃ ।। ଦୁର୍ବିଘ୍ନ ଶୈତଦଳନକ୍ରମ ମୂଳ ହେତୁଃ କାମଂ ତମଙ୍ଗଜମୁଖଃ ସୁଖମାତନୋତୁ ।। ୧ ।। ଗ୍ରନ୍ଥ ମାହାତ୍ମ୍ୟଂ ।। ଯିଜ ମାର୍ତ୍ତଣ୍ଡେ ।। ଯଚ୍ଛାସ୍ତ୍ରଂ ସବିତା-ଚକାର ବିପୁଳଂ ସ୍କନ୍ଦୈସ୍ତିଭ ର୍ଜ୍ୟୋତିଷାଂ ।। ତସ୍ୟୋଚ୍ଛିନ୍ତୀ ଭୟାଦ୍ପୁନଃ କଳିଯୁଗେ ସଂ ଶ୍ରାଯୁଯୋଭୂତଳଂ ।। ଭୂୟଃ ସ୍ୱଳ୍ପତରଂ ବରାହମିହିର ବ୍ୟାଜେନ ସର୍ବଂ ବିଧାଦିତ୍ୟଂ ସମ୍ପ୍ରବଦନ୍ତି ଯୋଗକୁଶଳାସ୍ତ ସ୍ୱୈନେମୋ ଭୟଦେ ।। ମହା-ମୁନିର୍ଦ୍ଦୈ ର୍ବିଦ୍ଭ୍ରତର୍ଦଶଭି ର୍ବରାହ ମୁଖୈର ଚିତାନନୈକଧା ।। ପ୍ରବନ୍ଧ ସାଗର୍ ସମବେକ୍ଷ୍ୟ ସତ୍ତତଂ କରୋମ୍ୟହଂ ଜ୍ୟୋତିଷତତ୍ତ୍ୱ କୌମୁଦିଂ ।। ଜ୍ୟୋତିଃଶାସ୍ତ୍ର କର୍ତ୍ତୃନାହ ।। ପ୍ରଜାପତି ଭସ୍କର ଶ୍ଚ ବ୍ୟାସୋ ଗର୍ଗଃ ପରାଶରଃ ।। ବଶିଷ୍ଠ ନାରଦ ଶ୍ଚୈବ ହାରିତାଷ୍ଟ ବନୋ ଭୃଗୁଃ ।। ମାଣ୍ଡବ୍ୟଃ କଶ୍ୟପ ଶ୍ଚୈବ ଭର୍ଗବ ଶ୍ଚ ବୃହସ୍ପତିଃ ।। ଇତ୍ୟାଦି ମୁନୟଃ ସର୍ବେ ଜ୍ୟୋତିଃ ଶାସ୍ତ୍ର ପ୍ରବର୍ତ୍ତିକା ।। ଅଥ ଜ୍ୟୋତିଃ ଶାସ୍ତ୍ରାଶ୍ରୟାନାହ ।।

× × × ×

୧୨୯ ପତ୍ରର ଶେଷାଂଶରୁ କେତେକ ପଙ୍କ୍ତି :—

।। ଶ୍ରୀ ।। ମକର ଲଗ୍ନ ପ୍ରତି ।। କୁଜଜୀ ବେନ୍ଦବଃ ପାପାଃ ଶୁଭୌ ଭର୍ଗବ ଚନ୍ଦ୍ର ଜୌ ।। ସ୍ୱୟମେବ ନିହନ୍ତାସ୍ୟାନ୍ତୁନ୍ଦୋର୍ଭୌମାଦୟେ ପରେ ତଲ୍ଲକ୍ଷଣ ନିହନ୍ତାରେ କବିରେକ ସ୍ୱଯୋଗକୃତ୍ତ ।। ଜ୍ଞାତବ୍ୟା ନିବୁଧୈରେବଂ ଫଳାନି ମୃଗ ଜନ୍ମନଃ ।। ୨୧ ।। ଶ୍ରୀ ।। କୁମ୍ଭ ଲଗ୍ନ ପ୍ରତି ।। ଜୀବ ଚିନ୍ଦ୍ର କୁଜାଃ ପାପାଃ ଏକୋଦୈତ୍ୟଗୁରଃ ଶୁଭଃ ।। ରଜ ଯୋଗ କରେ ଭୌମଃ ରବିରେକୋ ବୃହସ୍ପତି ।। ୨୨ ।। ନିହନ୍ତାସ୍ତନ୍ତି ଭୌମାଦ୍ୟାଃ ମାରକାଃ ହେନ ନିଶ୍ଚିତାଃ ।। ଏବମେବ ଫଳାନ୍ୟୁହାନ୍ୟେତାନି ଘଟ ଜନ୍ମନଃ ।। ୨୩ ।। ଶ୍ରୀ ।। ମୀନ ଲଗ୍ନ ପ୍ରତି ।। ମନ୍ଦଶୁକ୍ରାଂଶୁମାଂ ସୌମ୍ୟାଃ ପାପାଃ ଭୌମ ବିଧୁଶୁଭୌ ।।

ମହିସୁତ ଗୁର ଯୋଗୋକାରିଣୋ ନୈକଭୂସ୍ଥତଃ ।। ୨୪ ।। ମାରକାଃ ମାରକା-ଖ୍ୟାଶ୍ଚ ମହାଦ୍ୟାଘ୍ନନ୍ତି ପାପିନଃ ।। ଇଯୁ ହ୍ୟାନି ବୁଧୈସ୍ତତ୍ରଜ୍ଞେୟା ନିଝଷଜନ୍ମନଃ ।। ୨୫ ।। ଇତି ଉତ୍ତରବାୟାଳିଶଃ ସମାପ୍ତ ।।

ଏହାପରେ ସଡ଼ବର୍ଗ ସାଧନ ମାହ ଇତ୍ୟାଦି ଅନେକ ବିଷୟ ବର୍ଣ୍ଣିତ ହୋଇ ସର୍ବମୋଟ ୧୮୦ ଖଣ୍ଡ ତାଳପତ୍ରରେ ଉପରୋକ୍ତ ଜ୍ୟୋତିଷ ଶାସ୍ତ୍ର ଶେଷ ହୋଇଅଛି । ଜ୍ୟୋତିଷ ଶାସ୍ତ୍ର ଗ୍ରନ୍ଥଟି ଦୁର୍ଗାପୁରର ସ୍ୱର୍ଗତ ପରମାନନ୍ଦ ପଣ୍ଡା ଲେଖିଥିବା ଗାଥା ଶ୍ରୀ ହୃଷିକେଶ ପଣ୍ଡା କୁହନ୍ତି ।। ପରମାନନ୍ଦ ପଣ୍ଡା ଗୋବିନ୍ଦ ପଣ୍ଡାଙ୍କର ବଡ଼ ମଝିଆ ଭାଇ ଥିଲେ । ପୋଥିଟିର ଶେଷରେ ଲେଖନକାରଙ୍କ ନାମ ଏବଂ ଠିକଣା ଦେଖିବାକୁ ମିଳେ ନାହିଁ ।

ଏତଦ୍ ବ୍ୟତୀତ ଏହାଙ୍କ ଗୃହରେ ଥିବା ନୃସିଂହ ପୁରାଣ, ମହାଭାରତ ଆଦି ଅନେକ ତାଳପତ୍ର ପୋଥି ଉଇ ଖାଇ ସମ୍ପୂର୍ଣ୍ଣ ନଷ୍ଟ କରି ଦେଇଛନ୍ତି । ନୃସିଂହ ପୁରାଣର ଅଳ୍ପ କେତୋଟି ପତ୍ର ଲେଖକ ଦେଖିଅଛି ।

—ଃ୦ଃ—

## ବଲାଣି

ନାଗରର ବଲାଣି ନିବାସି ପ୍ରଖ୍ୟାତ କବି ଶ୍ରୀଯୁକ୍ତ ଅର୍ଜ୍ଜୁନ ରାଜ୍ (ଭୂୟାଁ) ବର୍ତ୍ତମାନ ପ୍ରାୟତଃ ଅଠସ୍ତରୀ ବୟସରେ ପଦାର୍ପଣ କରି ଉତ୍କଳ ଭାରତୀର ପଦ ବନ୍ଦନାରେ ନିମଗ୍ନ ଅଛନ୍ତି ।

ନାଗର ତଥା ଗାଙ୍ଗପୁର ଅଞ୍ଚଳରେ କବି ଅର୍ଜ୍ଜୁନ ରାଜ୍ ଏବଂ ଏହାଙ୍କ ପିତୃପୁରୁଷଗଣ ଉତ୍କଳୀୟ ସଂସ୍କୃତିର ନୀରବ ପୂଜକ ହୋଇ ଆସିଅଛନ୍ତି । ପୁରୁଷାନୁକ୍ରମେ ଡର୍କିଆ ରାଜ୍, ଉଦ୍ଧବ ରାଜ୍, ମନୋରଥ ରାଜ୍ ଏବଂ ଶ୍ରୀ ଅର୍ଜ୍ଜୁନ ରାଜ୍ ପ୍ରତ୍ୟେକ ନିଜ ନିଜର ଭାଇମାନଙ୍କ ସହିତ ଏକତ୍ର ଏକ ଅନ୍ନରେ ପ୍ରଥମେ ବଲଣ୍ଡା, ପରେ ବଲାଣିରେ ବାସକରି ଆସିଅଛନ୍ତି । କବି ମହୋଦୟଙ୍କ ଗୃହରେ ବିଗତ ପାଞ୍ଚ ପୁରୁଷ ଧରି ଅନେକ ତାଳପତ୍ର ପୋଥି ଏବଂ ତାଳପତ୍ର ଖେଜା ବ୍ୟବହୃତ ହୋଇ ଆସିଅଛି । ଦୁଇଟି ତାଳପତ୍ର କମ୍ପରେ ପୂର୍ଣ୍ଣ ହୋଇଥିବା ପୋଥି ଏବଂ ଖେଜାଗୁଡ଼ିକରୁ ଅନେକ ଉଇ ଏବଂ ନଦୀ ବଢ଼ି କବଳରେ ନଷ୍ଟ

ହୋଇଗଲା । ତନ୍ମଧ୍ୟରୁ ଯେଉଁ କେତେକ ପୋଥି ରହିଲା ସେ ଗୁଡ଼ିକର ନାମ ଯଥା :—ମାଳଶ୍ରୀ ବେଣ୍ଟପୋଥି ଲିଖନ, ଦାଢ୍ୟତା ଭକ୍ତି, ବ୍ରହ୍ମାଣ୍ଡ ଭୂଗୋଳ, ବିରଟ ଗୀତା, ନାଗାର୍ଜୁନ ଦାୟିକା, ଭଗବତ ରସଲୀଳା, ଲକ୍ଷ୍ମୀ ପୁରାଣ, ଜିମୁତ ବାହନ ବ୍ରତ କଥା, ସୁଦଶା ବ୍ରତ କଥା, ସୋମନାଥ ବ୍ରତ କଥା, ମଙ୍ଗଳା ସ୍ତୁତି, ବନ ଦୁର୍ଗା, ଖୋଷା କଟା, ଦୁଲା ଭିଣା, ଗୁଣ ସାଗର, ବୈଦ୍ୟ ଶାସ୍ତ୍ର, ଘଣକ୍ୟ ସାଗର ସଂଗ୍ରହ ଇତ୍ୟାଦି । ଉକ୍ତ ପୋଥି ଏବଂ ଖେଳା ଗୁଡ଼ିକରୁ କେତେକ କବିଙ୍କ ବନ୍ଧୁ ବର୍ଗଙ୍କ ପାଖରେ ବିଲୀନ ହୋଇଯିବା ଖବର ମିଳେ । ଅବଶିଷ୍ଟ ରହିଥିବା ତାଳପତ୍ର ପୋଥିଗୁଡ଼ିକର ପରିଚୟ ନିମ୍ନରେ ଦିଆ ଯାଇଅଛି ।

## ଶ୍ରୀ ବେଣ୍ଟପୋଥି ଲିଖନ (ତାଳପତ୍ର ଖେଳାର ଅବିକଳ ନକଲ)

ପ୍ରଥମ ପତ୍ରରେ :—ନାମୋଲ୍ଲେଖ ନ ଥାଇ ଗ୍ଧରି ଜଣ ଦେବ ଅବା ଦେବୀଙ୍କର ଚିତ୍ରାଙ୍କନ ଦେଖିବାକୁ ମିଳେ । ପ୍ରଥମ ଶେଷ ଦୁଇ ମୂର୍ତ୍ତିରେ ଦୁଇ ଭୁଜ ଏବଂ ଦ୍ୱିତୀୟ ତୃତୀୟ ମୂର୍ତ୍ତିରେ ଗ୍ଧରିଭୁଜ ଅଙ୍କିତ ହୋଇଛି ।

ଦ୍ୱିତୀୟ ପତ୍ରରେ :—

ଶ୍ରୀ ବେଣ୍ଟ ପୋଥି
ଲିଖନ

ଭଇ ଭଲ ବାନୁୟାଂରେ ପଗ୍ଧରଇଁ ତୋତେ ॥ ନଛି ସିଙ୍ଘିଂ ସାଙ୍କୁ ଭଂଗ୍ଧର ବିଗ୍ଧର କହିଦେବୁ ମୋତେ ॥ ନ କରିବୁ କଳି ଭଇରେ ନ କରିବୁ ରୋସ ॥ ଗୁର ଖଟିଯଛୁ ଭଇ ନଛିର ନାମ କିସ ॥ କଳ କାନି ଜାମୁକି ଭଇ ନଜର ଘର ଗ୍ଧରି ॥ ଏମାନଙ୍କର କି କି ନାମ ଭଇ କହିବୁ ଫେଡ଼ି କରି ॥ ମାଛିକି ବୋଲୁ ଭଇ ପରିଜ ନାମ କିସ ॥ କୁନ୍ଦାଂ ବନ୍ଧାଂ ଭଇରେ କାହୁଂ ହେଲା ପ୍ରକାସ ॥ ଯାଡ଼ ବନ୍ଧ ବିଭୁତି ଟିକା କାହୁଂ ହେଲା ପ୍ରକାସ ॥ କା ପାଖ କାଛ ॥ ଚଲନାର ନାମ କହି ଜିବୁ ବେଗ ॥ ମାଟି କାହୁଂ ଭଇ ଲଗାଇଲୁ ଆଣି ॥ ଏମାନଙ୍କର କିକି ନାମ କହିଜିବୁ ପୁଣି ॥ କାହିଂକି କେଉଂ ଦେବତା କି ରୂପେ କରୁ ପୂଜା ॥ ଗୁର ରଣ ଅଛି ବାବୁ କହି କରି ଜା ଜା ॥ ଇତ୍ୟାଦି

× × ×

ଶେଷ ପତ୍ର ଦ୍ୱୟରୁ :—ଚମ୍ପା ନାଗେସର କରୁଣ ଫୁଲ ଫୁଟେ ।। ତେଲେଗାଂ ନାଗର ସତେ ଚମ୍ପା ମତେ କାର୍ଯ୍ୟ କିସିକୁ କହନ୍ତେ ତିସିକୁ ଲଗ ବୋଲି କିସିକେ ଆଗ୍ୟାଁ କାଉଁରୀ କାମଚଣ୍ଡି ଜବ ନ ଲଗେ କାଉଂରିକା ଦୁହାଇ ହଏ ।। ଉଲୁରୁ ବନେ ତୋର ବାସ । ବିମୁକା ଦୟକୁ ମାଇଲେ ବ୍ରହ୍ମସରେ ।। ସେ ଜନ୍ମିଲ କୁମ୍ଭିକା ନାମେ ନ ବୃକ୍ଷ ।। ଇଷ୍ୱର ଦେଲେ କାଟି ପାର୍ବତି ଦେଲେ ପିଟି ।। କାଟି ଜାମୁକି ପିଟାପଟ ।। ପଟ ଭଗିଂ, କଲମଡ଼ା ।। ବ୍ରହ୍ମା ସ୍ମରି ଲଗାଇଲି ଅଗ୍ନି ବାଜ ହୋ ଗୁଳି ବାଣ ବାଜୁ ବୋଲି କାହାର ଗଣ ।। ବ୍ରହ୍ମା ବିଷ୍ଣୁଙ୍କର କୋଟିଏ ଗଣ ।। ଶେଷରେ ଗ୍ୱରି ଜଣ ଦେବ ଦେବୀଙ୍କର ଚିତ୍ରାଙ୍କନ ଅଙ୍କିତ ହୋଇଅଛି ।।

ବେଣ୍ଟ ପୋଥି (ତାଳପତ୍ର ଲେଖା) ଉପରେ ପଦେ :—

କବି ଶ୍ରୀଯୁକ୍ତ ଅର୍ଜୁନ ଗଜଙ୍କ ମତାନୁଯାୟୀ ବେଣ୍ଟ ପୋଥି ଅତି ପ୍ରାଚିନ ପୋଥି । ପୋଥିଟି ଏହାଙ୍କ ଚତୁର୍ଥ ପୁରୁଷ ସ୍ୱର୍ଗତ ଢ଼ଙ୍କିଆ ଗଜଙ୍କ ଦୂର୍ବଗୁ ନିଜ ଗୃହରେ ପ୍ରଚଳିତ ହୋଇ ଆସିଅଛି ।। ପୋଥିର ଗୋପନୀୟତା ରକ୍ଷା କରିବା ଅନୁରୋଧକୁ ଏଡ଼ି ନ ପାରି କେତେକ ମନ୍ତ୍ର ଏବଂ ଶବ୍ଦ ନାମ ଏଠାରେ ପ୍ରକାଶ କରଯାଇ ପାରେ ।

ଯଥା :—ଲୁହାର ଜନ୍ମ; ନଳି ତୋଳି ଦେବାକୁ ମନ୍ତ୍ର; ଗ୍ରେଟପକା ମନ୍ତ୍ର; ଉଂଠିଆଧୁଆଂ ମଣ୍ଡଳ ଡ଼ିଯା ମନ୍ତ୍ର; ବିଭୁତି ମନ୍ତ୍ର, ପାରିଧି ଉଠିଆ କରିବା, ବାଉଂସର ଜନ୍ମ, ସଉଂରି ଦେବି, ଚୁଡ଼ଗ ଦେବତାକୁ ସଉଂରିରର କୋଟି କୋଟି ଆଗ୍ୟାଁ କାଣ୍ଡରେ ପାଞ୍ଚ ଦେଦତା—ସରେ ସରସ୍ୱତି, ହିଙ୍ଗୁଳେ ହିଗୁଂଲଇ ପଖିରେ ଗରୁଡ଼, ମୁଗୁରୁରିରେ ଗୁର ଦୁନ, ମୁନରେ କାଳିକା, ଖଣ୍ଡାରେ ଆଠ ଦେବତା, ପାନି ମନ୍ତ୍ର, ଘା ସୁଖା ମନ୍ତ୍ର, ଫୁଲ ପଢ଼ିବାକୁ, ବାଛର ମନ୍ତ୍ର, ଗୋଝାଡ଼ା, ଲୁଣ ମନ୍ତ୍ର, ଗ୍ରହଣି କି, ଫୁଲ ଫଳ ପଢ଼ିବାକୁ ପାନି ମନ୍ତ୍ର, ବଜ୍ର ଉଡଂରୀ ମନ୍ତ୍ର, ବାଘ ବାରେଣି, ସ୍ତିରି ରଜୋବତି ହେବାକୁ, ସ୍ତିରି ପ୍ରସବକୁ, ଖଣ୍ଡା ଘା ସୁଖିବାକୁ ଇତ୍ୟାଦି ।

ଶବ୍ଦର ନାମ ଯଥା—ବିସକର୍ମା, ଦଉଂଡ଼ି, କାଛଟା ଗୁର, ସୁଳସାଇଂ ସସ୍ତ, ସିସ ମହେସର, ପ୍ରସୁଗମ ପ୍ରାନ ଜବ୍ଦରେ, ତିନି ଜନ ଛିଡ଼ା, ପାରିଧି,

ଦୁଧି ଉଂଯା ଗ୍ରଉଂଳ, ଧୁଯାଂ ସେତଯପ୍ରାଜିତା, ଯାଗ୍ରା, ଜିବ ନିକିଲି, ଥନ, ମହାଲିଗାଂ, ପାଗଂନ ତୁଷ୍ଟି, ବଡ଼ଂସ, କୋଦଣ୍ଡ, ପାନି, ସିଯାଠାକୁରଣି, ବାଲର୍ମିକ, ପାଲଟ, ସିଧିସଉଂର, ଛୋଗ, ଛେଟିକା, ମଡ଼ଂନା, ସାତ ସମୋଦ୍ର ପାରି, ଯାଡ଼ହେଉଂ, ଗନ, ସାଦୁସେ, କୋଟିୟରଷ୍ଟି, ସିର, ଯାନିବ୍ ଗୋରେଖ, ହାଥୁଡି, ଦୁକନ୍ତେ. ମାଥକଲେ ନିହାଇ, ହନୁମତ, ମେର ପ୍ରବତର, ଚଉଂସଠି, ନାଉଂଡରେ, ବସନ୍ଧରି, ବେଣ୍ଟ କୁମାରି ଦେବି ଯଇଲ ଧାଇ, ବେଣ୍ଟ ଘରେ ପସିଲକ ଜାଇ ଇତ୍ୟାଦି ପ୍ରାଚୀନ ଶବ୍ଦ ଯୋଜନା ଦେଖିବାକୁ ମିଳେ । ବେଣ୍ଟ ପୋଥି ଲିଖନର ଆରମ୍ଭରୁ ଶେଷ ପର୍ବ ଭିତରେ ବିଶେଷତଃ ଶେଷ ପର୍ବରେ ମହେଷର ଏବଂ ବିଷ୍ଣୁ ଶବ୍ଦ ଦ୍ୱୟରେ 'ଷ' ପ୍ରଚଳନକୁ ଛାଡ଼ି ଅନ୍ୟତ୍ର କେବଳ "ସ" ଏବଂ "ଜ" ଅକ୍ଷର ବ୍ୟବହୃତ ହୋଇଅଛି । 'ଶ' ଏବଂ 'ଯ' ଅକ୍ଷର ଦ୍ୱୟ ପୋଥିରେ ଦୃଷ୍ଟି ଗୋଚର ହୁଏ ନାହିଁ । ବେଣ୍ଟ ପୋଥି ଲେଖନ ତାଳପତ୍ର ଖେଳାଟି ଭୂୟାଁ ସମାଜରେ ବଟୁଆ ଭଳି ପ୍ରଚଳିତ ହୋଇ ଆସି ଅଛି ।

## ବିଭିନ୍ନ ମନ୍ତ୍ରକୁ ନେଇ ନାମ ବିହୀନ ତାଳପତ୍ର ଖେଳା

ଶ୍ରୀ ଗୋବିନ୍ଦ—ଏ ତୁଳସୀରେ ଜଳଦେବା ଶ୍ଳୋକଃ ।।

ଶ୍ରୀକୃଷ୍ଣେ ବଲ୍ଲଭେ ଦେବୀ ଜପ ଚୈତନ୍ୟ ରୂପିଣି
ସ୍ନାପୟାମି ଜଗଦ୍ଧାତ୍ରୀ କୃଷ୍ଣ ମାଂ କୃଷ୍ଣ ବଲ୍ଲଭଂ ।। ଇତ୍ୟାଦି

× × ×

ନିର୍ମାଲ୍ୟ ଗ୍ରହଣ :—ନିର୍ମାଲ୍ୟ ସେବନା ।୮।

କ୍ରନ୍ଦନ୍ତି ସର୍ବ ପାପାନୀ ନୀଃସନ୍ତି ମୂହୁର୍ମୁହୁଃ ।
ହାହା କୁହା ପଳାବନ୍ତେ ଜଗନ୍ନାଥାନ୍ତି ଭକ୍ଷତେ ।। ଇତ୍ୟାଦି

× × ×

ଶ୍ରି । ଓଁ ଶ୍ରୀରାଧା ମଦନ ମୋହନୌ ଜୟତୀ ।।

ଜୟ ଜୟ ରାଧେ ଜୟ କୃଷ୍ଣ ଜୟ ବୃନ୍ଦାବନ
ଶ୍ରୀ ଚୈତନ୍ୟ ନିତ୍ୟାନନ୍ଦ ରୂପସନାତନ ।।୧।।
ରୂପସନାତନ ମୋରେ ପ୍ରାନ ସନାତନ ।
କ୍ରିପାକରି ଦିଅ ମୋରେ ଜୁଗଲ୍ ଚରନ୍ ।।୨।।
ଜଯଶ୍ରୀ ରୂପସନାତନ ଭଟ-ରଘୁନାଥ ।
ଶ୍ରୀଜୀବ ଗୋପାଳ ଭଟ ଦାସ ରଘୁନାଥ ।।

ଯେ ଇଛ ଗୋସାଇଁର କରୁଂ ଚରନ୍ ବନ୍ଦନ
ଜାହାହେଁତେ ବିଘ୍ନନାସେ ଅଭିଷ୍ଟ ପୁରନ୍ ॥୪୫॥

+ + +

ଜୟ ଜୟ ରାଗବୃନ୍ଦା କୃଷ୍ଣ ପ୍ରିୟତମା
ରାଧା କୃଷ୍ଣ ଲିଳାକରେ ଅତିମନୋରମ ॥୪୬॥

ଜୟ ଜୟ ବୃନ୍ଦାବନ ସଖି ଚନ୍ଦ୍ର ମାଝେ
ସଖି ସଙ୍ଗେ ରାଇ ଯାହା ସତତ ବିରଜେ ॥୪୭॥

ସୁନ ସୁନ ଆରେ ଭାଇ କରି ଅତି ମନୋରମା ॥ ପ୍ରାର୍ଥନା ॥
ବ୍ରଜେ ରାଧାକୃଷ୍ଣ ସେବା କର ହେ ଭବନା ॥୪୮॥

ଛାଡ଼ି ଅନ୍ୟ କ୍ରିୟା କର୍ମ ଅନ୍ୟେ ଅନ୍ୟେ ଧ୍ୟାନେ
ବୃନ୍ଦାବନେ ରାଧା କୃଷ୍ଣ ସେ ଅନୁକ୍ଷଣେ ॥୪୯॥

ଜେ ସର୍ବ ଲୀଳା ନାମ ଜେ ଉଂକର ଜେ ସର୍ବଳି
ଜନ୍ମ ଜନ୍ମ ଚିରପ୍ରାଣ ବନ୍ଧୁ ଚରଣ କମଳ ॥୫୦॥

ଇତି ଶ୍ରୀ ରାଧାକୃଷ୍ଣ ଲିଳା ନାମ ସଦା ଜୟେ ସମ୍ପୂର୍ଣ୍ଣ ॥
ଶ୍ରୀ ଗୁରୁଦେବଂ ॥ ଶ୍ରୀ ନିତ୍ୟାନନ୍ଦ ମହାପ୍ରଭୁ ଜୟତୀ ॥

ଏହାପରେ ମେରମନ୍ତ ତୁଳସି, ନବଗ୍ରହ ସ୍ତୋତ୍ର ଗାୟତ୍ରି, ଶ୍ରୀ ରାଧିକା ସ୍ତୋତ୍ର ଲିଖନ, ଗ୍ୱରି ଧାମକୀ ଅଷ୍ଟକ ଇତ୍ୟାଦି ମନ୍ତ୍ରଗୁଡ଼ିକ ବର୍ଣ୍ଣିତ ହୋଇଅଛି । ଶେଷ ଦୁଇ ପତ୍ରରେ ଯଥାକ୍ରମେ :—

ସିଦ୍ଧ ପର୍ଣ୍ଣାଳୀ ॥ ଶ୍ରୀ ଦୁଅ ଜାହ୍ନବା ଗୋଶ୍ୱାମି ସିଧ୍ୟ ନାମାନୀ ॥

| | |
|---|---|
| ଦାସ ଠାକୁର | ଅନଙ୍ଗ ମଞ୍ଜରି, ଅନଙ୍ଗ ମାଳା ।ବସନ୍ତା |
| ତଦନୁଗତ ଶ୍ରୀ ଗୋପିନାଥ | କିତକୀ ବର୍ଣ୍ଣା । ଇନ୍ଦିବର ବସନା |
| ଦାସ ଠାକୁର | ନାନାରନ୍ତ୍ରଇଂକାଂର ମାଳା ବିଦ୍ୟାଭରଣାଂ ॥ |

ଶ୍ରୀ ନିତ୍ୟାନନ୍ଦ ମହାପ୍ରଭୁ
ଶ୍ରୀ ଯାହ୍ନବା ଗୋସାଇଂ
ଶ୍ରୀ ବୀରଭଦ୍ର ଗୋସାଇଂ
ଶ୍ରୀ ବ୍ରଜବାସୀ ଯାଦବେନ୍ଦ୍ର ବୈରାଗୀ ଦାସ ଠାକୁର
ଶ୍ରୀ ପାତକଟା ମୋହନ ଦାସ ଠାକୁର

ଶ୍ରୀ ବଳରାମ ଦାସ ଠାକୁର
ଶ୍ରୀ ରଘୁନାଥ ଦାସ ଠାକୁର
ଶ୍ରୀ ଦାମୋଦର ଦାସ ଠାକୁର
ଶ୍ରୀ ପଦ୍ମନାଭ ଦାସ ଠାକୁର
ଶ୍ରୀ ଭଗବତ ଦାସ ଠାକୁର

ତଦନୁଗତ ଚଇତନ୍ୟଚରଣ ଦାସ ଠାକୁର
ତଦନୁଗତ ଶ୍ରୀ ଜନାର୍ଦ୍ଦନ ଦାସ ଠାକୁର
ତଦନୁଗତ ଶ୍ରୀ ପରିକ୍ଷିତ ।।

(ତାଳପତ୍ର ଖେଳା ସମାପ୍ତ)

## ମାଳଶ୍ରୀ ତାଳପତ୍ର ଖେଳା

### ମାଳଶ୍ରୀ ଲେଖନ

ମାଗୋ ଚଣ୍ଡି ସ୍ୱମୂର୍ତ୍ତିତୋ ଭୈରବୀ ବାନା—
ରୁଚିର କେଶ ତୋ ବାଙ୍କ ନୟନା—
ଗ୍ରହିବା ମାତ୍ରେ ତିନିପୁର ମୋହୁ—
ପୁଣି ଚନ୍ଦ୍ରମାକୁ ଯେହ୍ନେ ଗ୍ରାସଇ ରାହୁ— ।
ସ୍ୱଛ ଅ, ଧର ବିଚିତ୍ର, ଗୋ ମା, ସ୍ୱଛ ଅଧର ବିଚିତ୍ର
ପୁଣି ଶୋଭ ପାଉଅଛି, ତୋ ବେନି ନେତ୍ର ।୧।

ମାଗୋ କାଳୀ କରାଳୀ ତୋ ଭୈରବୀ ବାନା
ଚଉଦ ଭୁବନେ ଉଡ଼େ ତୋ ବାନା—,
ତ୍ରିଭୁବନ ଦୈତ୍ୟେ ସକଳ ସଂହାର—
ଗୋ ମା ତେତାଇ ମାଇଲୁ ତୁ ମହିଷାସୁର ।
ସ୍ୱଛ ଅ, ଧର ବିଚିତ୍ର, ଗୋ ମା, ସ୍ୱଛ ଅଧର ବିଚିତ୍ର ।
ପୁଣି ଶୋଭ ପାଉ ଅଛି ତୋ ବେନି ନେତ୍ର ।୨।

ମା!ଗୋ କେତେ ରୂପେ ତୁ କେତେ ନାମ ବହୁ
କେତୁକା ନାମ ଦେଲେ ମହାବାହୁ
କୁରୁ ପାଣ୍ଡବଙ୍କୁ ବଳେ ହେଁ ମାରୁ
ପୁଣି କୃପାକରି ଯୁଜେଷ୍ଟିଙ୍କି ଉଦ୍ଧାରୁ — ।
କେ ତେ, କହିବି ତୋ ମହିମା ଗୋ ମହାଦେବ ବାମା
କେ କେତେ କହିବି ତୋ ମହିମା
ପୁଣି କରପତ୍ର ଯୋଡ଼ି ପଢନ୍ତି ବ୍ରହ୍ମା ।୩।

କର୍ଣ୍ଣେ ବୀର ବଳି ମୁକୁତା ହାର—
କ୍ଷଣକେ ଦିଶଇ ମା ରୂପହିଁ ତୋର—
କ୍ଷଣେ ବରଙ୍ଗନା କ୍ଷଣେ ଷୋଡ଼ଷୀ —
ପୁଣି ସେହି ରୂପ ଦେଖି ଭୁଲିଲେ କାଶୀ —
ବଚନ ଟହ ଟହ, ବଦନ ଦହ ଦହ
ରୁଚି ରତନ ଗୋ ଶୋଭିତା;
କ୍ଷଣ ଝିନ କପି ମନ୍ଦହାସ୍ୟ; ବିଜୁଳି ବିକୁଟା,
ଲିମ୍ବିକା, ଅଧର ନିନ୍ଦଇ ତିଳ ପୁଷ୍ପ ଗୋ ନାସିକା,
ମାଗୋ ତ୍ରିପୁର ସୁନ୍ଦରୀ ସ୍ତିରୀ ନାୟିକା ।୪।

ମଥାର ମଣି ମର୍ତ୍ତ୍ୟ ଭୁବନ, ଝଟକି ଦିଶଇ ମା ବିଜୁଳି ପ୍ରାୟେ—
ଦେଖିଲେ ଯୋଗ ତେଜି ବେନି ଯୋଗୀ—ଗୋ ମା—
କ୍ଷଣେ ଉମା ଦେଇ କ୍ଷଣେ ଭୈରବୀ—
ଦନ୍ତ ରଟ ରଟ, ଜିହ୍ୱା ଲଖ ଲଖ, ଖଡ୍‌ଗ ଝମ ଝମ,
ଝମକିତା, ବଦନ ଢ଼ର ଢ଼ର, ହୋଇତା ଥର ଥର,
ଚରଣେ ଶରଣ ଗୋ ବର୍ତ୍ତିତା ଡିବି ଡ଼ିବି ଡମ୍ବରୁ ।
ଘୋର ସ୍ୱର ସ୍ୱନ, ପତନି ଫର ଫରକ୍ଷିତା—
ପୁଣି ସଙ୍ଗୀତ ନାଟରେ ତୁ ଜଗଜ୍ଜିତା
ଜୟ ଜୟ ଦୁର୍ଗା ଦୁର୍ଗତି ନାଶିନୀ, ବାସିନୀ—
ଶ୍ୱେତ ମାଳିକା, ମାଗୋ ବିପତ୍ତି କାଳକୁ ତୁ ହେଉ ସଖା ।୫।

ମାଗୋ ମଙ୍ଗଳା ସେବି ଅମଙ୍ଗଳା ହେଲ
ଥିଲ ଦେବା ଦେବୀ ଥିଲ ସମଳା—।
କେତେ ରକ୍ଷା ଗୋନ କରିଲ ବାରେ—
ପୁଣି ପେଲି ପଶିଲ ଜୟ ଅଳକାରେ—।
ଖର୍ବ ଖର୍ବ ଟଙ୍କା ଜୁର କଲେ କହିଲେ ଶ୍ରୀବିଷ୍ଣୁ
ନୃପତି ସହିତେ ବାଳକ ହେଟେ ହସ୍ତ ଧରି ନେଲେ ଆଙ୍କି।
କହିବା କହିଲେ ଅଦୃଷ୍ଟ ଲିଖନ, କେବଳୁ ଆନ,
ଗୋ ମା, ପୁଣି ସାଉଟି ରଖୁ ତୁ ଚୂହାନ—।
ଜୟ ଜୟ ଦୁର୍ଗା ଦୁର୍ଗତି ନାଶିନୀ—।୫।
ମାଗୋ ଏଡ଼େ ମହିମା ତୋ କେଣିକି ଗଲ
ତୁ ଥାଉଁ ପୃଥ୍ୱୀ ଭଗ୍ନ ନଷ୍ଟ ହେଲ
ଯୁଗ ଯୁଗାନ୍ତେ ନୃପତି ଚୂହାନ—
ଗୋମା ତୁ ଚୂହାନ ଘଉଡ଼ିଲୁ ବନ—
ଘଟ ଭୟ ଜିଅନ୍ତି ଡ଼ାକ ଶୁଣି କି ମନେ ଶଙ୍କିଲୁ
ହସ୍ତଛଡା କଡ଼ା ପ୍ରାୟେକ କର୍ମିଲୁ
କହିଲେ ମନାଇ ତୁ ରଣେ ବିନୋଇ
ମହିଷୀ ପୋଢ଼ ବୋଦା ଯାଚିଲେ
ଗୋ ମା ମୋ ଆ ମାଂସରେ ତୋତେ ବସ୍ୟ କଲେ।
ଜୟ ଜୟ ଦୁର୍ଗା ଦୁର୍ଗତି—।୬।
ମାଗୋ ବନ୍ଦୀରେ ପଡ଼ିଲେ ନୃପତି ବର—
ମଉଡ ମଣି ଗୋ ବିଶ୍ୱାସେ କାର—
ସରସ୍ୱତୀ ଯାଇ ତୁ କଣ୍ଠରେ ବସ
ପୁଣି ସମର୍ପି ଦେଉ ତାର ରାଜ୍ୟ ଦେଶ—
ଆସୁ ସେ ନରେଶ ହୋଇଣ ହରଷ
ଯବନ ନୃପତି ଦୟାକଲ୍ଲ, କୋଟି ମନ୍ଦ ହାସ୍ୟ ମାତ୍ର
ନାଏକ ଠାରେଣ୍ ମାଗୋ କହଇ ମାଳି—
ମୋ ବିନତି ଘେନ। ଜୟ ଜୟ ଦୁର୍ଗା—।୭।

—※—

ମାଗୋ–କାନ୍ଦଇ ପୃଥିବୀ ନ ଟେକଇ ମଥା
କ୍ରୋଧଭରେ ଦେବୀ ନ କହେ କଥା
ନ ସହଇ କ୍ଷିତି ମସ୍ୟାର ଭର,
ପୁଣି ବାଜି ମୁଖରୁ ବହେ ବସୁନ୍ଧର
ପରେ ଖଣ୍ଡା ହସ୍ତେ ଖପର ଗୋ ମା ପରେ ଖଣ୍ଡା ହସ୍ତେ ଖପର,
ଏବେ ଖପରେ ଖାପିବୁ ତୁ ମସ୍ୟାସୁର ।୧।

× × ×

ଦେବୀଠାରୁ ମସ୍ୟା ଏ ସନ ଶୁଣି, କୋପେ ଥର ଥର ମଉଡ଼ ମଣି ଖଡଗ ଝମକାଇ ବୋଲେ ସମ୍ଭାଳ, ମାଗୋ ସମ୍ଭାଳି ଦେବୀ ମାଇଲେ ତ୍ରିଶୁଳ । ପଡ଼ିଲକ ମସ୍ୟାସୁର ଗୋ ମା ନିର୍ଘାତ ଗଡ଼ିଏ ଛାଡ଼ି । ଯାଇ ତା ଉପରେ ଦେବୀ ବସିଲେ ମାଡ଼ି ।।୧୧।। ସ୍ୱର୍ଗ ଦେବେ ଯହିଁ ପଳାଇଥିଲେ ମସ୍ୟା, ମଲ ବୋଲି ଯହିଁ ଶୁଣିଲେ ଅଦଭୁତେ କେ ଯହିଁ ଶୁଭିଲ ବାଣୀ ମାଗୋ ମସ୍ୟାକୁ ମାଇଲେ ସିଂହବାହିନୀ ।

ସ୍ୱର୍ଗେ ଜୟ ଜୟ ଧ୍ୱନୀ ଗୋ ମା ମର୍ତ୍ତେ ଜୟ ଜୟ ବାଣୀ
ଗୋ ମା ଭଣେ ଗୋବିନ୍ଦାଇ ସିଂହବାହିନୀ ।।୧୨।।

—❋—

କହନ୍ତି ଜାନକୀ ଶୁଣ ଭବାନୀ, ଭେଟ କରାଅ ମୋତେ ରଘୁପାଣି ।
ଦଶମାସ ହୋଇ ବିଚ୍ଛେଦ ହେଲା, ଗୋ ମା ପଉଲସ୍ତି ନାତି ମୋତେ
ହରି ଆଣିଲା । କିଏ ରଘୁପତି ଗୋ ମା ଯୁବା କାମ ମୂର୍ତ୍ତି–
ଅବନୀ ପତି ଚନ୍ଦ୍ରମା, ମାଗୋ ନ ଦେଖି ନ ଚଳେ ମାଳସ୍ୟ ଉମା ।।୧

ପିତା ସତ୍ୟ ପାଳି ବନସ୍ତେ ବାସ, ଦଣ୍ଡକାରଣ୍ୟେ ଥିଲେ ରଘୁଶିଷ୍ୟ ।
ମାୟାରେ ସୁବର୍ଣ୍ଣ ମୃଗ ଦେଖାଇ, ମାଗୋ ମୃଗ ମାରିବାକୁ ଶ୍ରୀରାମ ଯାଇ ।
ଶୁଭିଲକେ ବାଣୀ, ଶୁଣଗୋ ଭବାନୀ, ଲକ୍ଷ୍ମଣ ବୋଲି ଉଭର
ମାଗୋ ଶୁଣି ଧାଇଁଲେ ସୁମିତ୍ର କୁମର ।।୨।।

ମାଗୋ ଲକ୍ଷେ ଗଜାଙ୍କର ମୁଖ ଚହଲ । ସିନ୍ଧୁ ସଙ୍ଗମେ କି ଗଙ୍ଗା ସମେଲ ।
ଶିବ ଶରାସନ ଟେକି ନ ପାରି, ମାଗୋ ଏହି ରାବଣ ପଳାଇଛି ହାରି ।
ଦ୍ୱାଦଶ ବରଷବେଳେ ରଘୁ ଶିଷ୍ୟ ଲିଳା ମାତ୍ରେକ ଟେକି ।
ମାଗୋ ଏହି ରାବଣ ପଳାଇଛି ହାରି ॥୩॥

ତହୁଁ ଜାନକୀ ତୋତେ ଚିନ୍ତା କଲେ; ହନୁ ମୁଖରୁ ବାରତା ପାଇଲେ ।
ସାହେର ଜିଣିମା'ଗୋ ହୋଇଲେ ପାରି, ମାଗୋ ଛେଦି ରାବଣର ଦଶ ମଉଳି ।
ଧନ୍ୟ ତୋ ମହିମା ଗୋ ମହାଦେବ ବାମା ॥
ଦିଅ ତୋ ପଦ ମକରନ୍ଦ, ମାଗୋ ମହେଶ୍ୱର ସିଂହ ହେଉ ଆନନ୍ଦ ॥୪॥



ମା'ଗୋ ଚନ୍ଦ୍ରଭଗା ନଦୀ ତୀରେ କରୁ ବିଶ୍ରାମ
ତ୍ରେତୟା ଯୁଗେ ପୂଜିଲେ ଶ୍ରୀରାମ
ଚୂଡ଼ଙ୍ଗ ଆସି ଦେଉଳ ଦୁଆରେ ପଶି
ଗୋ ମା ଗିଳିବି ବୋଲି ବସିଛି ଆକ୍ରସି
ଭଣ୍ଡିଗଲୁ ଚୂଡ଼ଙ୍ଗ ଗୋ ମା; ଭଣ୍ଡିଗଲୁ ଚୂଡ଼ଙ୍ଗକୁ,
ଥରେ ଦ୍ୱାର ଛାଡି ଦେଲେ ଯିବି ପାଣିକୁ ॥୧॥

ମା'ଗୋ ସୁବର୍ଣ୍ଣ ଗରିଆ ଘେନି କାଖର,
ଦେଉଳରୁ ଦେବୀ ହେଲେ ବାହାର.
କୁସୁମେରୀ ଶାଢ଼ୀ କାନ୍ଧେ ପକାଇ,
ଗୋ ମା ସମୁଦ୍ର ମାଝେ ଉଭେହେଲୁ ଯାଇ,
ଭଣ୍ଡିଗଲୁ ଚୂଡଙ୍ଗକୁ ଗୋ ମା ଭଣ୍ଡିଗଲୁ ଚୂଡଙ୍ଗକୁ ।୨।

ଜାଣି ଚୂଡ଼ଙ୍ଗ ଗୋଡାଇଲା ପଛେ,
ତୁ ପୁଣି ଲୁଚିଲୁ ସମୁଦ୍ର କାଛେ,
ସମୁଦ୍ର ଭିତରେ ତୁ ସତ୍ୟ କରଉ,
ଗୋ ମା ଛେଳି ଛାଗଳ ପୋଢ଼ ବୋଦା ଖାଉ,
ଭଣ୍ଡିଗଲୁ ଚୂଡ଼ଙ୍ଗକୁ ଗୋ ମା ଭଣ୍ଡିଗଲୁ ଚୂଡ଼ଙ୍ଗକୁ ॥୩॥

ଆଶ୍ୱିନ୍ୟ ମାସରେ ତୋ ପଡ଼ଇ ବ୍ରତ,
ଓଡ଼ିଶା ଗଜପତି ତୋ ନିଜ ପୁତ୍ର,
ଲକ୍ଷେ ଚଣ୍ଡିଶିରେ ସିନ୍ଦୁର ମଣ୍ଡି,
ଗୋ ମା ଭଣେ ଗୋବିନ୍ଦାଇ ରଖ ରମଚଣ୍ଡି,
ଭଣ୍ଡିଗଲୁ ଚୂଡ଼ଙ୍ଗକୁ ଗୋ ମା ଭଣ୍ଡିଗଲୁ ଚୂଡ଼ଙ୍ଗକୁ,
ଥରେ ଦ୍ୱାର ଛାଡ଼ି ଦେଲେ ଯିବି ପାଣିକୁ ॥୪॥



## ଶ୍ରୀଶ୍ରୀ ସୋମନାଥ ବ୍ରତ ଲେଖନ (ତାଳପତ୍ର ଖେଳା)

ଶ୍ରୀ ଶ୍ରୀ ସୋମନାଥ ବ୍ରତ ଲେଖନ ॥ ପ୍ରଣମ୍ୟ ଜଗ ଦୂହାନ୍ତି ସ୍ଥିତି ସଂହାର କାରଣଂ ॥ ସ୍ୱର୍ଗାପବର୍ଗଯୋନିଯ୍ତ୍ ॥ ତୈଲୋକ୍ୟ ସରଣଂ ସିବ ॥ ଇତ୍ୟାଦି ।

× × ×

ଶ୍ରୀଶ୍ରୀ ॥ ଏଥୁ ଅନନ୍ତରେ ବିକ୍ରମ କେଶରୀ ବୋଲି ଏକ ରଜା ଥିଲ ॥ ସେ ରଜାର ଅଶ୍ୱବଳ ଗଜବଳ ଘେନି ରଜ୍ୟ କରୁଥାଇ ॥ ଏମନ୍ତେ ଥୋକାଏକ କାଳେ ପଶ୍ଚିମ ଶ୍ରୀ ସୋମନାଥଙ୍କର ସାଠିଏ କାପୁଡ଼ିମାନେ । ସେ ବିକ୍ରମ କେଶରୀ ରଜ୍ୟରେ ପ୍ରବେସ ହେଲେ । ଆସି ରଜାର ସିଂହଦ୍ୱାରରେ ମିଳିଲେ ॥ ଦ୍ୱାର ପାଳକୁ ବୋଇଲେ ଆମ୍ଭେ ରଜାକୁ ଦ୍ରୁସନ କରିବୁ ॥ ସେ କାପୁଡ଼ି ମାନଙ୍କର ବଚନ ସୁଣି ॥ ସେ ଦ୍ୱାରପାଳମାନେ ରଜାଙ୍କୁ ଜଣାଇଲେ ॥ ଭୋ ଦେବ ପଶ୍ଚିମ ସୋମନାଥଙ୍କର ସାଠିଏ ବାପୋଡ଼ିମାନେ ଆସିଅଛନ୍ତି ॥

× × ×

ଇତ୍ୟାଦି ସୋମନାଥ ବ୍ରତ କଥା ବର୍ଣ୍ଣିତ ହୋଇଅଛି । ଉକ୍ତ ପୋଥିର ଶେଷାଂଶରୁ କେତେକ ତାଳପତ୍ର ଉଇ ଦ୍ୱାରା ନଷ୍ଟ ହୋଇଯାଇ ଅଛି । ସୁତରାଂ- ଶେଷ ପରିଚୟ ଉଦ୍ଧାର କରଯାଇ ପାରିଲା ନାହିଁ ।



## ଶ୍ରୀ ଜିମ୍ୂତ ବାହନ ବ୍ରତ କଥା (ତାଳପତ୍ର ଲେଖା)

| | |
|---|---|
| ଶ୍ରୀ ଜିମ୍ୂତ ବାହନ ବ୍ରତ କଥା ଲେଖନ | ଆଦ୍ୟେ ବରୁଣ ପୂଜା କୃତ୍ୱା ॥ ତଦନ୍ତରେଂ ॥ ସଙ୍କଳ୍ପ ପ୍ରଥମ ଦିନ ବ୍ରତିମାନେ + + + ଇତ୍ୟାଦି ବର୍ଣ୍ଣିତ ହୋଇଅଛି । |

ଓଁ ଜିମ୍ୂତ ବାହନାୟ ମାବାହୟାମି ॥ ଜିମ୍ୂତ ବାହନାୟ ଅଭ୍ୟାଗଛ ॥ ଏ ବିଧିରେ ଜିମ୍ୂତ ବାହନଙ୍କୁ ଆସନ ପାଦାସନ ପାଦ୍ୟ ଅର୍ଘ୍ୟ ଗନ୍ଧ ପୁଷ୍ପ ଧୁପ ଦିପ ନୈବେଦ୍ୟ ଦେଇ ପୁଜା କରିବ ॥ ସମସ୍ତଙ୍କର ବ୍ରତ ଅଶ୍ୱସ୍ଥ ଗଛରେ ଚଢ଼ାଇବ ॥ ଶ୍ରୀ ଜିମ୍ୂତ ବାହନାୟ ବ୍ରତ ଗୃୟା ନମଃ ॥ ଅଥ ପୁଷ୍ପାଞ୍ଜଳି ॥ ଶ୍ଳୋକଃ ସୁର୍ଯ୍ୟସୁତ ନମସ୍ତେସ୍ତୁ ନମେ ଜିମ୍ୂତ ବାହନ ପୂଜନିୟଂ ଯଥା ଭକ୍ତ୍ୟା ଗୃହାଣ ପୁଷ୍ପମାଞ୍ଜଳି ॥ ନମସ୍କାର କରିବ ॥ ନମସ୍ତେ ସାଲି ପୁତ୍ରସ୍ତ ନମସ୍ତେ ଅର୍କନନ୍ଦଂନ ॥ ପ୍ରଣମ୍ୟଂ ସିରସା ଦେବ ଦେହି ମେ ବାଂଛିତ ଫଳଂ ପୁତ୍ର ପୌତ୍ର ଧନୈ ଶୁର୍ଯ୍ୟବର୍ଦ୍ଧିତ ଜିବିତଂ ତଥା ॥ ପ୍ରିୟର୍ଥେନ ବ୍ରତ କୁର୍ଯାତ୍ ଫଳେନ ଫଳମାଦିସେତ୍ । ଅଥ ଦେଖତେନ କଥା ॥ ଶୃଣୁୟାତ୍ ॥ ଶ୍ରୀ✱ଶ୍ରୀ ॥ ହେ ବ୍ରତିମାନେ ଏକଚିତ ହୋଇ କଥା ଶୁଣ ॥ ଋଷି ଉବାଚ ॥ ଲମ୍ବୋଦର ଗଣାଧ୍ୟକ୍ଷଂ ବିଘ୍ନରାଜ ନାମ ବିନାୟକଂ ॥ ନମାମି ପାର୍ବତି ପୁତ୍ର ଅଗ୍ର ପୁଜ୍ୟଂ ଗଜାନନଂ ॥ ଏକଭୁତ ଯେ ଗଣେଶ୍ୱର ॥ ତାହାଙ୍କୁ ମୋ ନମସ୍କାର ॥ ସେ ସର୍ବ ଦେବତାଙ୍କର ଅଗ୍ରପୁଜ୍ୟ ଅଟନ୍ତି ॥ ହେ ଋଷିମାନେ ତୁମେ ଏକମନ ହୋଇ ଶୁଣ ॥ ବିଂଝାଚଳ ବୋଲି ଏକ ନଗ୍ରେକ ଅଛି ॥ ତହିଂର ରଯାର ନାମ ବିଧୁଚନ୍ଦ୍ର ॥ ମନ୍ତ୍ରିର ନାମ ଧର୍ମ ଦତ୍ତ ॥ ସେ ରଯା ବଡ଼ ଧର୍ମବନ୍ତ ଅଟଇ ॥ ବଡ଼ ପଣ୍ଡିତ ଆଟଇ । ବିଷ୍ଣୁଭକ୍ତ ସକଳ ଗୁଣେ ପରିପୂର୍ଣ୍ଣ ଅଟଇ ॥ ଇତ୍ୟାଦି ॥

\+ × +

ଏହି ଭଳି ଶ୍ରୀ ଜିମ୍ୂତ ବାହନ ବ୍ରତ କଥାଟି ବର୍ଣ୍ଣି ହୋଇଛି । ପୋଥିର ଶେଷ କେତେକ ପତ୍ର ନଷ୍ଟ ହୋଇଯାଇଥିବାରୁ ବ୍ରତ କଥାଟି ସମ୍ପୂର୍ଣ୍ଣ ଉଦ୍ଧାର କରାଯାଇ ପାରିଲା ନାହିଁ ।

—✱—

# ଶ୍ରୀ ଲକ୍ଷ୍ମି ପୁରାଣ ଲେଖନ (ତାଳପତ୍ର ଖେଦା)

ପ୍ରଥମ ପତ୍ର :—

ଶ୍ରୀ ଲକ୍ଷ୍ମି ଶ୍ରୀ ଗଣେସାୟ ନମଃ ।।
ପୁରାଣ ବନ୍ଦଂଇ ଯେ ପ୍ରମ ଲକ୍ଷ୍ମି ଜଗତ ତାରେଣୀ ।
ଲେଖନି ତ୍ରୈଲୋକ୍ୟର ଚିନ୍ତାମଣି ଅଟୁ କମଳୁଣି ।।୧।।

ସିନ୍ଧୁମନ୍ଥନରୁ ଜାତ ହୋଇଲୁଣି ପୁଣି ।
ତେଣୁ କରି ନାମ ଦେଲେ ଲକ୍ଷ୍ମିନାରାୟଣି ।।୨।।

ଏକ ମଗ୍ର ମାସେ ଯେ ଦସମୀ ଗୁରୁବାର ।
ସୁଦଶାବ୍ରତ ଯେ ପଡ଼ିଲ ସେ ଦିନର ।।୩।।

ଜଗନ୍ନାଥ ପାର୍ଶ୍ୱସେ ଯେ ପ୍ରମ ଲକ୍ଷ୍ମି ଥିଲେ ।
କରପତ୍ର ଜୋଡ଼ିଣ କମଳା ଜଣାଇଲେ ।।୪।।

ଆଜ ମୋର ବ୍ରତବାର ପଡ଼ିଲ ଗୋସଇଂ ।
ତୁମ୍ଭ ଆଜ୍ଞା ହୋଇଲେ ମୁଁ ନଗ୍ର ବୁଲିଯାଇ ।।୫।।

ଗୋବିନ୍ଦ ବୋଇଲେ ଲକ୍ଷ୍ମି ନଗ୍ରହିଂ ବୁଲିବ ।
ଦଶମୀ ପାରଣା ଭୋଗ ମଣୋହି ରନ୍ଧିବ ।।୬।।

ପ୍ରଭୁକଂ ଶ୍ରୀମୁଖୁ ମାୟେ ଏମନ୍ତ ଶୁଣିଲେ ।
ଭଣ୍ଡାର ଘରକୁ ଯେ କମଳା ବିଜେ କଲେ ।।୭।।

\+ \+ \+

ଶେଷ ପତ୍ର :—

ଶ୍ରୀକୃଷ୍ଣ ଛାମୁରେ ପ୍ରମଲକ୍ଷ୍ମି ଯେ କହିଲେ ।
ଯେ ଭବରେ ପୂଜାବିଧି କମଳା ବୋଇଲେ ।।୨୨୨।।

ଲକ୍ଷ୍ମି କହୁଥିଲେ ଯାଇ ଅଜାଙ୍କ ଛାମୁରେ ।
ଭବେ ବଳରାମ ଦାସ କଲେକ ବିସ୍ତାର ।।୨୨୩।।

ଲକ୍ଷ୍ମି ଜେ ପୁରଣ ସାଶ୍ର ସଂପୂର୍ଣ୍ଣ ହୋଇଲ ।
ଯେଉଂ ଭବେ ଥିଲ ସେହି ଭବେ ଲେଖା ହେଲ ॥୨୨୪॥

ଆହେ ଶୁଞ୍ଝ ଜନମାନେ ଦୋସ ନ ଧରିବ ।
ସୁଦ୍ଧ ଯେ ଅସୁଦ୍ଧ ପଦ ପୁରଇ ଗାଇବ ॥୨୨୫॥

ପଡ଼ିଆ ଉଠିଆ ପଦ ହୋଇଥିବ ଅବା ।
ଧରି ପୁରି ସୁଦ୍ଧମନେ ସନ୍ତୋଷେ ଗାଇବା ॥୨୨୬॥

ଲକ୍ଷ୍ମି ନାରୟଣ ନାମ ନିରନ୍ତରେ ଘୋଷ ।
ଅନ୍ତକାଳେ ବଇକୁଣ୍ଠ ପୁରେ କର ବାସ ॥୨୨୭॥

ଜୟ ଜୟ ଲକ୍ଷ୍ମି ମାଗୋ ଜୟ ନାରୟଣ ।
ଭବେ ବଳରମ ଦାସ ପଶିଲ ସରଣ ॥୨୨୮।

ଇତି ଶ୍ରୀ ଲକ୍ଷ୍ମି ପୁରଣ ସଦା ଜୟେ ସମ୍ପୁର୍ଣ୍ଣ ॥ ଯଥା ଦୃଷ୍ଟି ତଥା ଲେଖନ ଶ୍ରୀ ଶ୍ରୀ ॥ ଭିମସ୍ୟାପି ରଣେ ଭଙ୍ଗୋ ମୁନେରପି ମତି ଭ୍ରମ ॥ ଯଦି ସୁଦ୍ଧ ମସୁଦ୍ଧଂବା ମମଦୋଷ ନ ବିଦ୍ୟତେ ॥ ଭଗ୍ନ ପୃଷ୍ଟଂ କଟୀ ଗ୍ରୀବଂ ତୁଲ୍ୟ ଦୃଷ୍ଟି ରଧୋମୁଖ ॥ ଦୁଃଖେନ ଲିଖିତଂ ଗ୍ରନ୍ଥଂ ପୁତ୍ରବତ୍ ପରି ପାଳୟେତ୍ ॥ ଶ୍ରୀ ଶ୍ରୀ ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟେକଶ୍ୱର ବାରଧି ବୀରବର ପ୍ରତାପ ଶ୍ରୀ ମୁକୁନ୍ଦ ଦେବ ମହାରଜାଙ୍କର ସମସ୍ତ ଶୁଭ ଅଙ୍କେ ଶ୍ରୀ ରଘୁନାଥ ଶେଖର ଦେବ ମହାରଜାଙ୍କ ଶୁଭ ରାଜ୍ୟ ରାଙ୍ଗପୁର ନାଗର ପ୍ରାଗଣାରେ ହରିହର ମହାପାତ୍ରଙ୍କର ରଚୁଡିରେ ମାଘ ଶୁକ୍ଳ ସୋମବାର ଶ୍ରୀପଞ୍ଚମୀ ଦିନ କୋଇଲି ନଦୀ ତଟରେ ରିଢଂ ଗ୍ରାମରେ ଏ ପୁସ୍ତକ ବଢ଼ିଲ । ବେଳ ଚଉଦ ଘଡ଼ି ସରିକି ସଦାଜୟେ ସମ୍ପୁଂର୍ଣ୍ଣ ॥ ହେ ସାଧୁ ସୁଜ୍ଞ୍ୟଜନ ଯା ଥିଲ ନଥିଲ ପୁରେଇ ଗାଇବ ॥ ଲେଖନ କାରକୁ ଦୋସ ନ ଦେବ । ଯାହା ଅଦୃଶ୍ୟରେ ଥିଲ ତାହା ଲେଖିଲି । ଶ୍ରୀ ଲକ୍ଷ୍ମି ନାରୟଣ ରକ୍ଷା କରିବେ ॥ ଅରକ୍ଷିତ ବିପ୍ର ଚୂଡ଼ାମଣି ପାଢ଼ିକିଂ ॥ ଶ୍ରୀ ଗୁରୁ ଗୋବିନ୍ଦ ଚରଣେ ସରଣ ॥ ମମ ଶ୍ରୀ ସରସ୍ୱତି ଚରଣେ ସରଣ ॥

———

# ଚାଣକ୍ୟ ସାର ସଂଗ୍ରହଂ (ତାଳପତ୍ର ପୋଥି)

ଶ୍ରୀ ଗଣେଶାୟ ନମଃ ।। ନାନା ଶାସ୍ତ୍ରୋଦ୍ଧୃତଂ ବକ୍ଷେ ରାଜନୀତି ସମୁଚ୍ଚୟଂ ।। ସର୍ବବୀଜ ମିଦଂ ଶାସ୍ତ୍ରଂ ଚାଣକ୍ୟ ସାର ସଂଗ୍ରହଂ ।। ୧ ।। ଅର୍ଥଃ ନାନା ଶାସ୍ତ୍ର ମାନଙ୍କରୁଂ ଉଦ୍ଧୃତ ବୋଇଲେଂ ବାହାର କରି ଏ ଜେ ଚାଣିକ୍ୟ ନାନା ଗ୍ରନ୍ଥ ରାଜନୀତି ଆଦି ସମୁଚ୍ଚୟ କରି କହୁଅଛିଁ ।। ଏ ଗ୍ରନ୍ଥ କେମନ୍ତ ଅଟଇ ।। ସାର ଅଟଇ ।। ଶ୍ଲୋକଃ ।।

ନୀତି ଶାସ୍ତ୍ରଂ ପ୍ରବକ୍ଷାମି ଚାଣିକ୍ୟେନ ଯଥୋଦିତଂ
ଯେନ ବିଜ୍ଞାନ ମାତ୍ରେଣ ନରେ ଭବତି ପଣ୍ଡିତଃ ।।

।। ଅର୍ଥଃ ।। ଚାଣିକ୍ୟରେଂ ଜେଉଂ ଅର୍ଥ ଉଦିତ ହୋଇଲା ନୀତି ଶାସ୍ତ୍ରକୁ ଆଦି କରି ତାହା କହୁଅଛିଁ ।। ଜେଉଁ ଅର୍ଥ ଚାଣକ୍ୟର ଜ୍ଞାତବ୍ୟ ମାତ୍ରେକ ପ୍ରାଣି ସୁବୁଦ୍ଧ ପଣ୍ଡିତ ହୋଇ ।। ଶ୍ଲୋକଃ ।।

ତଦ ହଂସ ପ୍ରବକ୍ଷାମି ନରେ ଯସ୍ୟାର୍ଥ କାରଣାତ୍
ଲଭତେ ସର୍ବତୋ କୀର୍ତ୍ତିଂ ବଂଶଂ ସର୍ବତ୍ର ବର୍ଣ୍ଣନାଂ ।।

।। ଅର୍ଥଃ ।। ନର ଜେ ମନୁଷ୍ୟମାନେ ଜେଉଂ ଗ୍ରନ୍ଥ ପଠନାର୍ଥ ଜ୍ଞାନରୁଂ ସର୍ବତୋ ଭବରେ ଯଶ କୀର୍ତ୍ତି ଲଭଇ ।। ଭଲ ମନ୍ଦ ଜାଣଇଂ ।। ତାହା ମୁଁ କହୁଅଛିଂ ।। ଶ୍ଲୋକଃ ।।

ମୂର୍ଖ ଶିଷ୍ୟୋପଦେଶେନ ଦୁଷ୍ଟ ସ୍ତ୍ରୀ ଭବନେ ଷୁଚ ।
ଦ୍ୱିଷଣଂ ସପ୍ରୟୋଗେଣ ସିଦ୍ଧତୋଽପିନ ସିଦ୍ଧତି ।।

।। ଅର୍ଥଃ ।। ମୂର୍ଖ ଶିଷ୍ୟକୁ ଜେଉଁ ଉପଦେଶ ।। ଦୁଷ୍ଟ ସ୍ତ୍ରୀ ଘେନି ଜେଉଁ ଗୃହବାସ ।। ଶତ୍ରୁଠାରେ ଜେଉଁ ପ୍ରିତି ପ୍ରୟୋଗ ଏ ସିଦ୍ଧ ହେଲେ ହେଂ ତାହା ଅସିଦ୍ଧ ବୋଲି ଜାଣିମ ।। ଏତେ କଥାରେ ଯଶଶ୍ରୀ ହାନି ହୋଇ ।। ।। ଶ୍ଲୋକଃ ।।

ଯଶ ପୁତ୍ରୋ ବଶୀଭର୍ତ୍ତୁ ଭାର୍ଯ୍ୟା ଛନ୍ଦାନୁ ବର୍ତ୍ତିନି
ବିଭବେଯତି ସନ୍ତୋଷଃ ସ୍ୱର୍ଗସ୍ତସ୍ୟ ଇହୈବହ ।।

॥ ଅର୍ଥଃ ॥ ଜାହାର ପୁତ୍ର ଭର୍ଯ୍ୟା ବଶବର୍ତ୍ତୀ ॥ ସମ୍ପତ୍ତି ପୂର୍ଣ୍ଣ ଥାଇ ॥ ଆପଣ ସମଦର୍ଶି ହୋଇ ॥ ଏମନ୍ତ ଲୋକର ସ୍ୱର୍ଗ ଏହିଠାରେ ॥ ଇତ୍ୟାଦି

× × × ×

ନ ଧର୍ମ ଶାସ୍ତ୍ରଂ ପଠନେ ଚ କାରଣଂ ନ ସ୍ୱପି ବେଦାଧ୍ୟୟନେ ଦୁରାତ୍ମନଃ
ସ୍ୱଭାବ ଏବାତ୍ର ତଥାପି ଗୀୟତେ ଯଥା ପ୍ରକୃତ୍ୟା ମଧୁରଂ ଗବାଂ ପୟଃ ॥

॥ ଅର୍ଥଃ ॥ ଦୁର୍ଜନ ଲୋକର ବେଦାଧ୍ୟୟନ କଲେ ହେଁ ଜ୍ଞାନ ନୋହଇ ॥ ଧର୍ମ ଶାସ୍ତ୍ର ପଠନ କଲେ ହେଁ ଜ୍ଞାନ ନୋହଇ ॥ ଦୁର୍ବୁଦ୍ଧି ନ୍ୟାୟରଂ ଜେ ସୁବୁଦ୍ଧି ଆପଣା ସ୍ୱଭାବ ବଶରୁଂ ବିଦ୍ୟା ପଠନ କଲେ ହେଂ ଅତ୍ୟନ୍ତ ଜ୍ଞାନବନ୍ତ ହୋଇ ॥ କ୍ରମେ ଗୁରୁଂ ଉପଦେଶରୁଂ ॥ ସମସ୍ତ କଥା ଜାଣଇଂ ॥ ପରୋପକାରୀ ହୋଇ ॥ କାହାର ପ୍ରାଏ ॥ ଜେମନ୍ତ ତ ଗାଇ ଆପଣା ବଶରଂ ତୃଣାଦି ଚରଇ ॥ ଉତ୍ତମ କ୍ଷୀର ଦିଅଇ ॥ ସୁବୁଦ୍ଧ ଲୋକ ସେହି ପ୍ରକାରେଂ ଆପଣା ପ୍ରକୃତି ବଶଂରଂ ଜାଣଇଂ ॥ ଶ୍ଳୋକ ॥

ସସ୍ୟ ନାସ୍ତି ସ୍ୱୟଂ ପ୍ରଜ୍ଞା ଶାସ୍ତ୍ରଂ ତସ୍ୟ କରୋତି କିଂ
ଲୋଚନାଭ୍ୟାଂ ବିହିନୋଽପି ଖର୍ପଣଃ କିଂ କରିଷ୍ୟତି ॥

॥ ଅର୍ଥଃ ॥ ଜେଉଂ ପ୍ରାଣୀର ବୁଦ୍ଧି ନାହିଃ ସେ ଶାସ୍ତ୍ର ପଠନ କରି କି କରିବ ॥ କାହାର ପ୍ରାଏ ॥ ଜେମନ୍ତଟି ଚକ୍ଷୁ ନ ଥାଇ ମନୁଷ୍ୟ ଧେ ଦର୍ପଣ କି କରିବ ॥ ଶ୍ଳୋକଃ ॥

ମାତା ଚୈବ ବିଷଂ ଦଦ୍ୟାର୍ପିତା ଚ କ୍ରୟ ବିକ୍ରୟୀ
ରଜା ହରତି ସର୍ବସ୍ୱଂ ତତ୍ର କା ପରିବେଦନା ॥

॥ ଅର୍ଥ ॥ ମାତା ହୋଇ ଯେବେ ବିଷ ଦେବ ॥ ପିତା ହୋଇ ଜେବେ କିଣିବ ଅର୍ଥାତ୍ ହାନି ଲଭ କରିବ ॥ ରଜା ହୋଇ ଜେବେ ସର୍ବସ୍ୱ ହି ନେବ ତହିଂ ବେଦନା ଆଉ କାହାକୁ କହିବ ॥ ଶ୍ଳୋକ ॥

ମୂର୍ଖୋ ଦ୍ୱିଜୋ ଗୋରସ ବିକଇ ଚ ଗ୍ରାମାନ୍ତବାସି ବୃଷଳୀ ପତିଶ୍ଚ ।
ଏଣୋଽପି ଜବୋ ଖଲୁଚିହ୍ନ ସେନୋ ଯତ୍ର କୃତି ସ୍ତତ୍ର ଗୁଣା ବସନ୍ତି ॥

ଇତି ଶ୍ରୀ ଚଣକାୟେଣ କୃତଂ ଗ୍ରଣିକ୍ୟଂ ସମାପ୍ତଂ ।। ଭୀମସ୍ୟାପି ରଣେଭଙ୍ଗୋ ମୁନିରପି ମତିଭ୍ରମଃ ।। ଯଦି ଶୁଦ୍ଧ ମଶୁଦ୍ଧଂ ବା ମମ ଦୋଷୋ ନ ବିଦ୍ୟତେ ।। ୦ ।। କୃଷ୍ଣ ତ୍ରାହି ।। ହରି ।। ଦ୍ବିଜରଜ ପତି ଲିଖିତଂ ମିଦଂ ପୁସ୍ତକଂ ।। ଶ୍ଳୋକଃ ।।

ଜଳାଦ୍ରକ୍ଷଂ ତୈଳାଦ୍ରକ୍ଷଂ ରକ୍ଷ ମାଂ ଶ୍ଳେଷ ବନ୍ଧନା ।
ଆଖୁଭ୍ୟ ପରହସ୍ତେନ ଏବଂ ବଦତି ପୋସ୍ତକଃ ।।

— : ୦ : —

## ବିର୍କେରା

ଶ୍ରୀ ଲକ୍ଷ୍ମୀଧର ନାୟକ (ଭୂୟାଁ) ବିର୍କେରା ଗ୍ରାମର ବାସିନ୍ଦା ଅଟନ୍ତି । ଏହାଙ୍କ ପୂର୍ବ ପୁରୁଷ ସ୍ବର୍ଗତ କୁଁ ନାୟକ, ମଣିଧର ନାୟକ, ମହେନ୍ଦ୍ର ନାୟକ, ଶ୍ରୀବତ୍ସ ନାୟକ ଥିଲେ । ଏମାନଙ୍କ ଅମଳରୁ ବ୍ୟବହୃତ ହେଉଥିବା ତାଳପତ୍ର ପୋଥି ମଧ୍ୟରୁ ଦୁଇଖଣ୍ଡି ପୋଥି ଯଥା ମହାଭାରତ ଏବଂ କାର୍ତ୍ତିକ ମାହାତ୍ମ୍ୟ ଲେଖକର ଦୃଷ୍ଟିଗୋଚର ହୋଇଅଛି । ମହାଭାରତ ପୋଥିର ପତ୍ରଗୁଡ଼ିକ ଉଈ ଖାଇ ନଷ୍ଟ ଖଣ୍ଡିତ ଆକାରରେ ପଡ଼ିଅଛି । କାର୍ତ୍ତିକ ମହାତ୍ମ୍ୟ ପୋଥିର କେତେକ ଜୀର୍ଣ୍ଣ ଖଣ୍ଡିତ ପତ୍ରରୁ ଏହାର ପରିଚୟ ଦିଆଯାଇପାରେ ।

### କାର୍ତ୍ତିକ ମାହାତ୍ମ୍ୟ (ତାଳପତ୍ର ପୋଥି)

### ଚତୁର୍ଥ ଅଧ୍ୟାୟ

ବ୍ରହ୍ମ ସମ୍ବାଦ ସ୍ତୁରିବର୍ଣ୍ଣି । ସ୍ତିରି ପୁରୁଷ ଯେବା ଜନ ।।
ବିନା ଅନ୍ତିମେ ବୋଧ ନୋହି । ବିଷ୍ଣୁ ଶ୍ରୀମୁଖେ ଛନ୍ତି କହି ।।

× × × ×

ସେ ପ୍ରଭୁ କୃପାରୁ ପ୍ରକାସ । ଭଣଇ ମହାଦେବ ଦାସ ।।

ଇତି ଶ୍ରୀମଦ୍ ପଦ୍ମ ପୁରାଣେ କାର୍ତ୍ତିକ ମାହାତ୍ମ୍ୟ ପୃଥୁ ନାରଦ ସମ୍ବାଦେ ନାମ ଚତୁର୍ଥ ଅଧ୍ୟାୟଃ ।।

## ସପ୍ତଦଶ ଅଧ୍ୟାୟ

× × ×

ତୁ ଯେ ପୁଚ୍ଛିଲୁ ଧର୍ମସୁତ । ତୁଳସୀ ସେବା ବିଷ୍ଣୁ ଭକ୍ତ ॥
ଏତେ ନିର୍ଣ୍ଣୟ କରି ଜାଣ । କହି ଅଛନ୍ତି ନାରାୟଣ ॥
ସେ ପ୍ରଭୁ ଭଗତ ବିଶ୍ୱାଂସ । କହଇ ମହାଦେବ ଦାସ ॥

ଇତି ଶ୍ରୀ ପଦ୍ମ ପୁରାଣେ କାର୍ତ୍ତିକ ମାହାତ୍ମ୍ୟେ ଅତି ସିଦ୍ଧ ସୁସିଦ୍ଧ ଚରିତ୍ରେ ନାମୋ ସପ୍ତଦସ ଅଧ୍ୟାୟଃ ॥

———

## ଟିମ୍‌ଯୋର

ଶ୍ରୀ ନିରଞ୍ଜନ ତ୍ରିପାଠୀ (ବ୍ରାହ୍ମଣ) ଟିମ୍‌ଯୋ ଗ୍ରାମରେ ବାସ କରନ୍ତି । ଏହାଙ୍କ ଘରର ପୋଥିର ନାମ ଶ୍ରୀ ସତ୍ୟ ନାରାୟଣ ଦୂର୍ଯ୍ୟନ୍ତ୍ର ଷିହ ପାଲ ଲେଖିତଃ ଲେଖକ ଦେଖିବାର ସୁଯୋଗ ପାଇ ତାହାର ପରିଚୟ ଦେଇଅଛି ।

### ଶ୍ରୀ ସତ୍ୟନାରାୟଣ ଦୂର୍ଯ୍ୟନ୍ତ୍ର ଷିହ ପାଲ୍ (ତାଳପତ୍ର ଖେଦା)

ପ୍ରଥମ ପତ୍ର :—

ଶ୍ରୀ ସତ୍ୟନାରାୟଣ ଦିର୍ଯ୍ୟନ୍ତ୍ର ଷିହ ପାଲ ଲେଖିତଃ

ଦସଦିଗପାଳଙ୍କ ବନ୍ଦନା ॥
କୃଷ୍ଣେଂର ପିରିତେ ହରି ବୋଲ ସଭଜନ ।
ସଂକଟ ପଡ଼ିଲେ ରଖେ ସତ୍ୟନାରାୟଣ ॥

ଏକମନେ ଏକ ଚିତ୍ତେ ଭଜ ନାରାୟଣ ।
ଦିଗପାଳ ବନ୍ଦଂ ସଙ୍ଗେ ହରି ଦୁଂଗାୟନ ॥

ପ୍ରଥମେ ବନ୍ଦିଲୁ ଆମ୍ଭି ଗୁରୁଙ୍କେ ପ୍ରନୀତି
ଜାହାର ପ୍ରସାଦେ ହଏ ଗିଷ୍ଟ ଫଳ ଶ୍ରୁତି ॥

ଏକମନେ ବନ୍ଦୁଂ ରାଧା କୃଷ୍ଣେର ଚରନେ
ପୃଥିବୀତେ ବାନ୍ଧଂଲୁ ଗୋଲେଖ ବୃନ୍ଦାବନେ ॥

ପ୍ରଥମେ ବାନ୍ଧଂଲୁ ଆମି ଗଉରି ନନ୍ଦନ
ବ୍ୟାଘ୍ର ଚର୍ମ ପରିଧାନ ମୁସିକ ବାହାନ ।

ଅରୂପ ସହିତେ ବନ୍ଦୁ ଦେବ ଦିବାକର ।
କାତ୍ୟାୟନୀ ସହିତେ ବନ୍ଧଂଲୁ ଜେ ହରିହର ।।

ଲକ୍ଷ୍ମି ସରସ୍ୱତି ବନ୍ଦୁ ଲେଟି ସିୟାକ୍ଷିତ
କାଲିକାଟେ କାଲିକ ବନ୍ଦୁଂ ଗଙ୍ଗା ଭଗିରଥ ।।

× × ×

ଠିକେ ଠିକେ ଦେବଗଣ କରିଲୁ ବନ୍ଦନ ।
ଦିଗପାଳ ବନ୍ଦଂନାଯେ ହୋଇଲା ସମ୍ପୁର୍ଣ୍ଣ ।।

ଶ୍ରୀକ୍‌ବିକଣ୍ଠ ଗାଏ ଯେ ନାରୟଣ ପାଏ ।
ହରି ହରି ହରି ହରି ବନ୍ଦନା ହାରିଲା ସାଏ ।।

।। ଶ୍ରୀ ଗଣସାଏ ନମ ।।

ସୁନ ସର୍ବ ବୀରଦରେ କାଲ ମେରା ଛାନ୍ଦ
ଏକ ଚିତ୍ତ ହୟାଂ ସୁସ ମଧୁର ପ୍ରବାନ୍ଦଂ ।

ଅମ୍ବିକା ସଗରେ ଏକ ଘଛିଲ ମହାରଜା ।
ଦୁର୍ଯସବାଲିୟାଂ ନାମ ରସେ ମହାତେଜା ।।

ପ୍ରତାପୀ ନୃପତି କତ ଜିନୀ ଅଂଛେ ବଲେ ।
ଇନ୍ଦ୍ରରେ ସମାବାଲ ଅବନୀ ମଣ୍ଡଲେ ।।

ଅସମ୍ଭବ ଯୁଦ୍ଧେ ରଜା ଜିନେ ସର୍ବଜନ ।
ଚନ୍ଦ୍ରଜିତ ବୋଲିକରି ତାହାର ନନ୍ଦନ ।।

କନ୍ଦର୍ପ ଜୀନୀୟା ରୂପ ଦେଖିତେ ସୁନ୍ଦର ।
ସୁବୁଦ୍ଧି ସୁବିଦ୍ୟାବନ୍ତ ଗୁନେର ସାଗର ।।

× × ×

ପିତା ପୁତ୍ର ପରିଚୟ ହୋଇଲା ତକ୍ଷଣେ
ପ୍ରଭୁର ପୁରାନ କବି-କର୍ଣ୍ଣ ରସେ ଭଣେ ॥
କୁମାର ବଲେ ସବା ବା କରି ନିବେଦନ
ଦୂର କର ଦୁଃଖ ଶୋକ ସ୍ଥିର କର ମନ ॥

× × ×

ଶ୍ରୀ କବି ବର୍ଣ୍ଣଂତେ ଗାଏ ନାରାୟଣ ପାଏ
ହରିବୋଲ ଚନ୍ଦ୍ରାଜିତା ପାଲା ହେଲ ସାଏ ॥ ଇତି ଶ୍ରୀ ॥

ଭିମସ୍ୟାପି ରଣେ ଭଙ୍ଗୋ ମୁନେ ରପି ମତି ଭ୍ରମ ॥ ଯଦି ସୁଦ୍ଧ ମସଦ୍ଧ ମା ମମ ଦୋଷ ନ ବିଦ୍ୟତେ ॥ ହେ ସୁଜ୍ଞଜନମାନେ ସୁଧ ଅସୁଧ ପୁରେଇ ଗାଇବା । ଲେଖନ କାରକୁ ଦୋସ ନ ଦେବ ॥ ଯଥା ଦୃସ୍ୟ ତଥା ଲେଗ୍ନଃ ॥ ଶ୍ରୀ ସତ୍ୟନାରାୟଣ ବାବା ରକ୍ଷା କରିବେ ଅରକ୍ଷିତ ବିପ୍ର ନୀଳକଣ୍ଠ ପଣ୍ଡାଙ୍କୁ ॥ ଶ୍ରୀ ସରସ୍ୱତୀ ଚରଣେ ସରଣ ॥ ଶ୍ରୀ ସତ୍ୟନାରାୟଣ ଚରଣେ ସରଣ ॥ ଶ୍ରୀ ଦୁର୍ଗା ଦେବୀ ଚରଣେ ସରଣ ॥ ଶ୍ରୀ ବଦ୍ୟନାଥ ବାବାଙ୍କ ଶ୍ରୀ ଚରଣେ ସରଣ ॥ ❊ ॥

— : ୦ : —

## ତୁମ୍ବକେଲା

ସ୍ୱର୍ଗତ ମାଧବ ନନ୍ଦ ଯାଜପୁରରୁ ଆସି ନାଗରା ରାଜ୍ୟରେ ବାସ କଲେ । ଏହାଙ୍କ ଠାରୁ ବଂଶ ବୃଦ୍ଧି ହୋଇ ନାଗରାର ସର୍ବତ୍ର ନନ୍ଦ ବଂଶ ବ୍ୟାପ୍ତ ହୋଇଅଛନ୍ତି ।

ମାଧବ ନନ୍ଦଙ୍କର ଦୁଇ ପୁତ୍ର । ବଡ଼ ଧରଣୀଧର । ସାନ ଶ୍ରୀଧର । ଶ୍ରୀଧର ନନ୍ଦଙ୍କର ଦୁଇ ପୁତ୍ର । ବଡ଼ ଜଗବନ୍ଧୁ ନନ୍ଦ, ସାନ ବଳରାମ ନନ୍ଦ । ଜଗବନ୍ଧୁଙ୍କ ପୁତ୍ର ଗଙ୍ଗାଧର ନନ୍ଦ ତୁମ୍ବକେଲାର ଗଞ୍ଜୁ ଥିଲେ । ଏହାଙ୍କ ପୁତ୍ର-ମାନଙ୍କ ମଧ୍ୟରୁ ଶ୍ରୀ ଗୋକୁଳ ନନ୍ଦ ଅଧୁନା ତୁମ୍ବକେଲା ମୌଜାର ବାସିନ୍ଦା ଅଟନ୍ତି । ଶ୍ରୀ ଗୋକୁଳ ନନ୍ଦଙ୍କ ଗୃହରୁ ଲେଖକ ଦୁଇଖଣ୍ଡି ଚିକିତ୍ସା ଶାସ୍ତ୍ର ଏବଂ ଖଣ୍ଡିଏ ପରାସର ଗୃହ୍ୟ ସୂତ୍ର ତାଳପତ୍ର ପୋଥି ସଂଗ୍ରହ କରି ପର୍ଦ୍ଧ ପରିଚୟ ନିମ୍ନରେ ଦେଇଅଛି ।

## ଶ୍ରୀ ବଦ୍ୟ ସାହାସ୍ର ରସ୍ନରତ୍ନାଙ୍କର ଲେଖା (ତାଳପତ୍ର ପୋଥି)

ଆରମ୍ଭ :—ଶ୍ରୀ ବଦ୍ୟ ସାହାସ୍ର ରସ ରତ୍ନାଙ୍କର ଲେଖା ।। ଶ୍ରୀ ଗଣେଶାୟଂ ନମଃ ।। ଧନ୍ୟନ୍ତ୍ରି ଚରଣେ ସରଣ ।। ପ୍ରଣମଂ ଜଗଦୁତ୍ପତ୍ତି ସ୍ଥିତି ସଂହାର କାରଣଂ ।। ସ୍ୱର୍ଗାପବର୍ଗଯୋନିତ୍ୟଂ ତ୍ରୈଲୋକ୍ୟ' ସରଣଂ ଶିବଂ ।। ସତକ୍ଷିମ ନଜାନାମି ମମ ରକ୍ଷତି ସରସ୍ୱତି ।। ବାସୁଦେବ ବିନାଏକଂ ଚିତ୍ରଗୁପ୍ତଂ ନମସ୍ତୁତେ ।। ଓ ।। ଧେନୁଦଣ୍ଡଂ ସହସ୍ର ଶଙ୍ଖଂ ଶସ୍ତ୍ର ଶଙ୍ଖଂ ତ୍ରିଶୁଳ ଶୁଳି ନିଶୁଳି ।। ବଦ୍ଧଠାବର ଚଳତେ ନଯାନିତ୍ୟ ମୃତୁ ସମ୍ଭବେ ।। ଅଜାନଂ ଗଣକଂ ମୂର୍ଖଂ ମନ୍ତ୍ରିନାଂ ଶାସ୍ତ୍ର ବର୍ଜିତଂ ।। ସଡ଼ିଗିତା ନୌକୋ ବଦ୍ଧ ତ୍ରିଡ଼ିନା ଯମ ଦୁତକଂ ।।୧।। ଆସ୍ୱର୍ଗିକ ବାର୍ତ୍ତା ଯେଉଂଜନ ଭଣେ ।। କାରଣ ପୁତ୍ର ତାର ନାମ ବଖାଣେ ।। ତିଥିବାର ମିଶାଇଣ ରୋଗିର ଭଲ ଭନ୍ଦ ତକ୍ଷଣେ ଜାଣ ।। ମାସ ସବୁ ଠୁଳ କରି ଜାଣ ସାତେ ହରଣ ।। ଲବଧ ପାଇ ଯମ ଘସ୍ତୁଂ ତତକ୍ଷଣେ ଆଣ ।। ଏକ ତିନି ପାଞ୍ଚ ।। ୧।।୩।।୫।। ପାଇବୁ ଯେଂବ ଯମଘରୂଂ ମଲୁ ଆଣିବୁ ତେବେ । ହେ ବଦ୍ୟ ସିଂହ ଜିବୁ ।। ଦୁଇ ଚ୍ଚରି ଛ ଯଦି ହେବ ସ୍ଥଏ ୨।।୪।।୬।। ସେଠାକୁ ନଜିବୁ ମଲୁ ନ ଜିଏଂ ।। ହେ ବଦ୍ୟରାଜ ସେ ଠାକୁ ନଜିବ ।। ଗଲେ ଅଜସ ମିଳିବ ।। ଶ୍ରୀ ।। ବ୍ୟାଧି ତିନି ହୁଂ ସ୍ୱର ବ୍ୟାଧି ନାହିଂ ।। ବିସମ ସନ୍ଧି ନ ଜାଣନ୍ତି କେହି ।। ବଇଦେ ବୋଲନ୍ତି ବହୁତ ବ୍ୟାଧି । ତେଣୁ କରି ସେହୁ ବ୍ୟାଧି ଅସାଧି ।।ଶ୍ରୀ।। ମୂତ୍ର ଲକ୍ଷଣ ମାହ ।। ପ୍ରଭତେ ମୂତ୍ରଂ ସଗବେଥ ଚିକିଛକ ।। ଧୃତାତ ଯେ ତୃଣା ଶ୍ରେବା ତୈଳ ବିନ୍ଦୁ ବିନିକ୍ଷିତ ପତ୍ ।। ଆଦ୍ୟ ଧାରା ପରିତେଜ ମଧ୍ୟ ଧାରମ୍ ମୁଦ୍ଧରେତ୍ ।। ମୃତ୍ତିକା କାଂସ ପାତ୍ରେଣ ଧରେ ମୂତ୍ର ପ୍ରୟନର ।। ଅର୍ଥଃ ।। ପ୍ରଭତେ ରୋଗି ମୂତ୍ର ଧରିବ ।। ଆଗ ପଛ ଛାଡ଼ି ମଧ୍ୟ ଧାର ଧରିବ ।। ମାଟୀ ପାତ୍ରେ କାଂସ ପାତ୍ରେ ବା ସୂର୍ଯ୍ୟ କିରଣରେ ମୁହୁର୍ତ୍ତେ ରଖିବ ।। ତୃଣାଗ୍ରେ ତୈଳ ପକାଇବ ।। ଶ୍ଳୋକଃ ।। ତୈଳ ପତନ ମାତ୍ରେଣ ଗତି ବିସ୍ତାର୍ଯ୍ୟ ଗଛଂତି ।। ଶ୍ରୋଣିତଂ କଟୁତୈଳଂ ବା ଦୃସତେ ମୁତ୍ର ବର୍ଣ୍ଣକଃ ।। ପିତଜ୍ଞା କୋପ ବିଜାନି ଜାତ ଦାତନ୍ତ୍ରି ଚିକିସ୍ଥକଃ ।। ତତ୍ର ସ୍ଥାନ ପୟଃ ପେଟୀ ଶାଳି ଅଣ୍ଡଂ ବିଧାପୟେତ୍ ।। ଛାଗ ମୂତ୍ରଂ ଗୋମୂତ୍ରଂ ବା ମାତୁଙ୍ଗଃ ତୃଂଗଦଳଂ ପିବା ।। ପିତ ଶ୍ଳେଷ୍ମ ନ ଜାନାମି କାରଣଂ ମପି ଜାୟତେ ।। × × × ।। ଅର୍ଥଃ ପରିସ୍ରା

ହେବେ ରକ୍ତ ବର୍ଣ୍ଣ ଦିଶଇ ।। ତଲ୍ୟ ପଡ଼ିଲେ ତରଳି ଜାଇ ଜାଣିମ ପିତ୍ତ ଅଧିକ । ଏହାକୁ ସ୍ନାନ କରଇବ ।। ଚନ୍ଦନ ପଖାଳ ଦେବ ।। ×× ।। ଇତ୍ୟାଦି ।

ବିଭିନ୍ନ ଲକ୍ଷଣ ଯଥା :—ନେତ୍ର ଲକ୍ଷଣ ମାହ, ନାଡ଼ି ଲକ୍ଷଣ ତ୍ରୟୋଦସ ସନ୍ନିପାତ, ପରିସ୍ରା ଲକ୍ଷଣ, ବ୍ୟାଧି ଲକ୍ଷଣ, ପିତ ଲକ୍ଷଣ କହିବା; ବାତ ଶ୍ଳେସା ଲକ୍ଷଣ, ପିତୋତର ସନ୍ନିପାତ, ସ୍ତିରି ଭୋଗ ବିଗ୍ଧର ଏ, ବେଳାବେଳ ବିଗ୍ଧର ।। ସଙ୍କ୍ରାନ୍ତି ଅମାବାସ୍ୟା ଚତୁର୍ଦସୀ ଦିନ ।। ପ୍ରତିପ ଏକାଦସୀ ପୌର୍ଣ୍ଣମି ପୁଣ ।। ଚଉଠି ଅଷ୍ଟମି ପାକ ଅସ୍ତୁବେ ।। ସ୍ତିରି ରମଣ ଜେ କରଇ ସଧେ ।। ଆୟୁଷ ହାନି ନିଜେ ହୁଅଇ ତାର ।। ରୋଗ ଆସେ୍ରକରେ ତାର ସରିର ।। ଅଜ୍ଞାନ ସ୍ତିରିକୁ ଜେହୁ ହରଇ ପୁରିଷ ବ୍ୟାଧି ତାହାକୁ ହୁଅଇ ।। ସ୍ତିରିକୁ କ୍ଷୁ କ୍ଷୁଦ୍ରା ହୁଅଇ ପୁଣ ।। ଏ ପାପେ ଆୟୂଷ୍ଟ ଘଟଇ ଜାଣ ।। ପେଟକୁ ନ ଖାଇ ଉବେଳେ ସ୍ନାନ ।। ବେଳାବେଳରେ ନକରେ ଭୋଜନ ।। ତିକ୍ଷ ପାଇଣ ବାତ ପିତ ବଳେ ।। ଏଣୁ ଆଦେଢ଼ା ଅଢ଼ାଇ ଜ୍ୱରକରେ ।। ଏଥିକି ଓଷଧ ତୁମ୍ଭେ କହିବ ।। ମନ୍ତ୍ର ମୌସଧି ଏଥିରେ ଦେବ ।। + + + ।। ଇତ୍ୟାଦି ବହୁବିଧ ରୋଗର ଲକ୍ଷଣ ଏ ଗୁଡ଼ିକର ଔଷଧର ନାମ (ଜଡ଼ି ବୁଟୀ), ଔଷଧଗୁଡ଼ିକର ପ୍ରସ୍ତୁତି କରଣ ପ୍ରୟୋଗ ବିଧି ଗଦ୍ୟ ପଦ୍ୟାକାରରେ ଉକ୍ତ ଚିକିତ୍ସା ଶାସ୍ତ୍ରରେ ବିସ୍ତୃତ ଭାବେ ବର୍ଣ୍ଣିତି ହୋଇଅଛି । ଏଠାରେ ଗୋଟିଏ ଔଷଧର ଶ୍ଳୋକ ଏବଂ ପଦ୍ୟର ନମୁନା ଦିଆଯାଇ ପାରେ :—

ରସେ ରସଗଜ ଯେ :— ।। ଶ୍ଳୋକଃ ।। ହରବିଜ କାମେ ନିକର ସମଭାଗ । ଦିଗଗହରଗିଂ ତେଜି ବାଳକ ଜେବେ ।। ସିଦ୍ଧରସବଟୀ ହୋଇବାକ ତେବେ ।। ଥାନ ଜାଣି ଜେବେ ପାନେକ ଦିଅଇ ।। ମଇଳିବ ଘରକୁ ଲେଉଟି ଆସଇ ।। ଅର୍ଣ୍ଣିନିକୁମାରେ କହିଲେକସାର ।। ରସେ ରସଗଜ ନାମ ଏହାର ।। ଅନୁପାନ ଅଦା ରସରେ ଦେବ ।। ବ୍ୟାଧି ଅନୁକ୍ରମେ ପଥି ବିହିବ ।।

ପୋଥିର ଶେଷ ଭାଗରେ ନିଦାନ ନାମରେ କେତେକ ଔଷଧର ପ୍ରସ୍ତୁତି ଏବଂ ପ୍ରୟୋଗ ବିଧିମାନ ବର୍ଣ୍ଣିତ ହୋଇଛି । ନିମ୍ନରେ ନିଦାନ ଭାଗର କେତେକ

ଔଷଧର ନାମ ପାଠକଙ୍କ ଗୋଚରାର୍ଥେ ଦିଆଯାଇ ଶ୍ରୀ ବଦ୍ୟ ସାହାସ୍ର ରସରତ୍ନାଙ୍କର ଲେଖା ତାଳପତ୍ର ପୋଥିର ପରିଚୟ ସମାପ୍ତି କରାଯାଇ ପାରେ ।

## ନିଦାନ

ବୃଦ୍ଧାନ୍ତର ରସ, ଇଛାଭେଦି ରସ, କୁମୁଦାକର, ଇଛାଭେଦି ମହୁରା ସୋଧନ, କାଳ ବେତାଳ ରସ, କଫକେତୁ ରସ, ଚକ୍ଷୁ ରୋଗକୁ, ଚନ୍ଦ୍ରଉଦେ ବଟୀକା ମହୁଲ୍ୟାକୁ ରଙ୍ଗରଜ ବଟିକା, ରମାୟଣ ବଟିକା ଜାତିଫଳ ବଟିକା, ପରିସ୍ରା ରହିବାକୁ ଆନନ୍ଦ ଭୈରବ ରସ, ତାଳମୂଳି ଗଛର ପ୍ରୟୋଗ, ବନ୍ଧ୍ୟା ପ୍ରକରଣୟେ "ଇକ୍ଷଣା ମୁଳ ପୁସା ନକ୍ଷେତ୍ରେ ଆଣିବ ।। ଦୁଧରେ ବାଟି ପିଆଇବ ।। ଦୂଧ ଘତ ଭୁଞ୍ଜିବ ।। ସପ୍ତାକେ ବନ୍ଧ୍ୟା ଗର୍ଭବତୀ ହୋଇ" ।।), ପ୍ରସବ ସ୍ଥିରିକି ଓଷଧ, ସ୍ତନ ହରା, ପ୍ରସବ କରଣ + + + ଅଶ୍ୱଗନ୍ଧାଦି ମହା-କାମେଶ୍ୱର ମୋଦକ, ବଧିରକୁ (ଶେଷ)

ଭିମସ୍ୟାପି ରଣେ ଭଙ୍ଗୋ (ଢେଂଗା) ମୁନି ରପି ମତିଭ୍ରମ ଯଦି ସୁଧ ମସୁଧମ୍ବା ମମଦୋସ ନ ବିଦ୍ୟତେ । ଏହି ବୃହତ୍ ଚିକିତ୍ସା ଶାସ୍ତ୍ରରେ ଲିଖନ-କାରର ନାମ ଦେଖିବାକୁ ମିଳେ ନାହିଁ ।



## ବୈଦ୍ୟଶାସ୍ତ୍ର ତାଳପତ୍ର ପୋଥି (ଦ୍ୱିତୀୟ)

ଆରମ୍ଭ :—

ରୋଗହିନେ ଗୁଣ ସମାପ୍ତ
ରୋଗ ଚ ବୃଦ୍ଧେ ରୋଗ ବର୍ଦ୍ଧନ
ଅର୍ଥିକ ମାଧବ କର ବୈଦ୍ୟ
ସାହାଶ୍ର ଲିକ୍ଷତେ ।
ମୁତ୍ର ପରିକ୍ଷା ।

ଶ୍ରୀ ଗଣେଶାୟ ନମଃ ।। ମୁତ୍ର ପରିକ୍ଷା ଲକ୍ଷଣ ।। ଅଥ ଦିଗଭଗ ଲକ୍ଷଣ ।। ଅଥ ବାଊ ପିଉ ସ୍ଲେଷ୍ମାଉ ପ୍ରତି ।। ଅଥ ନାଡ଼ି ଲକ୍ଷଣ ।। ଅଥ ନିଦାନ ।। ସନିପାତ ଜନ୍ମ ।। ସନିପାତ ଲକ୍ଷଣ ।। ପଞ୍ଚ ହିକ୍‌କା ଚିକିତ୍ସା କହିବା ।। ଭେଦିନା ରଜ ରସ ଏ ।। ଇଛା ଭେଦି ରସ ।। (ଇତ୍ୟାଦି ଉପରୋକ୍ତ ବିଷୟ ଗୁଡ଼ିକର ବିସ୍ତୃତ ବର୍ଣ୍ଣନା ହୋଇଅଛି) ଇତି ମାଧବ କରେଣ ପଞ୍ଚ କର୍ମ ବିଧି ସମାପ୍ତଂ ।।

ପିତ୍ତଜ୍ୱର ଚିକିତ୍ସା ପାଞ୍ଚନ ।। ଶ୍ଳେଷ ଜ୍ୱର ଚିକିତ୍ସା ।। ବାତଜ୍ୱର ଚିକିତ୍ସା ମାହ ।। ଅଥ ପିତ୍ତ ଶ୍ଳେଷ୍ମ ଜ୍ୱର ଚିକିତ୍ସା ।। କିରତାଦି ପାଞ୍ଚନ ଏ ନାଗରଦ୍ରି ପାଞ୍ଚନ ।। ଇତି ଶ୍ରୀ ମାଧବେ କରେ ବାତ ପିତ ଚିକିତ୍ସା ଜ୍ୱର ଚିକିତ୍ସା ସମାପ୍ତା ।।

ପିତ୍ତ ଶ୍ଳେଷ୍ମ ଜ୍ୱର ଚିକିତ୍ସା ।। ବିଶ୍ୱାଦି ପାଞ୍ଚନ ।। ପଟୋଲାଦି ପାଞ୍ଚନ ।। ପଞ୍ଚ ତିକ୍ତାଦି ପାଞ୍ଚନ ।। କଣ୍ଟକାର୍ଯ୍ୟା ପାଞ୍ଚନ ।। ବାତ ସ୍ଳେସ୍ମା ଜ୍ୱର ଚିକିତ୍ସା ।।
ଇତି ମାଧବ କରେ ବାତ ସ୍ଳେସ୍ମା ଜ୍ୱର ସମାପ୍ତ ଆଂସନିପାତ ଜ୍ୱର ଚିକିତ୍ସା ଶ୍ଳୋକ :—

ଆଦ୍ରକଂ ସ୍ୱରସ ଯୋପେତଂ ସୈନ୍ଧବଂ କଟୁକତ୍ରିକଂ ।। କଣ୍ଠେ-ଦ୍ୱାରୟତେ ବାସ୍ୟେ ନିଷ୍ଠିବନଂ ପୁନଃ ପୁନଃ ।। ଇତର୍ଥଃ ।। ସୁଣ୍ଠି, ପିପଳୀ ମରିଚ ସମରେ ଚୂର୍ଣ୍ଣ କରିବ ।। ଅଦାରସରେ ଅବଲେହନ କରିବ ।। ନାକରେ ନାସ ଦେବ ସନ୍ନିପାତ ଜ୍ୱର ନାସଇ ।

ଏହିଭଳି ଭାବେ ଉକ୍ତ ବୈଦ୍ୟ ଶାସ୍ତ୍ରରେ ନାନାବିଧ ଅସାଧ୍ୟ ରୋଗର ଲକ୍ଷଣ, ବନୌଷଧିର ପ୍ରସ୍ତୁତିକରଣ ଏବଂ ଔଷଧଗୁଡ଼ିକରେ ପ୍ରୟୋଗ ଆଦିର ବିଧି ବିଧାନ ସବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । ସର୍ବଶେଷରେ ଅଥ ନାନାଧି ବ୍ୟାଧିଠାରେ କହେରି ମନ୍ତ୍ର × × × ଲେଖାଯାଇ ପୋଥି ସମାପ୍ତ ହୋଇଅଛି । ଲିଖନକାରର ନାମୋଲ୍ଲେଖ ହୋଇନାହିଁ ।

—:୦:—

## ପଦ୍ମାସର ଗୁହ୍ୟସୂତ୍ର (ତାଳପତ୍ର ପୋଥି)

**ପୋଥିର ଆଦ୍ୟ ପତ୍ରରେ :—**

ଓଁ ରେଚକଂ ଦକ୍ଷିଣେ ଚ ନାକ୍ରଂ ପୁରକଂ ବାମ ମାଚରେତ୍ ।। ନାସାୟା କୃତ୍ୟ ଯଦାୟୁ ରୋଧଃ ପୁରକ ଉଚ୍ୟତେ ।। କୁମ୍ଭୋ ନିଶ୍ଚଳ ନିଶ୍ୱାସୋ-ଚ୍ଛିଦ୍ୟମାନାସ୍ତରେ ଚକଃ ।। ଅଙ୍ଗୁଷ୍ଠେନ ପୁଟଂ ଗ୍ରାହ୍ୟଂ ନାସାୟା ଦକ୍ଷିଣେ ନତୁ ।। କନଷ୍ଠା ନାମି କାଭ୍ୟାଂ ଚ ବାମ ପ୍ରାଣସ୍ୟ ସଂଗ୍ରହେ ।। ନିରୋଧା ଜ୍ଜାୟତେ ବାୟୁର୍ବାୟୋରଗ୍ନିଶ୍ଚ ଜାୟତେ ।। ଅଗ୍ନେରାପଃ ପ୍ରଜାୟନ୍ତେ ତତସ୍ତ ଶୁଦ୍ଧତେ ତ୍ରିଭି ।।

ରେଚ ଷୋଡ଼ଶ ମାତ୍ରାଭି ପୁନ ଦ୍ୟର୍ତ୍ତିଂଶଶତା ଭବେତ୍ ।। ଚତୁଷଷ୍ଠ୍ୟାଭବେ କୁମ୍ଭଂ ମେବଂ ବୈପ୍ରାଣ ସଂଯମଃ ।। ଅଙ୍ଗୁଷ୍ଠମୁଳେ ବ୍ରହ୍ମ ସାଧେବ ମଙ୍ଗୁଲ୍ୟ ମୁର୍ଦ୍ଧନି ।। ପ୍ରାଯ୍ୟା ପଠ୍ୟା କନିଷ୍ଠ ମୁଳଂ ପିତୃ ଦେଷିନି ମୂଳକଂ ।।




ରେଖାଚିତ ସ୍ତ୍ରୋଭଭବିକାର୍ଦ୍ଧଗାଷ୍ଟତିଯକ୍ ତଥା ସଂବସୁତ୍ର କାଣ କଷ୍ଟାତ୍ ।। ଭଗାର୍ଦ୍ଧଭଗାର୍ଦ୍ଧେ ଗତେ ଦ୍ୱିଂ ଲେଖେ ଦିବଂ ଉଲିଖେ ତବଳିଷ୍ଟେ ବିଘ୍ନ ।। ˉ ।।

ଦ୍ୱିତୀୟ ପତ୍ର :

ଶ୍ରୀ ଗଣେଶାଶଂ ନମଃ ।। ଅବିଘ୍ନମସ୍ତୁ ।। ଶ୍ରୀଗୁରୁଭ୍ୟୋ ଓଁ ନମଃ ।। ଅଥଃ ପରସର ଗୁହ୍ୟ ଶୁତ୍ର ଲିଖ୍ୟତେ ।। ଗଣେଶ୍ୱରଂ ନମସ୍କୃତ୍ୟଂ କର୍ମଶଷୟ-ଛେଦନଂ ।। ଭବ୍ୟାହି ହିତାର୍ଥାୟ ଗୁହ୍ୟୋକ୍ତ ଶୁତ୍ର ପଦ୍ଧତି ।। ବ୍ରାହ୍ମ ମୁହୁର୍ତ୍ତେ ସ୍ୱସ୍ଥେ ଚ ମାନଷେମତି ମାଂ ନୃପ ।। ବିଦୋଧଂ ଚିତ୍ତତ୍ୟେ ଧର୍ମ ସବ୍ୟଂଗ୍ରପ୍-ବିରୋଧନଂ ।। ଗତ୍ରେ ପଶ୍ଚିମ ଯାମେଣ ମୁହୂର୍ତ୍ତାୟଂ ତୃତୀୟକଃ ।। ସବ୍ରାହ୍ମ୍ୟଷ୍ଟାତି-ବିଜ୍ଞେୟୋ ବିହିତଃ ଶଂବିରୋଧକଂ ।। ଉଷ୍ଟାୟନେତ୍ର ପ୍ରକ୍ଷାଲ୍ୟସ୍ୱଗିଭ୍ରୂବ୍ରାସମ୍ୟିହିତଃ ।। ପ୍ରାତସାନଂ ପ୍ରକୁର୍ବିତବତ୍ତଧାପନ ପୁର୍ବିକଂ ।। ତତ ସୈଲ୍ୟମୁଷ୍ଟାମକୁର୍ଯ୍ୟ ନେତ୍ରେଂ ନରେଶ୍ୱରଃ ନୈରତ୍ୟଂ ଦିଗିତବିକ୍ଷେମ୍ୟତି ଅଭ୍ୟଧିକା ଭୁବ ।। ଥାକ୍ଷ୍ମୀ ତେଯୀ ସ୍ଥ ଷେ କାଷ୍ଟେ ପତ୍ରେ ଲେଷ୍ଟେରଥା ପିବା ଅସ୍ତିର୍ଯ୍ୟ ବସୁଧା ଷେବ ବଶ୍ର ପ୍ରାବୃତ ମସ୍ତକଃ ।। ତିଷ୍ଟେନାତିଚିଭ୍ୟ ତତ୍ର ସର୍ମ୍ମିତା ଗୋବଗୁର୍ଣ୍ଣିତଃ ।। × × ×

ସନ୍ଧ୍ୟା ପୁଷ୍ଟ୍ର ଗୁଣା ଗୁଣି ଜପ ମିଦଂ ପୁଜାସିଳା ତର୍ପଣଂ ।। ଗବ୍ୟ ଶଙ୍କର ଦର୍ଶନଂ ଚ ତୁଳଷିଂର୍ଘ୍ୟଦଦାପ୍ରୋକ୍ଷଣଂ ।। ସ୍ୱାଧ୍ୟାୟଂ ପ୍ରହର ବଳିଂଞ୍ଚ ଗଥିତଂ ନିତ୍ୟ ଦ୍ୱିଜ କର୍ମଭି ।। ‾‾ ।। ଇତି ଶ୍ରୀ ଗୁହ୍ୟୋକ୍ତ ସୂତ୍ର ସ୍ମୃତିନୁଷାରେଣ ନୟାଗର ବିଧି ପ୍ରଥମ କଳ୍ପ ସମାପ୍ତାଃ ।।

ଏହିଭଳି ନିତ୍ୟାଗ୍ନର ବିଧି, ସାମାନ୍ୟ କୁଶ ବିଧାନ, ଯଜ୍ଞୋପବିତ ବିଧାନ, ସାମାନ୍ୟ ଚଳୁ ବିଧାନ, ସାମାନ୍ୟ ସନ୍ଧ୍ୟା ପୁଜା ବିଧାନ, ତର୍ପଣ ବିଧାନ, ତର୍ପଣ ବଶ୍ୱେଦେବ, ବିବାହ ବିଧିଃ, ବନ୍ଦାପନା ବିଧି, ସାମାନ୍ୟ ଶ୍ରାଦ୍ଧ ପଦ୍ଧତି କ୍ରିୟା ଓ ସାମାନ୍ୟ ଶ୍ରାଦ୍ଧ ଶୁଦ୍ଧକ୍ରିୟା ଆଦିକୁ ନେଇ ଦ୍ୱାଦଶଟି କଳ୍ପ ବର୍ଣ୍ଣିତ ହୋଇଅଛି ।

## ଅଥଃ ସର୍ବ ପ୍ରତିଷ୍ଠା ବିଧାନଃ

ସଂକଳ୍ପ ବରଣଂ କୁର୍ଯ୍ୟା ସ୍ୱସ୍ତି ବାଚନ ପୂର୍ବକଂ ।। ବିଧିବଛା ପୟେକ୍ତଙ୍ଗୌ ମୂଜାଙ୍ଗୌ ହୋମ ମାଚେରତ୍ ।। × × × ଲକ୍ଷ୍ମିବନ୍ତା ସୁଶଞ୍ଚଃ, ଦେବତା ପ୍ରତିଷ୍ଠା, ଗନ୍ୟ ମନ୍ତ୍ରେଂ ବିଧାନ ।। ସପ୍ତମୃତ୍ତିକା, ପଞ୍ଚ ପଲ୍ଲବ, ପଞ୍ଚକଷାୟୋଦକ, ସର୍ବୌଷଧି, ପଞ୍ଚଗବ୍ୟ, ପଞ୍ଚାମୃତ ଗଣ୍ଡୂସ୍ ଇତ୍ୟାଦି ବିଷୟମାନ ବର୍ଣ୍ଣିତ ହୋଇ ଶେଷରେ ବ୍ୟାସୋକ୍ତ ଏବଂ ସନନ୍ଦୋକ୍ତ ଏମସୋକ୍ତ— ଇତି ଗୁହ୍ୟୋକ୍ତ ଶୁତ୍ର ସ୍ମୃତି ଷାରେଣ ନାନା ପ୍ରତିଷ୍ଠା ତିଥି ବାର ମାସ ଦେବତା ବୃକ୍ଷାଦି ଆଗମ ପ୍ରତିଷ୍ଠା ତ୍ରୟୋଦସ କଳ୍ପଃ ସମାପ୍ତାଃ ।। ଶ୍ରୀ ।। ଜଳାଶୟ ପ୍ରତିଷ୍ଠା ବିଧାନ, ଗ୍ରହ ଯଜ୍ଞ ଶାନ୍ତି ଦ୍ୱୟ ଚତୁର୍ଦ୍ଦଶ ଏବଂ ପଞ୍ଚଦଶ କଳ୍ପରେ ବର୍ଣ୍ଣିତ ହୋଇଅଛି ।

ଏହାପରେ "ପନଦାହ ପସର ଅଥ ପୁନଦାହ ପୁସ୍କର ନାନା ସ୍ମୃତି-ବାକ୍ୟ ଶୁତ୍ର ବିଧିଃ ।। × × × ଇତି ପନଦାହ ପୁସ୍କର ନାନା ସ୍ମୃତି ବାକ୍ୟ କାରିକା ବିଧି ଷୋଢ଼ଷ କଳ୍ପ ସମାପ୍ତାଃ ।। ଅଥ ଶୁତ୍ର ମାହଃ, କୁଶବଟୁ ଗ୍ରହଣ ମନ୍ତ୍ର ।। ଇତି ଶ୍ରୀ ସ୍କନ୍ଧ ପୁରାଣେ କାସିଖଣ୍ଡେ ଧର୍ମରାଜ ବିରଚିତଂ ହରିହର ନାମାବଳିଂ ଶତକଂ ସମାପ୍ତାଂ ।। ଅଥ ସ୍ତବ ଲକ୍ଷଣ, ପୁଷ୍କରନ୍ୟାବନ୍ଧ, ଅଗ୍ନି ପ୍ରବେସ ବିଧିଃ, ଇତି ଅଗ୍ନିପ୍ରବେସ ବିଧି ସମାପ୍ତାଂ ।।

ଉକ୍ତ ତାଳପତ୍ର ପୋଥିର ସର୍ବଶେଷରେ ଅଷ୍ଟାଦଶ ମାତୃଗଣଙ୍କ ପୁଷ୍ପାଞ୍ଜଳି ମନ୍ତ୍ର ବର୍ଣ୍ଣିତ ହୋଇଅଛି ଯଥା :—

ଶ୍ରୀ ଶୁଭମସ୍ତୁ ।। ଓଁ ଗୌରିହଂ ଶୁଭଗେ ଦେବି ସର୍ବପାପ କ୍ଷୟଙ୍କରି ।। ସଦା ଯଜ୍ଞ ସମାରମ୍ଭେ ବରଦା ଶୁଭଦା ଭବ ।। ଗୌ ର୍ଯ୍ୟୈ ନମଃ ।। ପଦ୍ମାଳୟା ସମାଖିତା ଶୁର୍ଯ୍ୟବିମ୍ବ ସମଶ୍ରିତା ।। ଯଜ୍ଞୋତ୍ସବ ବିବାହେସ୍ତୁ ଶୁଭଂ କୁରୁ ନମୋଽସ୍ତୁତେ ।। ପଦ୍ମାର୍ଯ୍ୟୈ ନମଃ ।। × × × ଓଁ କୁଳାନ୍ୟଦ୍ଧ୍ୱ ସିତା ଦେବି ସଦା ଗଙ୍ଗେବ ପାବିନି ।। ଇହ ଯଜ୍ଞ ସ୍ଥିତା ନିତ୍ୟଂ କୁଳଂ ମେ ବହୁଳଂ କୁଳଂ ।। କୁଳ ଦେବତାର୍ୟ୍ୟୈ ନମଃ ।। ଇତି ଅଷ୍ଟାଦଶ ମାତୃଗଣ ପୁଷ୍ପାଞ୍ଜଳି ସମାପ୍ତଂ ।। ଲେଖନକାରର ନାମ ଉଲ୍ଲେଖ କରଯାଇନାହିଁ ।



## ଛେଣ୍ଡ

ବେଦବ୍ୟାସ ସମ୍ମୁଖସ୍ଥ ବ୍ରାହ୍ମଣୀ ଉପତ୍ୟିର ପୂର୍ବ ତଟରେ ଛେଣ୍ଡ ଗ୍ରାମ ଅବସ୍ଥିତ । ଶ୍ରୀ ବ୍ରଜ ମୋହନ ପାଢ଼ୀ ଉକ୍ତ ଗ୍ରାମର ବାସିନ୍ଦା ଅଟନ୍ତି । ସ୍ୱର୍ଗତ ଚକ୍ରଧର ପାଢ଼ୀ, ନନ୍ଦ ପାଢ଼ୀ, କଣ୍ଠ ପାଢ଼ୀ, ଦାମୋଦର ପାଢ଼ୀ ଏବଂ ପୀତାମ୍ବର ପାଢ଼ୀ (ପାଞ୍ଚ ପୁରୁଷ) ପୁରୁଷାନୁକ୍ରମେ ବ୍ରଜମୋହନ ପାଢ଼ୀଙ୍କ ପୂର୍ବପୁରୁଷ ଥିଲେ । ଏମାନେ ସମସ୍ତେ ନାଗରର ଅଧିବାସୀ ଥିଲେ । ଏମାନଙ୍କ ଗୃହରେ ବହୁ ପ୍ରାଚୀନ ତାଳପତ୍ର ପୋଥି ଥିଲା । କାଳକ୍ରମେ ସେଗୁଡ଼ିକ ନଷ୍ଟ ହୋଇ ଏକମାତ୍ର କାର୍ତ୍ତିକ ମହାତ୍ମ୍ୟ ଲେଖନ ତାଳପତ୍ର ପୋଥି ବ୍ରଜମୋହନ ପାଢ଼ୀଙ୍କ ପୂର୍ବପୁରୁଷଙ୍କୁ ସ୍ମରଣ କରାଉଛି ।

### କାର୍ତ୍ତିକ ମହାତ୍ମ୍ୟ ଲେଖନ (ତାଳପତ୍ର ପୋଥି)

ଶ୍ରୀ ଗଣେଶାୟ ନମଃ ।।

ନମସ୍ତେ ଦେବ ଦାମୋଦର ।। ଜା ନାମ ଶରଣ ସୋଦର ।।
ଅସେସ ବ୍ରହ୍ମାଣ୍ଡର ନାଥ ।। ଜାର ଚରିତ୍ର ପୁଣ୍ୟ ଅର୍ଥ ।।
ଆରତ ଜନ ପରିତ୍ରାଣ ।। ଅଭୟ ପଙ୍କଜ ଚରଣ ।।୩।।
କମଳା ଆଶ୍ରେ ଅନୁବ୍ରତେ ।। ବ୍ରହ୍ମାଦି ସୁର ମୁନି ଜେତେ ।।୪।।
ନିତ୍ୟେ ପୂଜନ୍ତି ତୋଷମନେ ।। କାଳ ବଞ୍ଚନ୍ତି ଅନୁଦିନେ ।।୫।।
ସେ ପାଦେ ମହାଦେବ ଆସ ।। ସ୍ତୁତି ପଠନେ କଲ୍ଲ ଆସ ।।୬।।

ମୋ ଛାର ବର୍ଣ୍ଣିବି ତା କାହିଁ ।। ଜାହାର ଆଦି ଅନ୍ତ ନାହିଁ ।।୭।।
ସ୍ୱଭବେ ସ୍ୱତ୍ର ଅଂସେ ଜନ୍ମି ।। ନିରତେ ମାୟା ମୋହେ ଭ୍ରମି ।।୮।।

× × ×

ମନେ ନ କରି ଅହଂକାଂର ।। ପ୍ରସନ୍ନେ ଦେଇଛନ୍ତି ବର ।।୧୯୮।।
କହନ୍ତି କରୁଣା ଜଳଧି ।। ପଦ୍ମପୁରାଣ କଥା ବିଧି ।।୧୯୯।।
କାର୍ତ୍ତିକ ମହିମା ବର୍ଣ୍ଣନେ ।। ଉତ୍ତର ଖଣ୍ଡେ ବିଦ୍ୟମାନେ ।।୨୦୦।।
ସୁଣି ସାନନ୍ଦ ସତ୍ରାଜିତି ।। ଜେ ପ୍ରଭୁ ତାଙ୍କ ପ୍ରାଣ ପତି ।।୨୦୧।।
ଯେ ପ୍ରଭୁ ଚରଣେ ବିଶ୍ୱାସ ।। ସରଣ ମହାଦେବ ଦାସ ।।୨୦୧।।

ଇତି ଶ୍ରୀ ପଦ୍ମ ପୁରାଣେ ଉତ୍ତର ଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ ଶ୍ରୀକୃଷ୍ଣ ସତ୍ୟଭମା ପୂର୍ବ ଜନ୍ମ କଥନେ ନାମ ପ୍ରଥମ ଅଧ୍ୟାୟଃ ।।

## ଦ୍ୱିତୀୟ ଅଧ୍ୟାୟ

ଶ୍ରୀ ସୁତ ଉବାଚ ।।

ସୁଣ ସକଳ ମୁନି ଜନେ ।। ସତ୍ୟା ଜେ ଶ୍ରୀକୃଷ୍ଣ ବଚନେ ।।
ଆପଣା ପୂର୍ବ କର୍ମ ସୁଣି ।। ଆନନ୍ଦ ମନେ ମନେ ଗୁଣି ।। ଇତ୍ୟାଦି

ଏହିଭଳି କାର୍ତ୍ତିକ ମହାତ୍ମ୍ୟ ଲେଖନରେ ତିରିଶ ଗୋଟି ଅଧ୍ୟାୟର ବର୍ଣ୍ଣନା ଦେଖିବାକୁ ମିଳେ । ତ୍ରିଂଶ ଅଧ୍ୟାୟର ଶେଷରେ :—

ବିଷ୍ଣୁ ପୁରାଣ ପ୍ରିୟ ବ୍ରତ ।। ମହା କାର୍ତ୍ତିକ କଥା କୃତ୍ୟ ।।୧୩୨।।
ଅସେସ ଜନକଂ କାରଣେ ।। ମୁନିଏଂ କହିଲେ ପୁରାଣେ ।।୧୩୩।।
ସେ ଧର୍ମ ମାର୍ଗ ଉପଦେସ ।। ବର୍ଣ୍ଣନେ ମହାଦେବ ଦାସ ।।
ମୋ ଛାର ଯୋଗ୍ୟ ଅବା କାହିଁ ।। କେବଳ କୃଷ୍ଣ ଭବଗ୍ରାହି ।।
ଏଣୁ ଜେ ଏ ଗ୍ରନ୍ଥ ପ୍ରକାସ ।। ସୁଜନେ ନ ଘେନିବ ଦୋଷ ।।
ଅତି ଲବଣ୍ୟ ମୃଦୁ ବାଣି ।। ଶ୍ରୀକୃଷ୍ଣ ତହୁଂ ସତ୍ୟା ସୁଣି ।।
ସନ୍ତୋସେ ହୁଏ ପୁଲକିତ ।। ସୁଣି କାର୍ତ୍ତିକ କୃତ୍ୟ ଗ୍ରନ୍ଥ ।।
ଗୋବିନ୍ଦ ଚରଣରେ ପଡ଼ି ।। ସ୍ତୁତି ବଚନେ କର ଯୋଡ଼ି ।।
ସେ ସ୍ତୁତି ବାକ୍ୟେ କରି ଆସ ।। ଭଣଇ ମହାଦେବ ଦାସ ।।୧୪୦।।

ଇତି ଶ୍ରୀ ପଦ୍ମପୁରାଣେ କାର୍ତ୍ତିକ ମହାତ୍ମ୍ୟେ ଗ୍ରନ୍ଥ ସମାପ୍ତୋୟଂ ନାମ ତ୍ରିଂସୋଽଧ୍ୟାୟଃ ।। ଭିମସ୍ୟାପିରଣେ ଭଙ୍ଗୋ ମୁନିରପି ମତିଭ୍ରମ ।। ଯଦି ସ୍ଥଦ୍ଧଂ ମସ୍ଥଦ୍ଧଂ ମା ମମଦୋସ ନ ବିଦ୍ୟତେ ।। ଭଗ୍ନପୃଷ୍ଟ କଟି ଗ୍ରିବ ତୁଲ୍ୟ ଦୃଷ୍ଟିରଧୋମୁଖ ।। ଦୁଃଖେନ ଲିଖିସଂ ଗ୍ରନ୍ଥଂ ପୁତ୍ର ବଲ୍ଲପରି ପାଳୟେତ୍ ।। ପୁସ୍ତକଂ ହରତେ ଯସ୍ତ କାଣୋଦୁଞ୍ଚି ଭବେନର ମୃତଃ ସ୍ୱର୍ଗଂ ନ ଗଛନ୍ତି ପିତରଂ ନରକଂ ବ୍ରଜେତ୍ ସୁଧ ଅସୁଧ ପୁରୋଇ ଗାଇବ ଲେଖନକାର ଦୋଷ ନ ଧରିବ ହେ ସାଧୁଜନମାନେ ଦୋସ ନ ଧର ।। ଶ୍ରୀ ରାଧାକୃଷ୍ଣ ରକ୍ଷା କର ବିପ୍ର ଭଗବାନ ଦାସକୁ ।।



## ଉସର୍ଗ

ଉସର୍ଗ ମୌଜା ଅତୀତ ଗାଙ୍ଗପୁର ନାଗର ପ୍ରଗଣାର ଏକ ସୁପରିଚିତ ଗ୍ରାମ ଥିଲା । ଉକ୍ତ ଗ୍ରାମରେ ପତ୍ରୀ ଏବଂ ପାଣିଗ୍ରାହୀ ସଂଜ୍ଞାଧାରୀ ବ୍ରାହ୍ମଣ ସମାଜ ବାସ କରି ଆସୁଛନ୍ତି ।

ପତ୍ରୀ ବଂଶ ପୁରୀ ଜିଲ୍ଲାର ବୀର ରାମପୁର ଶାସନରୁ ଆସି ଉଷର୍ଗ ଗ୍ରାମରେ ସ୍ଥାୟୀ ବାସିନ୍ଦା ରୂପେ ବସତି ସ୍ଥାପନ କଲେ । ପତ୍ରୀ ବଂଶର ପୂର୍ବ ସଞ୍ଜ୍ଞା ରଥ ଥିଲା । ଗାଙ୍ଗପୁର ରଜାଙ୍କ ପ୍ରଦତ୍ତ ପତ୍ରୀ ସଞ୍ଜ୍ଞା ଧାରଣ କରି ଏମାନେ ରଥରୁ ପତ୍ରୀ (ସଂଜ୍ଞା ବହନ କରି) ନାମରେ ସୁପରିଚିତ ହୋଇ-ଅଛନ୍ତି । ଏହି ବଂଶରେ କାଶୀ ପତ୍ରୀଙ୍କ ଯଶ ଗାଙ୍ଗପୁରରେ ପ୍ରସାରିତ ହୋଇଥିଲା । ସ୍ୱର୍ଗତ ହଳଧର ପତ୍ରୀ, ଦୀନବନ୍ଧୁ ପତ୍ରୀ ଏବଂ ବିଶ୍ୱେଶ୍ୱର ପତ୍ରୀ (ଡକାନାମ ବଡ଼ ପତ୍ରୀ) ପୁରୁଷାନୁଯାୟୀ ଉସରର ଗଞ୍ଜୁଆନା ସତ୍ୱ ଭୋଗ କରିଥିଲେ । ହେରଫୋଷ ମୌଜାଟି ଖଞ୍ଜୋତ୍ତର ରୂପେ ବିଶ୍ୱେଶ୍ୱର ପତ୍ରୀ ଭୋଗ କରୁଥିଲେ । ଜମିଦାରୀ ଉଚ୍ଛେଦ ପରଠାରୁ ବିଶ୍ୱେଶ୍ୱର ପତ୍ରୀଙ୍କ ଚାରି ପୁତ୍ର ଯଥା ସ୍ୱର୍ଗତ ପ୍ରହ୍ଲାଦ ପତ୍ରୀ ସ୍ୱର୍ଗତ ଗଙ୍ଗାଧର ପତ୍ରୀଙ୍କ ବଂଶଧରଙ୍କ ସହିତ ଶ୍ରୀ ଘନଶ୍ୟାମ ପତ୍ରୀ ଏବଂ ଶ୍ରୀ ନୀଳାମ୍ବର ପତ୍ରୀ ହେରଫୋଷ ଭୂସମ୍ପତ୍ତି ଭୋଗ କରୁଅଛନ୍ତି ।

ବିଶ୍ୱେଶ୍ୱର ପତ୍ରୀ ଜଣେ ପ୍ରସିଦ୍ଧ କବିରାଜ । କବିରାଜ ବିଦ୍ୟାରେ ସୁନାମ ଅର୍ଜନ କରି ସେ ରାଙ୍ଗପୁର ରାଜାଙ୍କଠାରୁ ସୁନା ରୂପା ଖଚିତ ଏକ ଦୁଶାଲ (ଶାଲ) ଉପଢ଼ୌକନ ପାଇଥିଲେ । ଜ୍ୟୋତିଷ ଶାସ୍ତ୍ରରେ ତାଙ୍କର ଗଭୀର ପ୍ରବେଶ ଥିଲା । ରାଜ୍ୟରେ ସେ ଜଣେ ବିତ୍ତଶାଳୀ ବ୍ୟକ୍ତିରୂପେ ପରିଚିତ ଥିଲେ । ଏହାଙ୍କର ଗୋଟିଏ ଅଶୀ ବର୍ଷ ବୟସରେ ସ୍ୱର୍ଗବାସ ହେଲା । ବିଶ୍ୱେଶ୍ୱର ପତ୍ରୀଙ୍କ ସାନ ପୁତ୍ର ଶ୍ରୀ ନିଳାମ୍ବର ପତ୍ରୀ (ଅବସର ପ୍ରାପ୍ତ ଇସ୍ପାତ କର୍ମଚାରୀ) ବର୍ତ୍ତମାନ ବାସନ୍ତୀ କଲୋନୀରେ ରହୁଅଛନ୍ତି ।

ସ୍ୱର୍ଗତ ବିଶ୍ୱେଶ୍ୱର ପତ୍ରୀଙ୍କ ଗୃହରେ ପ୍ରାୟତଃ ଆଠରୁ ଦଶଗୋଟି ତାଳପତ୍ର ପୋଥି-କମ୍ପ ଥିଲା । ଉକ୍ତ ତାଳପତ୍ର ପୋଥି କମ୍ପରେ ଥିବା ଓଡ଼ିଆ ଭାଷାରେ ଲିଖିତ ରାମାୟଣ, ମହାଭାରତ, ନୃସିଂହ ପୁରାଣ, ହରିବଂଶ ଭାଗବତ, ଜ୍ୟୋତିଷ ଶାସ୍ତ୍ର, ଚଣ୍ଡୀ ପୁରାଣ, ବୈଦ୍ୟ ଶାସ୍ତ୍ର, ବିବିଧ ବ୍ରତ ବିଧାନର ତାଳପତ୍ର ପୋଥି ଏବଂ କେତେକ ତାଳପତ୍ର ଖେଡ଼ା ପୁରୁଷାନୁକ୍ରମେ ବ୍ୟବହୃତ ହୋଇ ଆସୁଥିଲା । ଅଦ୍ୟାବଧି ସ୍ୱର୍ଗତ ପ୍ରହ୍ଲାଦ ପତ୍ରୀଙ୍କ ପୁତ୍ର ଶ୍ରୀ ଯୋଗେଶ୍ୱର ପତ୍ରୀ ଏବଂ ଶ୍ରୀ ଘନଶ୍ୟାମ ପତ୍ରୀଙ୍କ ଗୃହରେ ଉପରୋକ୍ତ ତାଳପତ୍ର ପୋଥି ଏବଂ ତାଳପତ୍ର ଖେଡ଼ା ଗୁଡ଼ିକରୁ କେତେକ ରକ୍ଷିତ ଥିବା ବିଷୟ ଶ୍ରୀ ନୀଳାମ୍ବର ପତ୍ରୀଙ୍କଠାରୁ ଅବଗତ ହୋଇଅଛି । ଶ୍ରୀ ନୀଳାମ୍ବର ପତ୍ରୀଙ୍କ ଖଣ୍ଡିଏ ତାଳପତ୍ର ପୋଥି ଏବଂ ଖଣ୍ଡିଏ ତାଳପତ୍ର ଖେଡ଼ାର ପରିଚୟ ନିମ୍ନରେ ଦିଆଯାଇ ଅଛି ।

## ଗୁହ୍ୟତମଂ ଶାସ୍ତ୍ର (ତାଳପତ୍ର ଖେଡ଼ା)

ଆରମ୍ଭ :—ଅଲକ୍ଷିତେ ଯତେ ବକ୍ଷଂ—ଲକ୍ଷିଷଃ ଜଷସତେ—ନିବାସଂ କୁରୁତେ ବିଷ୍ଣୁମମାଭିଷଃ ଫଳଂ ଲଭେତ୍ ।। ଶ୍ରୀ ଶୁଭମସ୍ତୁ ।। ଅଶ୍ୱସ୍ଥ ପୂଜାବିଧେ ।। ଓଁ ଆରତେତି ମନ୍ତ୍ରସ୍ୟ ।। ପୁରନ୍ଦର ଋଷିଃ ।। ଅନୁଷ୍ଟପ ଛନ୍ଦଃ ।। ବନସ୍ପତି ଦେବତା ।। ଅଗ୍ନି ଗର୍ଭେ ।। ଇତି ଶକ୍ତି ।। ମମାଽଭିଷ୍ଟ ସିଦ୍ଧୌ ବିନିଯୋଗଃ ।। × × × ଇତ୍ୟାଦି ଋଷିଛନ୍ଦ କରନ୍ୟାସ ଅଙ୍ଗନ୍ୟାସ ବର୍ଣ୍ଣିତ ହେବାପରେ ଧ୍ୟାନର ବର୍ଣ୍ଣନା କରଯାଇ ଅଛି । ଧ୍ୟାନଂ ।। ଓଁ ଶ୍ୱେତବର୍ଣ୍ଣଂ ସଲକ୍ଷ୍ମୀକଂ ଭୁଜାଷ୍ଟକ ବିଭୂଷିମଂ ।।

ଶଙ୍ଖ ଚକ୍ର ଧରଂ ଦେବଂ ପିତବାସ ସମନ୍ୱିତଂ ।।
ଅଭୟଂ ବରଦଂ ଶାନ୍ତଂ ଖଡ଼୍ଗ ଖେଟକ ଧାରିଣଂ ।।
ଧନୁର୍ବାଣ ସମାଯୁକ୍ତଂ ଚିନ୍ତୟେ ପୁରୁଷୋତ୍ତମଂ ।।

ଏହାପରେ ଜଳଦେବା ମନ୍ତ୍ର ନମସ୍କାର ମନ୍ତ୍ର ପ୍ରଦକ୍ଷିଣ ମନ୍ତ୍ର ବର୍ଣ୍ଣିତ ହୋଇ ଶେଷରେ ଇତି ଅଶ୍ୱସ୍ଥ ପ୍ରଦକ୍ଷିଣ ପୂଜା ସମାପ୍ତଃ ।।

ଅଶ୍ୱସ୍ଥ ରୂପି ନାରାୟଣଙ୍କ ପଞ୍ଚୋପଚାର ପୂଜାବିଧି ଇତ୍ୟାଦି ଦୃଷ୍ଟି ଗୋଚର ହୁଏ ।

ମହିଧ୍ରେ ବଶଧା ନିପ୍ରା ପଞ୍ଚ ପଞ୍ଚ ପ୍ରକାରକ ।।
ସାରସ୍ୱତା କାନକୁବ୍ଜା ଗୌଡ଼ା ମୈଥିଳି ଉତ୍କଳ ।।
ପଞ୍ଚ ଗଉଡ ସମାକ୍ଷାତା ବିଧିଂଉତ୍ତର ମଦ୍ଧାୟୋ ।।

ତେଲଙ୍ଗଶ୍ଚ ମହାରାଷ୍ଟ୍ର କର୍ଣ୍ଣାଟ ଦ୍ରାବିଡ଼ ଗୁର୍ଜ୍ଜରା ପଞ୍ଚ ଦ୍ରାବିଡ଼ ସମାକ୍ଷତା ବିଧ୍ୱଂଦକ୍ଷିଣ ମଧ୍ୟୟେ ।। ଇତ୍ୟାଦି ଅଥ ବୃନ୍ଦାବତି ପୂଜା ବିଧି ଲିଖ୍ୟତେ । ଅଥ ନବଗ୍ରହ ସ୍ତୋତ୍ର ସ ଲେଖନ ।। ଅଥ ଅନ୍ନଭକ୍ଷଣ ନିଶେଧ ବିଧି ।। ଏକାଦଶୀ ଫଳ ନିରଭକ୍ଷଣାଦି ଫଳ କହିବା ।। ଅପରାଜିତା ସ୍ତୋତ୍ର ।। ସନ୍ତାନ ଗୋପାଳ ମନ୍ତ୍ର ।। ଗଣେଶ; କାର୍ତ୍ତିକ; ସରସ୍ୱତୀ, ଶିବ ଆଦି ଦେବତାମାନଙ୍କ ମନ୍ତ୍ର ଉକ୍ତ ତାଳପତ୍ର ଖେଜାରେ ଦେଖିବାକୁ ମିଳେ । ଖେଜାର ପରିଶେଷରେ ଶ୍ରୀମଦ୍ ଭଗବତ୍ ଗୀତାର ପଞ୍ଚଦଶ ଅଧ୍ୟାୟ ବର୍ଣ୍ଣିତ ହୋଇଅଛି । ଯଥା :— ପଞ୍ଚଦଶ ଆଧ୍ୟାୟ ।। ପୁରୁଷୋତ୍ତମ ଯୋଗଃ ।। ଶ୍ରୀ ଭଗବାନୁବାଚ ।।

ଉର୍ଦ୍ଧ୍ୱମୂଳ ମଧ୍ୟଃଶାଖ ମଶ୍ୱତ୍‌ଥଂ ପ୍ରାହୁରବ୍ୟାୟଂ ।।
ଛନ୍ଦାଂସି ଯସ୍ୟ ପର୍ଣ୍ଣାନି ଯସ୍ତଂ ବେଦ ସ ବେଦବିତ୍ ।।

+ × +

ଯୋମାମେବମସମ୍ମୁଢ଼ୋ ଜାତାତି ପୁରୁଷୋତ୍ତମଂ ।।
ସ ସର୍ବବିଭଜତି ମାଂ ସର୍ବଭବେନ ଭରତ ।। ଇତି ଶ୍ରୀମଦ୍ ଭଗବତ୍ ଗୀତା ସୁପନିଷଦସ୍ମୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀ କୃଷ୍ଣାର୍ଜୁନ ସମ୍ବାଦେ

ପୁରୁଷୋତ୍ତମ ଯୋଗୋ ନାମୋ ପଞ୍ଚଦଶ ଅଧ୍ୟାୟଃ । ଇତି ଗୁହ୍ୟତମଂ ସାସ୍ତ୍ରାମିଦ ମୁକ୍ତ ମୟାନଘ ।। ଇତି ବୁଧ ବୁଧିମାଂମ୍ର୍ା କୃତ୍ୟ କୃତ୍ୟଶ୍ଚ ଭରତ ।।

—*—

## ବିବିଧ ବ୍ରତ କଥା ଉପରେ ଆଧାରିତ ତାଳପତ୍ର ପୋଥି

### ଶ୍ରୀ ଗଣେଶସ ବ୍ରତ କଥା ଲେଖନଃ :—

ଶ୍ରୀ ଗଣେଶାୟ ନମଃ ।। କେଉଣି କାଳରେ ନୈମିଷା ଅରନ୍ୟରେ ।। ଗୌତମ ନଦୀ ତିରେଂ ।। ଜେ ମହରଷିମାନେନ୍ତ ।। ସୁତ ରଷିକିଂ ଦେଖିଲେ ।। ସେ ଦେଖି ଏମନ୍ତ ପଗ୍ଭରିଲେ ।। ରଷୟ ଉବାଚଃ ।। ରଷିମାନେ ପଗ୍ଭରୁ ଅଛନ୍ତି ।। ମନୁସ୍ୟମାନଙ୍କର କାର୍ଯ୍ୟମାନେ ନିର୍ବିଘ୍ନ କେମନ୍ତ ହୋଇ ।। ଅର୍ଥ ସିଧି କେମନ୍ତ ହୋଅଇ ।। ପୁତ୍ର କେମନ୍ତେ ହୁଅଇ ।। ସମ୍ପତ୍ତି କେମନ୍ତ ହୁଅଇ ।। ଇତ୍ୟାଦି ।।

× × ×

ଯୁଧିଷ୍ଠିର ପଗ୍ଭରୁ ଅଛନ୍ତି ।। ହେ ଶ୍ରୀକୃଷ୍ଣ ପୁରଣ ଜେ ଦେବ ।। ତହିଂରେ ଗୋବିନ୍ଦ ବୋଇଲେ ପଣ୍ଡିତ ଅଟ ତୁମ୍ଭେ ।। କେଉଂ ଦେବତାଙ୍କୁ ଆମ୍ଭେ ପୁଜାକରି ।। ଆମ୍ଭର ଗତ୍ର ଉତ୍ତମ କରି ପାରିବୁଂ ।। ଯେହା ମୋତେ କହିବା ହେଉ ।। ଶ୍ରୀକୃଷ୍ଣ ଉବାଚଃ ।। ଶ୍ରୀକୃଷ୍ଣ କହୁଅଛନ୍ତି ।। ହେ ଯୁଧିଷ୍ଠିର ଉମା ଯେ ପାର୍ବତି ।। ମୃଡ଼ ଯେ ମହାଦେବ ।। ତାଙ୍କଠାରୁ ଜାତ ଜେ ଯେ ସମ୍ଭୁତ ଜେ ଗଣେସ ।। ତାଙ୍କୁ ପୁଜାକର ।। ତାଙ୍କୁ ପୁଜାକଲେ ନିଶ୍ଚେ ଗତ୍ର ପାଇବ ।। ଇତ୍ୟାଦି

+ + +

ଇଶ ବୋଲି ଜେଉଂ ପ୍ରଭୁ ତାଙ୍କୁ ଜେ ପୂଜା କରଣ ।। ଜେଉଂ ବାଞ୍ଛା କରନ୍ତି ।। ସେ ଫଳ ଦିଅନ୍ତି ।। ଯେହି ନ୍ୟାୟ ରଂ ପ୍ରଥମ ରଂ ଶିଦ୍ଧି ଗଂଣେସଙ୍କୁ ପୁଜାକର ।। ଇତି ଶ୍ରୀ ଅସନ୍ଦ ପୌରଣେ ଶ୍ରୀ ବିଧି ବିନାୟକ ବ୍ରତ କଥା ସମାପ୍ତାଃ ।।

ନାଗୁଲୀ ଚତୁର୍ଥି ବ୍ରତକଥା ଲେଖନଃ .–

ଏମନ୍ତ ସମୟରେ ନାରଦ ମହାଋଷି ଇନ୍ଦ୍ରଭୁବନରେ ପ୍ରବେଶ ହୋଇଲେ ।। ଇନ୍ଦ୍ର ଭୁବନରେ ଇନ୍ଦ୍ର ସଚି ବସି ଅଛନ୍ତି ।। ଇନ୍ଦ୍ର ସଚି ଦୁହେଂ ନାରଦଙ୍କୁ ପୂଜା କଲେ ।। ଛିଡ଼ ଅର୍ଘ୍ୟ ଧୂପ ଦୀପ ଗନ୍ଧ ପୁଷ୍ପ ଦେଇ ପୂଜା କଲେ ।। ଇନ୍ଦ୍ର ଇନ୍ଦ୍ରାୟେଣି ଦୁହେଂ ନାରଦଙ୍କୁ ନମସ୍କାର କଲେ ।। ଇନ୍ଦ୍ର ଉବାଚ । ଇନ୍ଦ୍ର ପଚ୍ଚାରୁ ଅଛନ୍ତି ।। ଭୋ ମୁନି ମଞ୍ଜପୁରେ ଆଜ ତ ବଡ଼ ଉଛବ କରୁଅଛନ୍ତି ।। ଶଂଖ ଭେରି ହୁଳ ହୁଳି ମହୁରି ମଡ଼ଂଗଳ ଶୁଭୁଅଛି ।। ଏଥିର ବୃତାନ୍ତ କହ ।। ନାରଦ ଉଁବାଚଃ ।। ନାରଦ ମହାଋଷି କହୁ ଅଛନ୍ତି ।। ଇନ୍ଦ୍ର ଆଗରେ ।। ସୁଣ ହୋଇ ଏକମନେ ଯେକ ଚିତ୍ତ ହୋଇ ।।

ପଦ୍ମଗର୍ଭ ବୋଲି ଯେକ ସାଧୁ ଟେକ ଅଛି । ତାହାର ଭର୍ଯାର ନାମ ପଦ୍ମାବତି ।। ବହୁର ନାମ ତୁଳସୀ ।। ଝିଅର ନାମ ହିର ଦେଇ ।। ନଗ୍ରର ନାମ କାସିପୁର ।। ସେ ନଗ୍ରରେ ଦେବତା ନାମ ବିସ୍ବନାଥ ।। ସେ ନଗ୍ର ରଜାର ନାମ ବିରଭନୁ ।। ରାଣିର ନାମ ପାର୍ବତି ।। ପୁତ୍ରର ନାମ କାର୍ତ୍ତିକେ-ଶ୍ବର ।। ନର ବଳ ଅଶ୍ବ ବଳ ଗଜ ବଳ ।। ଘେନି ରଜାରଯ କରୁଥାଆନ୍ତି ।। ସେ ନଗ୍ରରେ ପଦ୍ମକେଶରି ଶାଧୁରତ ଅପର୍ମିତ ଧନ ।। ହିର ନିଳା ମୋତି ମାଣିକ୍ୟ ମୁକୁତା ବୈଦୁର୍ଯ୍ୟ ଗରଡ଼ୋ ଦାଗର ପୁଷ୍ପରାଗ ପୋୟେଳା ଚନ୍ଦ୍ରକାନ୍ତ ସୁବର୍ଣ୍ଣ ରୁପା ଏତେ ପ୍ରକାର ରତ୍ନ ପୁରିଅଛି ।।

\+ \+ \+

ହିର ମାଣିକ୍ୟର ଦୁଭ ଗୋଟି ଘଟ ସ୍ଥାପନା କରିବ ।। ସେତ ଚ୍ରମ-ରେକ ତୋଳିବ । ସୁବର୍ଣ୍ଣର ଦୁଇଗୋଟି ନାମ ସ୍ଥାପନା କରିବ ।। ସୁନାର ନାଗକୁ ରୁପାର ଆଖି ।। ସୁନା ନ ପାଇଲେ ତମ୍ବା କରିବ ।। ତମ୍ବାର ନାଗକୁ ସୁନାର ଆଖି କରିବ । ଏମାନ ନ ପାଇଲେ ପିଠାଉ ନାଗ କରିବ ।।

× × ×

ଶ୍ରୀ ସିଦ୍ଧ ପୋର୍ବଳ ପ୍ରସାଦରୁ ସାଧୁତର ଦହୁତ ଗର୍ଭର ଶର୍ପ ବାଳକ, ହେଲା ।। ତୁମେ ଏ ବ୍ରତ କର ।। ନାରଦକଂ ଠାରୁ ସୁଣି ଇନ୍ଦ୍ର ଇନ୍ଦ୍ରାୟେଣି ଏ

ବ୍ରତ ଜେ କରଇ ।। ଜୀବନ୍ତେ ଧନ୍ୟ ଧାନ୍ୟ ପୁତ୍ର ପୋତ୍ରିରେଂ ସୁଖି ହୋଇ ।। ଅନ୍ତେ ବିଷ୍ଣୁ ବନରେଂ ବସଇ ।। ଇତି ଶ୍ରୀ ଅସ୍କନ୍ଦ ପୁରାଣେ ଇନ୍ଦ୍ରନାରଦ ସମ୍ବାଦେ ନାଗୁଲି ଚତୁର୍ଥି ବ୍ରତ କଥା ସଦାଜୟେ ସମ୍ପୂର୍ଣ୍ଣ ।।

## ଶ୍ରୀ ସୋମନାଥ ବ୍ରତ କଥା ଲେଖନ :—

ଏଥିଂ ଅନନ୍ତରେ ବିକ୍ରମ କେଶରି ବୋଲି ରଜା ଏକ ଥିଲ । ସେ ରଜାର ଅଶ୍ୱ ବଳ ଗଜ ବଳ ଘେନି ରଯ କରୁଂଥାଇ ।। ଏମନ୍ତେ ଥୋକାୟେ କାଟେ ପଶ୍ଚିମ ସୋମନାଥଙ୍କର ସାଠିଏ କାପୁଡିମାନେ ଅଇଲେ ।। ବିକ୍ରମ କେଶ୍ୱରି ରଯରେ ପ୍ରବେସ ହେଲେ ।। ରଜାର ନବର ସିଂଘଦ୍ୱାରେ ପ୍ରବେସ ହେଲେ ।। ଇତ୍ୟାଦି

× × × ×

ଏ ବଚନ ସୁଣି ରଜା ରଣି ଦୁହେଂ ବିଜେ କଲେ ।। ଶ୍ରୀ ସୋମନାଥ ଗୋସେଇଂ କିଂ ନୈବେଦ୍ୟ ଦେଇ ପାରଣା କଲେ ।। ମଣୋହି ସାରି ଆସ୍ଥାନେ ବିଜେ କଲେ ।। ସୋମନାଥଂକଂ ପ୍ରସାଦରେ ବିପୁଳ ଲକ୍ଷ୍ମି ସମ୍ପଦ ଭୁଞ୍ଜିଲେ ।। ଏମନ୍ତେ ଶ୍ରୀ ସୋମନାଥଙ୍କର ସେବା କରୁଥାନ୍ତି ।। ବ୍ରହ୍ମ କ୍ଷେତ୍ରି ବସ ଶୁଦ୍ର ରୂରି ଜାତିରେ ।। ଜେ ଏହା ସୁଦ୍ଧ ଚିତ୍ତରେ କରଇ ।। ତାକୁ ଶ୍ରୀ ସୋମନାଥ ଗୋସାଇଂ ପ୍ରସନ୍ନ ହୁଅନ୍ତି ।। ଅନ୍ଧ କୋଷ୍ଟବ୍ୟାଧି ରେଗି ଏମାନଙ୍କୁ ଶ୍ରୀ ସୋମନାଥ ଗୋସାଇଂ ଅନୁଗ୍ରହ କରନ୍ତି ।। ଦରିଦ୍ର ଦାରିଦ୍ର ନାସ କରନ୍ତି ।। ଇଶ୍ରୀ ସ୍କନ୍ଧ ପୁରାଣୋକ୍ତ ଶ୍ରୀ ସୋମନାଥ ବ୍ରତ କଥା ସମ୍ପୂର୍ଣ୍ଣଂ ।।

## ଶ୍ରୀ ଶୁଦଶା ବ୍ରତ କଥା ଲେଖନ :—

ସ୍ୱସ୍ତି ବାଚନଂ ।। ସଂକଳ୍ପଃ ।। ଦେସକାଳ ବାକ୍ୟାନନ୍ତରଂ ଅମୁକ ଗୋତ୍ର ଶ୍ରୀମାନ ଅମୁକ ଦେବ୍ୟାଃ ମମ ଶ୍ରୀ ମହାଲକ୍ଷ୍ମି ଦେବ୍ୟାଃ ପ୍ରିତୟେ ବିଦୁଳାଚ ଲକ୍ଷ୍ମି ପ୍ରାପ୍ତର୍ଥ୍ୟଂ ଗଣପତ୍ୟାଦି ପଞ୍ଚଦେବତା ପୂର୍ବକ ଶୁଦସା ବ୍ରତ କଥା ଶ୍ରବଣ ମହଂକୁର୍ବିୟଃ ।।

+ × +

ଓଁ ଙ୍ଫସାଗର୍ଣ୍ଣବ ତାରିଣୀ ନମୋସ୍ତୁତେ ।। ଦଯ ଫଳ ସମର୍ପଣଂ ।। ଇତି ପୁଜା ସମାପ୍ତାଃ ।। ତତ କଥା ଶୃଣୁୟାତ୍ ।।

କେତେହେକ ଦିନେ ନାରଦ ମହାଋଷି ଇନ୍ଦ୍ର ଭୁବନକୁ ଗଲେ ।। ନାରଦଙ୍କୁ ଦେଖି ଇନ୍ଦ୍ରଙ୍କର ଭାର୍ଯ୍ୟା ସଚି ଦେବି ଦିବ୍ୟ ଆସନେକ ଦେଲେ ।। ଆସନ ପାଦାସନ ଦେଇ ସଚି ମାନ୍ୟପର କଲେ ।। ସଚି ବୋଇଲେ ହେ ନାରଦ ସ୍ତିରିମାନେ କି ବ୍ରତ କରି କି ପୁନ୍ୟ କରି ତ୍ରିବର୍ଗ ସମ୍ପତ୍ତି ପାନ୍ତି ।। ଧନ ବଶ ଧନ ଧାନ୍ୟ ସଦା ସମ୍ପୁର୍ଣ୍ଣ ବିପୁଳ ଲକ୍ଷ୍ମି ପାନ୍ତି ।। କେମନ୍ତେ ଏମାନ ପାଇ ଭଲେ ଦିନ ଜାଇ ।। ନାରଦ ସେ ବ୍ରତ କଥା ମୋତେ କୁହ ।। ନାରଦ ଉବାଚ ।। ନାରଦ ବୋଇଲେ ଭେ ସଚି ତୁମ୍ଭେ ଜାହା ପଗ୍ଉରିଲ ତାହା ତୁମ୍ଭକୁ କହିବା ।। ଇତ୍ୟାଦି :—

\+ \+ \+

ନଳ ରଜାକୁ ରଯ ପ୍ରାପ୍ତି ହୋଇଲା ।। ଯେଉଂ ନାରୀ ଶୁଦଶା ବ୍ରତ କରନ୍ତି । ତାହାଙ୍କୁ ମହାଲକ୍ଷ୍ମି ପ୍ରସନ୍ନ ହୁଅନ୍ତି ।। ଯସ ଆୟୁସ ଶ୍ରୀ ଧନ୍ୟ ଧାନ୍ୟ ପୁତ୍ର ପୌତ୍ରି ଶୁଖି ହୋଇ ।। ଏକଥା ସୁଣି ବ୍ରାହ୍ମଣଙ୍କୁ ଦକ୍ଷିଣା ଦେବ ।। ନୁତନ ବ୍ରତ ହସ୍ତରେ ବାନ୍ଧିବ ।। ଶ୍ରୀ ମହାଲକ୍ଷ୍ମି କିଂ ସ୍ମରଣ କରିବ ।। ଇତିଶ୍ରୀ ପଦ୍ମ ପୁରାଣୋକ୍ତ ଶୁଦଶା ବ୍ରତ କଥା ସମାପ୍ତାଃ ।। ମହାଲକ୍ଷ୍ମି ସରଣଂ ମମଃ ।।

## ଶ୍ରୀ ଶଂଙ୍କଟ ତାରେଣୀ ବ୍ରତ କଥ :—

ସେକେ ସାଣବାଣ କଟକେ ରଜା ।। ସେ ରଜାର ଅନେଶ୍ୱତ ପାଟ ମହାଦେଇ ।। ତାର ବଡ ପାଟମହାଦେଇଂକି ଶର୍ବଦା ହତାଦର କରଇ ।। ଦେଖି ନ ପାରଇ ।। ସେ ରାଣି ଉଦୋଦ୍ବଳି ଶୁଦ୍ଧକି ଚୋକି ।। ସେ ରାଣି ଶୁର୍ଣ୍ଣିଆଣି ସଙ୍ଗଂଗତେ ସଂଘାତ ।। ଅତ୍ୟନ୍ତ ପ୍ରିତି କରି ଥାଆନ୍ତି ।।

\+ \+ \+

ରଜା ଅଜ୍ଞାରେ ତାକୁ ଛାଡି ଦେଲେ ।। ଶୁର୍ଣ୍ଣିଆଣି ମେଲଣି ହୋଇ ନବରକୁ ଗଲା ।। ସେମାନ ସବୁ ରାଣିଙ୍କ ଆଗରେ ଦେଲା ।। ସର୍ବମଙ୍ଗଂଗଳାଙ୍କ କୃପାରୁଂ ଯେଡ଼ବଡ ସଙ୍କଟରୁ ଉଦ୍ଧାର ହେଲା ।। ସେହିଦିନଠାରୁ ସଂକଂଟ ତାରେଣି ବ୍ରତ ବିଖ୍ୟାତ ହେଲା ।। ଆଷାଢ଼ ମାସ ଶୁକ୍ଳପକ୍ଷ ।। ଶ୍ରୀ ଗୁଣ୍ଡିଚ୍ଚ କରି ଶ୍ରୀ ଜଗନ୍ନାଥ ମହାପ୍ରଭୁ ଶ୍ରୀ ଗୁଣ୍ଡିଚ୍ଚ ମଣ୍ଡପେ ବିଜେ ହୋଇଥିବେ ।। ଏହି ନବ

ଦିନ ମଧ୍ୟରେ ଜେଉଂ ଦିନ ମଙ୍ଗଳବାର ପଡ଼ିବ ।। ସେ ଦିନ ସଙ୍କଟ ତାରେଣି ବ୍ରତ କରିବ ।।

× × ×

ଏମନ୍ତ ବିଧାନରେ ବ୍ରତ କଲେ ଶ୍ରୀ ଶଂକଂଟ ତାରେଣି ସମସ୍ତ ସଂକଂଟରୁ ଉଦ୍ଧାର କରନ୍ତି ।। ଧନ ଜନ ଦିଅନ୍ତି ।। ଇତି ଶ୍ରୀ କାଳିକା ପୁରାଣୋକ୍ତ ସଂକଂଟ ତାରେଣି ବ୍ରତ କଥା ସମାପ୍ତଃ ।।

ଶ୍ରୀ ମଙ୍ଗଳା ସ୍ତୁତି ଲେଖନ (ପ୍ରଥମ) :—

ଜୟ ଜୟ ଶର୍ବ ମଙ୍ଗଳା ମାଗୋ ଅନାଦି ମାହେଶ୍ୱରି ।।
ସତ୍ୟ ଯୁଗରେ ମାଗୋ ମୈସାର ଦର୍ପ ହରି ।।୧।।

କାଳ କରାଳି ମାଗୋ ନିକଟେ ବିକରାଳି ।।
ଶିରରେ ସିନ୍ଦୁର ମାଗୋ ହସ୍ତରେ ଜପାମାଳି ।।୨।।

ଡ଼ାହାଣେ ତ୍ରିଷୁଳ ମାଗୋ ବାମେଣ ଖପର କାତି ।।
ଜୟତୁ କାନ୍ତାୟେନି ମାଗୋ ବିସ୍ମୟ ମୁରତି ।।୩।।

+ + +

ସର୍ବ ଦେବତାଏ ମିଳି କଲେ ତୋତେ ତୁଷ୍ଟି ।
ତତକ୍ଷଣେ ପ୍ରସନ୍ନ ତୁ ହୋଇଲୁ ଭଗବତି ।।୪୦।।

ରୁଦ୍ର ଦେବତାର ମାଗୋ ଅଟୁ ତୁ ଘରଣି ।।
ରୁଦ୍ରାୟେଣି ନାମ ତୋର ଜଗତେ ବଖାଣି ।।୪୧।।

ଏ ବିଧି ଅନେକ ନାମ ଜେ ଅଛଇ ତୋହର ।।
ମାନବ ମାତ୍ରଙ୍କେ କହିବାକୁ ସଖ୍ୟ ଅଛଇ କାହାର ।।୪୨।।

ମଙ୍ଗଳାର ସ୍ୱରୂପେ ମାଗୋ ଶିରରେ ବିଜେ କଲୁ ।।
ମଙ୍ଗଳା ନାମ ଗୋଟି ଝୋଠାରେ ବୋଲାଇଲୁ ।।୪୩।।

ଇତି ଶ୍ରୀ ମଙ୍ଗଳା ସ୍ତୁତି ସମ୍ପୂର୍ଣ୍ଣ ।।

## ଶ୍ରୀ ମଙ୍ଗଳା ସ୍ତୁତି (ଦ୍ୱିତୀୟ) :—

ନମସ୍ତେ ମଙ୍ଗଳା ମାଗୋ ନମସ୍ତେ ହରଚଣ୍ଡୀ ।।
ତୋତେ ସୁମରିଲେ ମାଗୋ ଦୁର୍ଗତି ହୋଇ ଖଣ୍ଡି ।।୧।।

ଆତଙ୍କ କାଳେ ମାଗୋ ସୁମରନ୍ତି ଜେବଣ ଜନ ।।
ମହା ଦୁସ୍ତରଂ ମାଗୋ ଫିଟାଉ ବନ୍ଧନ ।।୨।।

ଅଦୁସ୍ୟ ଦୁସ୍ୟ ମାଗୋ ତୋ ନାମ ଧଇଲେ ।।
ବିପତି ନ ଥାଇ ମାଗୋ ତୋତେ ଆଶ୍ରେକଲେ ।।୩।।

ତୋର ନାମ ଜେହୁ ମାଗୋ ଆଶ୍ରେକରି ଥାଇ ।।
ଘୋର ଦୁସ୍ତରେ ମାଗୋ ବି ପଡ଼ି ନ ଥାଇ ।।୪।।

= = =

ନମସ୍ତେ ସାରଳା ମାଗୋ ବନ୍ଦନା କରଇଂ ତୋତେ ।।
ମହା ଦୁସରଂ ମାଗୋ ତରିବା ନିମନ୍ତେ ।।୫୦।।

ଜେତେବେଳେ ଜେ ଜାହା କରଇ ମନବାଞ୍ଛା
ସେହିଠାରୁ ତାର ମାଗୋ ପୁରଇ ମନବାଞ୍ଛା ।।୫୧।।

ତବ ଚରଣେ ମାଗୋ ଲଗି ରହୁ ଚିତ୍ତ ।।
କହେ ବଳରମ ଦାସ ମାଗୋ ଉଦ୍ଧର ଅର୍ଦ୍ଦମାତ ।।୫୨।।

ତୁମ୍ଭର ପାଦ ପଦ୍ମେ ସରଣ ମମ ଇଛା ।।
ଭବନ୍ତି ବଳରମ ଦାସ ମଙ୍ଗଳା କର ରକ୍ଷା ।।୫୩।।

ଇତି ଶ୍ରୀ ମଙ୍ଗଳା ସ୍ତୁତି ସମ୍ପୂର୍ଣ୍ଣ ।।

## ଶ୍ରୀ ଦୁର୍ଗା ସ୍ତୁତି :—

ଶ୍ରୀ ଦୁର୍ଗାଙ୍କୁ ସ୍ତୁତି ଜେ କରନ୍ତି ରାମ ରାୟ ।।
ଜୟ ତୁ ଦର୍ଗା ମାଗୋ ଅନାର୍ଦ୍ଦି ସୀଦ୍ଧକାୟେ ।।୧।।

ନମସ୍ତେ କାତ୍ୟାୟେନି ମାଗୋ ଜଗତେ ଯୋଗେଶ୍ବରି ।।
ସତ୍ୟ ଯୁଗରେ ମାଗୋ ମଇଂଶାର ଦର୍ପଚୁର କରି ।।୨।।

କାଳି କରାଳି ମାଗୋ ବିକଟେ ବିକରାଳି ॥
ଶିରରେ ସିନ୍ଦୂର ମାଗୋ ହସ୍ତରେ ଜପାମାଳି ॥୩॥

ଢ଼ଳଢଳି ନୟନି ମାଗୋ ବକ୍ର ତୋ ଗ୍ରହାଣ ॥
କଜ୍ଜଳ ରେଖା ମାଗୋ ସୋଭ ପାଉଛି ପୁଣ ପୁଣି ॥୪॥

ଅତି ଶୁବେସରେ ମାଗୋ ନାସାରେ ବଶୁଣି ॥
ମୁକୁତାର ଝଗ ମାଗୋ ବେଷ୍ଟନା ହିଗମଣି ॥୫ ॥

ହରର ଘରଣି ମାଗୋ କପିଳାସ ପୁରମଣ୍ଡଣି ॥
ବିଂଝଗିରି ବାସିନି ମାଗୋ ଦୁରିତ ନିବାରିଣି ॥୬॥

× × ×

ବଳଖିନ୍ନ ହୋଇ ଯେ ବଞ୍ଚୁଥିବ ଦିନ ॥
ଆଜକୁ ସାତ ଦିନେ ମରିବ ରବଣ ॥୩୨॥

ଏତେ କହିଣ ଜେ ଦେବୀ ଚଳିଗଲେ ॥
ଶ୍ରୀ ରମ ଲକ୍ଷଣଯେ ଚେତିଣ ଉଠିଲେ ॥୩୩॥

ଗରୁଡ଼ଙ୍କୁ ସୁମରଣା କଲେ ଦାସରଥି ॥
ରମେକ ଦିପେ ଥାଇ ଜାଣିଲେ ଖଗପତି ॥୩୪ ॥

ବୋଇଲେ ଜେ ଶ୍ରୀରମ ଚିନ୍ତାକଲେ ମୋତେ ॥
ରମେକ ଦିପୁଂ ଶ୍ରୀରମ ଚଳିଲେ ତୁରିତେ ॥୩୫॥

ଗରୁଡ଼ ଗମନ୍ତେ ଜେ ନାଗ ପଳାଇଲେ ॥
ଶ୍ରୀରମ ଲକ୍ଷଣ ଜେ ବନ୍ଧନୁ ଫିଟିଲେ ॥୩୬॥

ଧନୁ ଶର ଘେନିଣ ଜେ ଲଙ୍କାଙ୍କୁ ଗମନ ॥
ବଳରମ ଦାସ ଭଣଇଂ ଶ୍ରୀରମ ଚରଣେ ସରଣ ॥୩୭॥

—:୦:—

## ମାଳଶ୍ରୀ ଚଖେନ :

ମା ଗୋ କାନ୍ଦଇ ପୃଥିବୀ ନ ଟେକଇ ମଥା ।। କ୍ରୋଧଭରେ ଖିତି ନ କହେ କଥା ।। ଅବନିର ଭର ଶହି ନ ପାରିଂ ।। ନ ଶହି ଖିତି ମୈଶାଂର ଭର ।। ପୁଣି ପୃଥି ମୁଖୁଂ ବହେ ରୋଧିର ଧାର ।। କ୍ରୋଧେ ଛ ଥନ ଥନ ବିକଳ ବଦନ କହଇ ଦେବି ଛାମୁରେ ।। ମାଗୋ ମୈଶାକୁ ମାରି ଉଧରିବା ମୋରେ ।। ୧ ।।

× × ×

ସର୍ବ ଦେବେ ଜହୁଂ ପଳାଇଗଲେ ।। ମୈସା ଅଇଲ୍ଲ ପ୍ରାୟେକ ମଣିଲେ ।। ଅଦଭୁତ ହୋଇ ଶୁଭିଲ ବାଣି ।। ପୁଣି ମୈଶା ଅଇଲ୍ଲଂ ।। କୁ ବାହିଲେଂ ।। କୁ ମାଇଲେଂ ଶିଂହ ବାହେନି ।। ସ୍ୱର୍ଗେ ଜୟେ ଜୟେ ଧ୍ୱନି ଗୋ ମା ମର୍ଞ୍ଚେ ଜୟେ ଜୟେ ଧ୍ୱନି ।। ପୁଣି ରଖ ଗୋବିନ୍ଦକୁ ସୀଂହ ବାହେନି ।। ୧୨ ।।

## ଝିମ୍ପା ମାଳଶ୍ରୀ ଲେଖନ :

ମାଗୋ ଗିରି ନନ୍ଦିନି ଗୁଣବତି ନାରି ।। ଗଳାରେ ସୋହେ ତେ ମୁକ୍ତା ମାଳି ।। ଗଜ ଗବନି ବଦନ ଚନ୍ଦ୍ରମା ; ମାଗୋ, କେ କହିପାରେ ତୋର ଗୁଣ ସିମା ।। ଜାନୁ ଜଂଘନ ରମ୍ଭା ତରୁଗଣ କରଜ ଚମ୍ପକ ମାଳିକା, ପାଣି ପଙ୍କଜ ଗବନ ମତ ଗଜ କୋକିଳ ସବଦ ବାର୍ଣ୍ଣିକା, ଗୁଗୁଳ ଗନ୍ଧ ଗନ୍ଧ କୁସୁମ ମନ୍ଦ ମନ୍ଦ ବଦଦ ଦନ୍ଧ ଶୋଭିତା ।। ମାଗୋ ତ୍ରିପୁର ସୁନ୍ଦେରି ତୁ ହର ନାୟକା ।। ଜୟ ଜୟ ଦୁର୍ଗେ ଦୁର୍ଗତି ନାସେନି ଗୋ ମା ବାସେନି ସେତ ମାଳିକା ।। ବିପତି କାଳେ ଶାହା ତୁହି ଯେକା ।। ଜୟ ଜୟ ଦୁର୍ଗେ (ଘୋଷା) ।। ୧ ।।

× × ×

ମା ଗୋ ବନ୍ଦିରେ ପଡ଼ିଲେ ନୃପତି ବର ।। ମଉଡ଼ମଣି ବିଶାଧେ କୋପର ।। ତୁ ଜାଇ ବହନ କଣ୍ଠରେ ବସ ।। ମାଗୋ ସମର୍ପି ଦେଉ ତାଙ୍କ ଗଜ ଘୋଷ ।। ଝୁମ୍ପା ।। ଅସୁର ନରେ ହୋଇଣ ହରଷ ହରସେ ନୃପତିଙ୍କ ଦୟାଦ ବନ କଲେ ଗଜ ତୁରଙ୍ଗ କୋଟି ଶମ୍ପତି ଉଧରି ଧର ତୁ ବହନ କଣ୍ଠ

କ୍ଷଣ ।। ମାଗୋ କହଇ ମାଜି ମୋ ବିନୟ ଘେନ ।। ଘୋଷ ।। ଜୟ ଜୟ ଦୁର୍ଗେ ଦୁର୍ଗତି ନାସେନି ଗୋ ମା ଭବାନି ଭଦ୍ର କାଳିକା ।। ମାଗୋ ଦୁରେ ଚିନ୍ତା କଲେ ନିକଟେ ଶାଖା ।। ଜୟ ଜୟ ଦୁର୍ଗେ ଦୁର୍ଗତି ନାସେନି ଗୋ ମା ।। ଅଭୟ ସେ ତ ମାଳିକା ।। ୮ ।।

ଭିମସ୍ୟାପି ରଣେ ଭଙ୍ଗେଂଗା ମୁନେରପି ମତିଭ୍ରମ ଯଦି ସୁଦ୍ଧ ମଶୁଦ୍ଧଂ ବା ମମ ଦୋସଂ ନ ବିଦ୍ୟତେ ।। ଶ୍ରୀ ଘୋଘରନାଥ ବାବାଙ୍କ ଚରଣେ ସରଣ ମମଃ ।। ଶ୍ରୀ କାର୍ମିଲ୍ୟ ବାଶିନି ଭୁବନେଶ୍ୱରି ଦେବି ଚରଣେ ସରଣ ମମଃ ।। ଶ୍ରୀ ରଘୁନାଥ ପଦାରବିନ୍ଦେ ସରଣ ମମଃ ।। କୃଷ୍ଣା ତ୍ରୟ କୁଳୋପର୍ଣ୍ଣେ ଦିନବନ୍ଧୁ ଧର ମର୍ମଣୋ ଭୂପତିନାଂ ପଦେ ପତ୍ରି ।। ଶାଗ୍ରାଂ ବି ରଥ ବଂସୀକ ।। ଦିନବନ୍ଧୁ ଧର ଶର୍ମଣତା ଲିଖିତଂ ମିଦଂ ପୁସ୍ତକଂ ।। ଶ୍ରୀ ରାମ ।

— : ୦ : —

## କଣ୍ଡ୍ରୁ

ଗଡ଼ରକେଲା ଇସ୍ପାତ ସହର ସନ୍ନିକଟ କୋଇଲି ନଦୀର ଉତ୍ତର ତଟରେ ପ୍ରାୟତଃ ଦୁଇ କିଲୋମିଟର ଦୂରରେ କଣ୍ଡ୍ରୁ ଗ୍ରାମ ଅବସ୍ଥିତ । ଏହି ଗ୍ରାମର ନିବାସୀ ଶ୍ରୀ ଶ୍ୟାମ ସୁନ୍ଦର ଦ୍ୱିବେଦୀ ପରାଶର ଗୋତ୍ରୀ ବ୍ରାହ୍ମଣ ଅଟନ୍ତି । ଅଧୁନା ସେ ଇସ୍ପାତ କାରଖାନାର କର୍ମଚାରୀ ରୂପେ, ଇସ୍ପାତ ସହରର ସତର ନମ୍ବର ସେକ୍ଟରରେ ଅଛନ୍ତି । ଏହାଙ୍କର ପିତା, ପ୍ରପିତା ଏବଂ ବୃଦ୍ଧ ପ୍ରପିତା-ମହମାନେ ହେଲେ ସ୍ୱର୍ଗତ ହିରାଚନ୍ଦ ଦ୍ୱିବେଦୀ, ବିଦ୍ୟାଧର ଦ୍ୱିବେଦୀ ଏବଂ କୃଷ୍ଣ ଦ୍ୱିବେଦୀ । ଏମାନଙ୍କର ସମ୍ପର୍କୀୟ ବଂଶଧରମାନେ ନାଗରର ବିଭିନ୍ନ ଅଞ୍ଚଳରେ ବାସକରିଅଛନ୍ତି ।

ଲେଖକ ଶ୍ରୀ ଶ୍ୟାମ ସୁନ୍ଦର ଦ୍ୱିବେଦୀଙ୍କ ଗୃହରେ ଏହାଙ୍କ ତିନି ଚାରି ପୁରୁଷ ଅମଳରୁ ରକ୍ଷିତ ଥିବା କେତେକ ତାଳପତ୍ର ଖେଜା ଓ ତାଳପତ୍ର ପୋଥି ଦେଖିଅଛି । ଏହି ପୋଥି ଏବଂ ଖେଜାଗୁଡ଼ିକର ପରିଚୟ ନିମ୍ନରେ ଦିଆଯାଇଅଛି ।

## ସୁଦଶା ବ୍ରତ କଥା (ତାଳପତ୍ର ଖେଜା)

ଶ୍ରୀ ଗଣେସାୟଂ ନମ ।। ଏଥୁ ଅନନ୍ତରେ ନାରଦ ମହରସି ଇନ୍ଦ୍ରପୁର ଗଲେ ।। ନାରଦଙ୍କୁ ଦେଖି ଇନ୍ଦ୍ର ପାଦ ପୁଜା କଲେ ।। ସ୍ଵବର୍ଣ୍ଣ ଆସନେ ନେଇଂ ବସାଇଲେ ।। ସଚି ଦେବି ସହିତେ ନାରଦଙ୍କୁ ପ୍ରଣମିତ କଲେ ।। ନାରଦ ମହରସି କହିଲେ ସ୍ୱାମି ହେଇ ତା ପୁତ୍ର ଭଲେ ଥାନ୍ତି ।। ବିପୁଳ ଲକ୍ଷ୍ମି ଭୋଗ କରନ୍ତି ।। ସଚି ବୋଇଲେ ଏହି ବ୍ରତ କରିଲେ କେବଣ ଫଳ ପାଇଲେ ।। ତାହା ମୋତେ କହିବା ହେଉ ।। ନାରଦ ବୋଇଲେ ଇନ୍ଦ୍ର ସଚିଦେବି ସହିତେ ଏକମନେ ସୁଣ ।। ସୁଜନୁ ନାମେ ଏକ ବ୍ରାହ୍ମଣ ଥାଇ ।। ତାହାର ବ୍ରାହ୍ମଣୀ ନାମ ବିଷ୍ଣା ଅଟଇ ।। ଏମନ୍ତେକୁ ସୁଦଶା ବ୍ରତ ପଡ଼ିଲା ।। ସେଦିନ ବ୍ରାହ୍ମଣୀ ବ୍ରତ କଲା ।। ଇତ୍ୟାଦି

× × ×

ଜେ ମନ ବାଞ୍ଛା କଲେ ସେ ଫଳ ପାଇବ ।। ସର୍ବଦା ସୁଖିତେ ଦିନ କିଇ ।। ସୁଖି ହୋଇବ ।। ଇତି ଶ୍ରୀ ପଦ୍ମପୁରଣେ ।। ଶ୍ରୀ ମହାଲକ୍ଷ୍ମୀଙ୍କର ସୁଦଶା ବ୍ରତ କଥା ସମ୍ପୁର୍ଣ୍ଣ ।। ଭିମସ୍ୟାପି ରଣେ ଭଙ୍ଗୋ ମୁନେ ରପି ମତି ଭ୍ରମ ଜଦି ସୁଧଂ ମସୁଧଂ ବା ମମ ଦୋସ ନ ବିଦ୍ୟତେ ।। ଶ୍ରୀ ମହାଲକ୍ଷ୍ମି ସରଣ ।। ଶ୍ରୀ ମହାଲକ୍ଷ୍ମି ସରଣ ।।

## ସୋମନାଥ ବ୍ରତ କଥା (ତାଳପତ୍ର ଖେଜା)

ଓଁ ଶ୍ରୀ ଗଣେସାୟଂ ନମ ।। ଶ୍ରୀ ସୋମନାଥ ଲିଖତେ ।। ଫକଂନ୍ତ ସାରି କଥା କହିବ ।। ଏଥୁ ଅନନ୍ତରେ ବିକ୍ରମ କେଶରି ବୋଲି ଏକ ରଜା ଥିଲେ ।। × × ×

ସହସ୍ର ବ୍ରାହ୍ମଣମାନଙ୍କୁ ସାଢ଼ି ସୁନା ଦଖା ଦେଲେ ।। ସମସ୍ତେ ଦାନ ପାଇ ।। ନିର୍ଦ୍ଧନ ଲୋକ ଧନ ପାଇ ।। ଜେ ଜାହା ବାଞ୍ଛା କରଇ ସେ ଫଳ ପାଇ ।। ଇତି ଶ୍ରୀ ସୋମନାଥ କଥା ସମ୍ପୁର୍ଣ୍ଣଂ ।। ଏହାପରେ ସୋମନାଥ ପୂଜାର ବିଧି ବିଧାନ ବର୍ଣ୍ଣିତ ହୋଇ ଶେଷ ହୋଇଅଛି ।

# ଶ୍ରୀମଦ୍ ଭାଗବତ ଦଶମ ସ୍କନ୍ଧ ରାସ କ୍ରିଡ଼ା ଲେଖନ :

## ପ୍ରଥମ ଅଧ୍ୟାୟ

ଶ୍ରୀ ଗଣେଶାୟ ନମଃ ।। ଅବିଘ୍ନ ମସ୍ତୁ ।।

ଶୁଣ ପରିକ୍ଷ ନରନାଥ ।। କୃଷ୍ଣ ଚରିତ ଭଗବତ ।।୧।।
ଗୋବିନ୍ଦ ବିଷ୍ଣୁରନ୍ତି ମନେ ।। ଆଜ ରମିବା ବୃନ୍ଦାବନେ ।।୨।।
ଶୋଳ ସହସ୍ର ଗୋପନାରି ।। ମୋତେ ବରିଲେ ତପ କରି ।।୩।।
ଅନେକ ଜନ୍ମେ ତପ କରି ।। ଏବେ ହୋଇଲେ ଗୋପ ନାରି ।।୪।।
ରମିଣ ଦେବି ନିଜ ପୁର ।। ଆଜ ମୁଂ କରିବି ନିସ୍ତାର ।।୫।।
ଏତେ ବିରିରି ବନମାଳି ।। ଘେନିଲେ ବିରହ ମୁରଲି ।।୬।।
ସଭବେ ସରଦର କାଳ ।। ପବନ ବହେ ପରିମଳ ।।୭।।
ଗଗନେ ପ୍ରକାସିଲ୍ଲ ସସି ।। ନିର୍ମଳ ବିରଜଇ ନିଶି ।।୮।।
ଫୁଟିଲେ ଜଳ ସ୍ଥଳେ ଫୁଲ ।। ସୁଗନ୍ଧ ସିତଳ ଅମୁଲ୍ୟ ।।୯।।
ଚନ୍ଦ୍ର ମଣ୍ଡଳ ଅଖଣ୍ଡିତ ।। ଦେଖି ଉସତ ଗୋପିନାଥ ।।୧୦।।

× × ×

ବୋଲଇ ବିପ୍ର ଜଗନ୍ନାଥ ।। ବନେ ଜେ ଗୋପି କୃଷ୍ଣ ପଥ ।।୨୧୬।।
ମୋହର ମନ ଗୋଡ଼ାଇଲ୍ଲ ।। କୃଷ୍ଣକୁ ଭେଟ ନ ପାଇଲ୍ଲ ।।୨୧୭।।
ବାହୁଡ଼ି ହୋଇଲ ନିରସ ।। କୁଜନେ ବୃନ୍ଦାବନେ ପସ ।।୨୧୮।।
ମୁଂ ତାହାରିକିଂ ଅନାଇଂ ।। କାହିଂ ପାଇବି ଭବଗ୍ରାହି ।।୨୧୯।।
ପାମର ହିନ ମୋର ବୁର୍ଦ୍ଧି ।। କୃଷ୍ଣ ଚରଣେ ମନ ରଖି ।।୨୨୦।।
ସୁଜନ ଜନଙ୍କର ହିତେ ।। କହଇ ଦାସ ଜଗନ୍ନାଥେ ।।୨୨୧।।

ଇତି ଶ୍ରୀମଦ୍ ଭଗବତେ ମହାପୁରାଣେ ଦଶମ ସ୍କନ୍ଧେ ରାହାସ କ୍ରିଡ଼ାୟାଂ ଗୋପିକା ବିଳାପେ ନାମ ପ୍ରଥମୋଽଧ୍ୟାୟଃ ।।

ଉପରୋକ୍ତ ଭାବେ ଶ୍ରୀମଦ୍ ଭାଗବତ ଦଶମ ସ୍କନ୍ଧର ରାସକ୍ରୀଡ଼ା ପାଞ୍ଚଟି ଅଧ୍ୟାୟ ବର୍ଣ୍ଣିତ ହୋଇ ରାସକ୍ରୀଡ଼ା ଲେଖନ ସମାପ୍ତ ହୋଇଅଛି । ପଞ୍ଚମ ଅଧ୍ୟାୟର ଶେଷରୁ କେତୋଟି ପଦ ଉଦ୍ଧାର କରି ପୋଥିର ପରିଚୟ ଦିଆ-ଯାଇଅଛି ଯଥା :—

## ପଞ୍ଚମ ଅଧ୍ୟାୟର (ଶେଷରୁ କେତେକ ପଦ ଲକ୍ଷ୍ୟ କରନ୍ତୁ)

ଭଗତି ହୃଦେ ପରିମାଣି ॥ ଏବେ ବୋଲନ୍ତି ଚକ୍ର ପାଣି ॥୧୧୨।
ସକଳ ଦୁହୃଶ୍ଚ ଜେ ତରେ ॥ ସେ ନ ପଡ଼ଇ ମହାଘୋରେ ॥୧୧୩॥
ବୋଲଇ ଦାସ ଜଗନ୍ନାଥ ॥ ରାସ ଉତ୍ସବେ ଭଗବତ ॥
ସୁଜନ ଜନେ ଏହା ଚିନ୍ତି ॥ ଏଣେ ଛାଡ଼ିବ ମନ ଭ୍ରାନ୍ତି ॥
ଭଗତି ହୋଇବ ତୁମ୍ଭରି ॥ ଯେ ମାୟାଘରୁ ଯିବ ତରି ॥
ମୁ ଛାର ହୀନ ମୂଢ଼ପଣ ॥ ସେବଇ ତୁମ୍ଭର ଚରଣ ॥
ମୋହର ନ ଘେନିବା ଦୋସ ॥ ଗିତେ କହିଲି କୃଷ୍ଣ ରସ ॥୨୧୮॥

ଇତି ଶ୍ରୀମଦ୍ ଭଗବତେ ମହାପୁରାଣେ ଶ୍ରୀ ଦସମ ସ୍କନ୍ଧେ ରହାସ କ୍ରିଡ଼ାୟାଂ ଗୋପିକା ମିଳନେ ନାମ ପଞ୍ଚମୋଅଧ୍ୟାୟଃ ॥ ଭିମସ୍ୟାପିରଣେ ଭଙ୍ଗୋ ମୁନେ ରପି ମତିଭ୍ରମ ଜଦି ସଦ୍ଧ ଅସୁଦ୍ଧ ବା ମମଦୋସ ନ ବିଦ୍ୟତେ ॥ ଭଗ୍ନ ପୃଷ୍ଟ କଟିଗ୍ରିବ ତୁଲ୍ୟ ଦୃଷ୍ଟି ରଧୋ ମୁଖ ॥ ଦୁଃଖେଣ ଲିଖିତଂ ଗ୍ରନ୍ଥ ପୁତ୍ରବତ୍ ପରିପାଳୟତେ ॥ ଯଥା ଦୃସ୍ୟ ତଥା ଲିଖ୍ୟତେ ॥ ସୁଦ୍ଧ ଅସୁଦ୍ଧ ପୁରେଇ ଗାଇବ ॥ ଲେଖନ-କାରକୁ ଦୋସ ନ ଦେବ ॥ ଶ୍ରୀ ରାଧାକାନ୍ତ ରକ୍ଷା କରିବେ ଅଧମ ବିପ୍ର ଗୋପିନାଥ କରକୁ ॥

## ଭାରତେ ସାବେତ୍ରି ଲିଖିତେ (ତାଳପତ୍ର ଲେଖା)

ଶ୍ରୀ ଗଣେଶାୟଂ ନମଃ ॥ ଶ୍ଲୋକ ପୟାର ସହିତ ଶ୍ରୀଷ୍ଟ ଦେବତାୟେ ନମଃ ॥ ବେଦବ୍ୟାସ ଉବାଚ ॥ ଶ୍ଳୋକଃ॥ବେଦବ୍ୟାସୋ ଭବିଶଞ୍ଚ ସାବେତ୍ରି ଭାରତଂ ଇତି ॥ ସଞ୍ଜୟେ ପୁଚ୍ଛସି ବାକ୍ୟଂ କଥନ୍ତି ମୁନି ସୋତ୍ତମଃ ॥୧॥ ଗିତଃ ॥ ଭାରତ ସାବେତ୍ରି ବେଦବ୍ୟାସଙ୍କର କୃତ୍ୟ । ସଞ୍ଜୟେ ପୁଛିଲେ ବେଦବ୍ୟାସଙ୍କ ଅଗ୍ରତେ ହେ ॥ ଆଗତ କଥା ଯେ ମତେ କହ ମହାମୁନି ॥ ବେଦବ୍ୟାସ କହିଲେ ଯେ ସ୍ନେହ ଭାବ ଘେନି ହେ ॥

॥ଶ୍ଳୋକଃ॥ ବ୍ୟାସୌବାଚଃ ॥ଦ୍ୟାରିକାୟଂ ସ୍ଥିତଂ କୃଷ୍ଣଂ ସମାହୋୟଂ ଯୁଧେଷ୍ଟିରଃ ॥ ସଞ୍ଜୟେ ପେଶୟାମାସ ଗଚ୍ଛହଂ ହସ୍ତିନା ପୁରଃ ॥୨॥

।।ପୟାର।। ଦ୍ୱାରିକାରେ ଶ୍ରୀକୃଷ୍ଣ ଯେ ବିଜେ କରିଥିଲେ ।। ଯୁଧେଷ୍ଠିର ତାଙ୍କ-ଠାକୁ ସଞ୍ଜୟେ ପେସିଲେ ।। ହସ୍ତିନା ପୁରେଣ ବିଜେ କଲେ ହୃସିକେସ ।। ଦେଖିଣ ଯୁଧେଷ୍ଠି ରାୟେ ହୋଇଲେ ହରସ ହେ ।।

।।ଶ୍ଳୋକ।। ପାଣ୍ଡବାନାଂ ହିତାର୍ଥାୟଂ ଶୀଘ୍ରେ କୃଷ୍ଣେନ ଗମ୍ୟତା ।।
ଶ୍ରୀକୃଷ୍ଣ ରଥ ବେଗ୍ରେଣହାବେଁ ହସ୍ତିନା ପୁରଃ ।।

।।ପୟାରଃ।। ପାଣ୍ଡବଙ୍କ ହିତେ କୃଷ୍ଣ ତତପର ହୋଇ ।।
ରଥ ଚଢ଼ି ହସ୍ତିନା ପ୍ରବେସ ହେଲେ ଜାଇ ହେ ।।

।।ଶ୍ଳୋକଃ।। ବିଦୁରେ ହୃଷ୍ଟୋବାନ କୃଷ୍ଣଷଧଗତଘୋ ମହାପ୍ରଭୁଃ ।।
ବିଦୁରସ୍ୟ ଗୃହଂଷବ୍ରାଭକ୍ତାତ୍ଭ୍ରିଶମାଦିଶତ୍ ।।୪।।

।।ପୟାରଃ।। ବିଦୁରସେ ବିଷ୍ଣୁଭଞ୍ଜା ମନ୍ଦିରେଣ ଜାଇ
ବିଦୁର ଶ୍ରୀକୃଷ୍ଣଙ୍କୁ ସମସ୍ତ ବାକ୍ୟ କହି ହେ ।।

।।ଶ୍ଳୋକଃ।। ବିଦୁରୈବାଚଃ ।। ଅଦ୍ୟମେ ସଫଳଂ ଜନ୍ମ ଅଦ୍ୟମେ ସଫଳଂତପଃ ।।
ଅଦ୍ୟମେ ପିତରେ ତୁଷ୍ଟଂ ଗୋବିନ୍ଦ ଗୃହମାଗତଃ ।।୬।।

।।ପୟାରଃ।। ଆଜ ମୋ ସଫଳ ଜନ୍ମ ତପ ପିତୃ ଶାନ୍ତି
ଗୋବିନ୍ଦ ବିଜୟେ କଲେ ସଫଳ ମୋ ମତିହେ ।।

× × ×

ଇନ୍ଦ୍ର ପ୍ରସ୍ଥ ଯମ ପ୍ରସ୍ଥ ଯୟନ୍ତାୟେ ତିନି
ବାର୍ଣ୍ଣାବନ୍ତ ହସ୍ତିନା ମଞ୍ଚ ଗ୍ରାମ ଘେନି ହେ
ଏ ପାଞ୍ଚ ଗ୍ରାମ ଗଜନ ଦଁଅ ଯୁଦ୍ଧ ଚିନ୍ତେ
ଆମ୍ଭର ବାରତା ବେଗେ ସୁଣ କୁନ୍ତୁ ନାଥେ ହେ
ଦୁର୍ଯ୍ୟୋଧନ କହେ ସୁଚି ଅଗ୍ରେ ନ ଦିଅଇ
ଯେତେଦିନ ମେଦିନିରେ ଥିବି ଦେହ ବହି ହେ
ତଥାପି ତୁମ୍ଭ ବଚନେ ଯଦି ଦେବି ବେସ
ବିନା ଯୁଦ୍ଧେ ଦେବି ନାହିଂ ଶୁଣ ପିତବାସ ହେ

× × ×

ଅଠରକ୍ଷୋଉଣି ଯେ ଦୁଇ ଗଜ ବଳ
ଅଠର ଦିନରେ ଏହୁ ଗଲେ ଯମ ଆଳ ହେ

||ଶ୍ଳୋକଃ|| ଦିନାନି ଦସଭିଷ୍ମେ ଭର ଦ୍ବାଜେନ ପଞ୍ଚ ଚ-
ଦିନ ଦ୍ବୟଂ ଚ କର୍ଣ୍ଣେ ନ ଶଲ୍ୟୋଚ ଦିନସ୍ତଥାଃ ||୬୨||

ଭିଷ୍ମ ଦସ ଦିନ ଯୁଦ୍ଧ କଲେ ମହାଘୋର
ପଞ୍ଚ ଦିନ ଦ୍ରୋଣ ଗୁରୁ କରିଲେ ସମର ହେ ||

ବେନି ଦିନ ଯୁଦ୍ଧ ପୁଣି କଲେ କର୍ଣ୍ଣବିର
ଶଲ୍ୟ ପୁଣି ଅର୍ଦ୍ଧ ଦିନ କଲେକ ସମର ହେ ||

ଦିନ ଅର୍ଦ୍ଧ ଗଦାଯୁଦ୍ଧ ଅନେକ ହୋଇଲା
ଏମନ୍ତେ ଅଠର ଦିନ ସମ୍ପୁର୍ଣ୍ଣ ହୋଇଲା ||

ରଥ ହାଥି ସର୍ବ କ୍ଷେତ୍ରି ପାଦାନ୍ତି ବଳ ଯେତେ
କୁରୁକ୍ଷେତ୍ରରେ ଯେ ନାସ ହୋଇଲେ ସମସ୍ତେ ହେ ||

ଗାନ୍ଧାରି କୁମରେ ସର୍ବେ ସ୍ବର୍ଗଗାମି ହେଲେ
ଶ୍ରୀକୃଷ୍ଣ ପ୍ରସାଦେ ସର୍ବେ ସ୍ବର୍ଗପୁର ଗଲେ ହେ ||

ରଣ ରସେ ମହାଯଜ୍ଞ ରଣ ଯଜ୍ଞ କଲେ
ଯଜ୍ଞକର୍ତ୍ତା ବିକ୍ଷାତଟୀ ଯୁଧିଷ୍ଠିର ହେଲେ ହେ ||

କୁରୁକ୍ଷେତ୍ରେ ଯଜ୍ଞବେଦି ଯୁପ ନାରାୟଣ
ଦୁର୍ଯୋଧନ ରିପୁ ମୋହର୍ଣ୍ଣବ ଭିଷ୍ମଦ୍ରୋଣ ହେ ||

ଦ୍ରୁପଦ ବରଣ ହେତୁ ଅଗ୍ନି ଭିମସେନ
ହୋତା ଅର୍ଜୁନ ଯୁଧିଷ୍ଠିର ଯଜମାନ ହେ ||

ଗାଣ୍ଡିମ ଶୃବଦୃକ୍ଷେୟ ମାନସେ ରଜସି
ଅଯାଚିତ ଦ୍ରବ୍ୟ ବନ୍ଦି ଅହତ୍ୟ ବର୍ଚ୍ଚସି ହେ ||

ଭରତ ସାବେତ୍ରି ଯେହୁ ପ୍ରାତେ ଯେ ପଢ଼ଇ
ଦିବା ରାତ୍ରି ବି ସମରେ ଭୟ ତାର ନାହିଁ ହେ
ନାନା ଉପଦର୍ପ ତାର କିଂଚିତ ଅଟଇ
ସମସ୍ତ କାର୍ଯ୍ୟ ତାହାର ସଫଳ ଅଟଇ ହେ

ଘଡ଼ ଦିବସରେ ଯେତେ ପାପ କରିଥାଇ
ଶୁଣିବା ମାତ୍ରେ ତା ସବୁ ବିନଶିତି ଜାଇ ହେ ।୬୯।

॥ଶ୍ଲୋକଃ॥ ସମ୍ବତ୍ସର କୃତଂ ପାପଂ ପଠ୍ୟମାନେ ନ ପଶ୍ୟତିଃ
ଯତ୍ପଂଳଂଷୋ ସହସ୍ରସ୍ୟ ଶୁବର୍ଣ୍ଣାଳଙ୍କୃତ'ଶ୍ୟତଃ ॥୭୦॥
ବିଧିମାନଂ ବର୍ତ୍ତମାନେଂ ଶୁକ୍ଳ ଦଶାନ୍ନ ଦିନେ ସ୍ତଥାଃ
ଶୃଣୁତାଂ ପଠ୍ୟତାଂ ଷୈବ ବିଷ୍ଣୁମୋହାତ୍ତମହିମଃ ॥୭୧॥

ଦ୍ୱାଦିସିରେ ପଢ଼ିଲେ ଉଚିତ ଫଳ ପାଇ
ସୁଣନ୍ତେ ପଢ଼ନ୍ତେ ବିଷ୍ଣୁ ଲୋକରେ ବସଇ ହେ ॥
ସମପୁର୍ଣ୍ଣ ହୋଇଲେ ଅର୍ଥ ପ୍ରାକୃତ ଏ ଗିତ
ବିପ୍ର ବଳଭଦ୍ର ଦେବ ଶ୍ରୀକୃଷ୍ଣ ଭଗତ ହେ ॥
ପାପ ଚିହ୍ନି ବିଷ୍ଣୁ ଚିହ୍ନି ପ୍ରମାଣ ଅଟଇ
ବିଷ୍ଣୁ ଭକ୍ତ ଜନ ନିତ୍ୟେଂ ବିଷ୍ଣୁକୁଂ ଭଜଇ ହେ ॥

ଇତି ଶ୍ରୀ ବେଦବ୍ୟାସୋକ୍ତ ଭରତ ସାବେତ୍ରି ସମାପ୍ତାଂ ॥ ଶ୍ରୀକୃଷ୍ଣ ସରଣଂ ମମଃ ॥ ସୁଦ୍ଧ ଅସୁଦ୍ଧ ପ୍ରଭୁରେଇ ଗାଇବ ॥ ଶ୍ରୀମଦ୍ ଗୁରୁଭ୍ୟୋ ନମଃ ॥

## ଶ୍ରୀମହାଭାରଥ ନାଗାର୍ଜୁନୀଏ (ତାଳପତ୍ର ପୋଥି)

ଶ୍ରୀ ଗଣସାଏ ନମଃ ॥ ଶ୍ରୀ ଶରସ୍ୱତି ନମଃ ॥ ବନ୍ଦଇ ଯେ ଦାମୋଦର ଦେବ ଗଣନାଥ ॥ ପୋସିତେ ଅକୁସ ତୋର ଥୋରହସ୍ତ ବନ୍ତ ॥ ସର୍ବ ବିଦ୍ୟାରେ ତୁଳେ ଅଟ୍ସ ଅର୍ଦ୍ଧକାରି ॥ ବଳବନ୍ତ ମାନେ ତୋହାର ନାମ ଧରି ॥ ପାର୍ବତିଙ୍କର ପୁତ୍ର ତୁ ଜେ ଅଟ୍ସଣି ଗୋସାଇଂ ॥ ଜେ ତୋହର ବଚନେ ଗ୍ରନ୍ଥ ବଖାନ ଲିଖୁହିଂ ॥ ବନ୍ଦଇ ଜେ ବିସ୍ୱନାଥ ଧ୍ରୁବ ତୋ ମୁରତି ॥ ଧ୍ରୁବନ ପାର୍ବତି କୋଳେ ବଦନ ତୋର ନିତି ॥ ଡ଼ିବି ଡ଼ିବି ଡ଼ମ୍ବରୁ ବାଯଇ ତିନିପୁର ॥ ପିନାକି ପସୁପତ୍ର ସୋହଇ ନିଜ କର ॥ × × ×

ଅମୂଲ ଗଙ୍ଗାଜଳ ଏ ଶ୍ରୀ ମହା ଭରଥ ॥
ତୋହୋର ପ୍ରସନ୍ନେ ନୟ ହାକର ଭଗତ ॥

ଅମୃତ ସମାନେ ଯେ ଭରତ ସବା ବାଣି ।।
ସ୍ତୁତି ପଥେ ପିବନ୍ତେ ଜେ ମୁକତି ହୋନ୍ତି ପ୍ରାଣି ।।

× × ×

ତୁ ମୋତେ ପ୍ରସନ ଗୋ ହୁଅ ମହାମାୟେ ।।
ତୋତେ ସୁମରନ୍ତେ ମାଗୋ ଆପ୍ରାଧ ହୋୟେ କ୍ଷୟେ ।।
ସାଶ୍ର ବିଦ୍ୟ ପଣ୍ଡିତେ କରିଦେ ଜୁର୍ଥ ହାସ ।।
ତୋହ୍ନର ପ୍ରସନେ ମାଗୋ ପଦ ହୋଇବି ମୋତେ ଦୃସ ।।
କିସ ମୁଇଂ ଯପ ଯେ କରିବି ମାତ୍ର ଧ୍ୟାନ ।।
କିଗିତି ଭଗତି ଘେନି ଫେଡ଼ ଅଭିମାନ ।।
ଜନ୍ମେ ଜନ୍ମେ ସାରେଳାର ଚରଣେ ମୋର ସେବା ।।
ନିରେଖ ମାଧେବ ଦାସ କୁହେଂ ଅନୁପାମା ।।

× × ×

ଦବା ନିସି ରିଦ୍ରାରେ ବିଡ଼ିତୁ ମହାମାୟା ।।
ତୋତେ ସୁମରନ୍ତେ କି ଅପ୍ରାଧ ଥିବ କାୟା ।।
ସୁଦୟା କରି ମୋତେ ସିଗ୍‌ଧ ଗୋ ସାରଳା ।
ସଂସାରୁ ତାରିବାକୁ ମାଗୋ ତୋହର ନାମ ଭେଳା ।।
ବେଦ ସାଶ୍ର ପୁରଣେ ମୁଂ ନ ଜାଣଇ କିଛି ।।
ସାରଳା ନାମ ଗୋଟି ହୃଦରେ ଭବୁଅଛି ।।
ନାଗାର୍ଜୁନର ଜୁଧ୍ୟ ଦେଖିବାକୁ ମତି ।।
ଭରଥ କହିବି କାହିଂଯେ ପୁରୁଣା ବେଦମତି ।।
ବ୍ରହ୍ମସୁତ ମନୁ ସଙ୍ଗେ ପୁଛନ୍ତି ଅଗସ୍ତି କି ।।
କେସନେ କେସୀତ ପିତା ପୁତ୍ର ଜୁଧ୍ୟ କଲେ ପୁଣି ।।
ଅର୍ଜୁନକୁ କେସନେ ଜିଣିଲ ତାର ନାନା ।।
ଏକଥା ବିସ୍ତାରି ମୋତେ କହିବା ଗୋସାଇଂ ।।

× × ×

ବ୍ରହ୍ମାସୁତ ବଚନେ ବୋଲନ୍ତି ମହାମୁନି ।।
ଜେଣେ ସେ ପିତା ପୁତ୍ରେ ହୋଇକଲେ ଅନ୍ୟା ଅନ୍ୟି ।।
ତାହା ତୋତେ କହିବଇଂ ସୁଣି ହୁଅ ସୟନ୍ତାସ ।।
ଭରଥ ପୁରଣ ଯେ ଅମୁଗ୍‌ଧେ ଧ୍ୟାରସ ।।

× × ×

ନାରଦ ବିଜେ କଲେ ଜେ ବାରୁଣାବତିରେ ।।
ପ୍ରବେସ ହୋଇ ଜାଇ ଜୁଯୋର୍ଷ୍ଟିକଂ ଛାମୁରେ ।।
ଦେଖିଣ ଉଠିଲେ ତହିଂ ସାଷ୍ଟାଗଂଭରେ ।।
ଛଡ଼ ଅର୍ଘ୍ୟ ପୁଜା ବିଧି କଲେ ଧାତିକାରେ ।।

× × ×

ଗଣ୍ଡା ମାରି ପିତୃ ଶାଧ କରି ନୃପବର ।।
ତେଣୁ ବସେ ପିତା ତୋର ବସିବେ ସଙ୍ଘର ।।
ନୋହିଲେ ଦୟା ସ ନ କରଇ ଯମ ।।
ଏ କଥାକୁ ଚିନ୍ତା ତୁ କର ଜୁଯେଷ୍ଟି ରଜନ ।।

× × ×

ଆଗ୍ୟାଂ ପାଇ ଅର୍ଜୁନ ଧଇଲା ଧସି ସର ।।
ଆଗ୍ୟାଂ ମୁ ବନକୁ ସେ ଚଲିଲା ଧାତିକାର ।।
ଧାମନା କାଠର ଧନୁ କାଣ୍ଡ ବାଏସର ଗୁଣ ।।
ପିନାକି ନାଗଯେ ସୋହଇ ଧନୁ ଦ୍ରୋଣ ।।

× × ×

(ମଧ୍ୟ ଭଗନ୍ତ କିଛି)

ନାଗଦ ବୋଇଲେ ତୁମ୍ଭେ ଜୋଗେଶ୍ୱର ବିଷ୍ଣୁ ହୋଇ ।।
ନିସତେ ସାଗ୍ରାମ କରୁଅଛ କାହିଂ ପାଇଂ ।।
ହରିବତ ଗମ ବେଗେ ମାର ସୂଳପାଣି ।।
ଏତେ ଅଭିମାନ କିପାଇଂ ସହୁଅଛ ପୁଣି ।।
ହରିହର ସାଗ୍ରାମ ଯେ କରନ୍ତେ ଅଗୋଚର ।।
କୋତୋହଳ ଦେଖିବା ବୋଲି ମୁନି ମନେ କଲେ ବିଗ୍ଭର ।।
ସହଜେ ତ କଳ ବଥି ଦେଖିବାକୁ ମନ ଥାଇ ।।
ଅବସର ପଡ଼ିଛି ଆଜ ଛାଡ଼ିବାକୁ ନାହିଂ ।।

ଯେତେ ବୋଲି ମୁନି କଳି ଦନ୍ଧେ କୋଡ଼ି ମେଳି ଦେଲେ ।।
ଲଗୁ ଲଗୁ ବୋଲ ଧୁଳି ମୁଠାଯେ ମାଇଲେ ।।

× × ×

( ଶେଷରେ )

ହସ୍ତିନାକୁ ଚଳିଗଲେ ରଜା ଦୁର୍ଜୋଧନ ।।
ଦ୍ୟାରକା ଭୁବନେ ବିଜୟେ ନାରାୟଣ ।।
ଜେ ଜାହା ଭୁବନେ ଜାଇ ହୋଇଲେ ପ୍ରବେସ ।।
ସୁଣିନ ସୁଜନେ ପାପ କର ଧସ ।।
ଜଗଜ୍ଜନଙ୍କ ହିତେ କଲି ମୁଂ ପ୍ରକାସ ।।
ଅମୁଲ୍ୟ ଗହଣା ଜେ ଯେ ପୁରାଣ ବ୍ରହ୍ମାଣ୍ଡ ।।
ଭରଥୁ ପୁରାଣ ଯେ ଅଟ ଗୁଣସିନ୍ଧୁ ।।
କର୍ଣ୍ଣରେ ସୁଣନ୍ତେ ଜେ ବାଛା ହୋଯେ ସିଧି ।।
ନିରେଖ ମାଧେବ ଦାସ ହରି ଚରଣେ ସରଣ ।।
ଶ୍ରୀ ନାଗାର୍ଯ୍ଜୁନ ଏ ସଦା ଜୟେ ସମ୍ପୂର୍ଣ୍ଣ ।।
ଆହେ ସୁଗୁଜନେ ନ ଧରିବାର ଦୋସ ।।
ଶ୍ରୀକୃଷ୍ଣ କୃଷ୍ଣ ଚରଣେ ଜେ ନିତ୍ୟେ ହେ ମୋର ଆସ ।।
ଜନ୍ମେ ଜନ୍ମେ ମୁଂ ଜେ ତାହାଙ୍କର ଭଗତ ।।
ନାମ ସୁମରନ୍ତେ ନରେ ହୋଇବେ ମୁକତ ।।

ଶ୍ରୀ ନାଗାର୍ଜ୍ଜୁନ ସଦା ଜୟେ ସମ୍ପୁର୍ଣ୍ଣ ।। ଜଥା ଦୃସ୍ତିଥେ ଲେଖା ଆହେ ପଣ୍ଡିତ ଜନମାନେ ।। ସୁଧ୍ଧ ଅସୁଧ୍ଧ ପୁରାଇ ଗାଇବ ଲେଖନ କାରକୁ ଡୋସ ନ ଦେବ ।। ଯାହା ଥିଲ ଅଦ୍ଭୁସରେ ହୋ ଲେଖିଲୁଂ ।। ଯେ ପୁସ୍ତେକ ଲେଖା ବର୍ତ୍ତିଲ ।। କିଣିତିରି ଗଡ଼ରେ ହାଥିବାରି ଗ୍ରାମରେ ମଧୁପୁରୁ ଦସରା ମାସରେ ।। ଏକାଦସି ଗୁରୁବାର ଦିନେ ବେଳା ନ ବଢ଼ି ସରିକି ସପୁଂର୍ଣ୍ଣ ହୋଇଲ ।। ଶ୍ରୀ ହରି ହରେ ରଖିବେ ଉଚ୍ଚୋଇ ଇକାକୁ ଶ୍ରୀ ରାଧା କୃଷ୍ଣ ଉଧରିବେ ।।

ଯେ ପୋଷ୍ତେଜ ଜେ ମାଗି ନେଇ ଜେ ଗୋପ୍ୟ କରିବ ସେ ପାଣି ନିଷ୍ଟେ ବିଷ୍ଣୁ ଦ୍ରୋହ ହେବେ ।। ଶ୍ରୀ ଗୁରୁ ଗୋବିନ୍ଦ ଚରଣେ ସରଣ ।।



## ଶ୍ରୀ ତୁଳାଭିଣା ଲେଖନଂ (ତାଳପତ୍ର ଖେଜା) ।।

ସ୍ଲୋକଃ : ମହାସୁନ୍ୟ ଅନ୍ଧକରଂ ଜ୍ୟୋତି ରୁପ ପ୍ରକଟିତଃ ।। ଆଦିସକ୍ତି ଆଦି ମାତା ଞ ଉଂକାଂର ରୁପେ ବ୍ୟାପିତଃ ।। ଈଶ୍ୱର ଉବାଚ ।। ସୁଣ ଗୋ ପାର୍ବତି ମହା-ସୁନ୍ୟ ଜ୍ୟୋତି ରୁପ ସେ ।। ଜ୍ୟୋତିରୁ ଠ୍ୱଳ ରୁପ ହେଲା ।। ଠ୍ୱଳରେ ବିନ୍ଦୁ ହେଲା ।। ବିନ୍ଦୁର ଅର୍ଦ୍ଧ ମାତ୍ରା ହେଲା ।। ଅର୍ଦ୍ଧ ମାତ୍ରାରୁ ଓଂକାର ସବଦ ଜନ୍ମିଲା ।।

।। ଗିତ ।। ଓଂକାରୁ ବ୍ରହ୍ମରୁ ଜଗତ ।। ସୁଣ ପାର୍ବତି ଦେଇ ଚିତ୍ତ ।।୧।।
ସୁଣି ପାର୍ବତୀ ତୋଷ ହେଲେ ।। ଈଶ୍ୱର ପାଦରେ ପଡ଼ିଲେ ।।୨।।
ବୋଲନ୍ତି ଆଦି ସକ୍ତି ବାମା ।। ହେ ନାଥ କୁହ ତୁଳାଭିଣା ।।୩।।
ଓଂକାର ବ୍ରହ୍ମଟି ଜଗତ ।। ବୁଝାଇ କହ ବିସ୍ୱନାଥ ।।୪।।

ସ୍ଲୋକ :— ଅଣାକାର ଧୁ୍ମ ବର୍ଣ୍ଣ ଅନ୍ଧକାରଂ ପ୍ରକଟିତଃ ।।
ଉକାଂରଂ ସକାରଂ ମକାରଂ ନାସୟେ ଜଥାଃ ।।

ଗିତ :— ସୁଣ ମୋହର ପ୍ରିୟତମା ।। ତୋତେ କହିବା ତୁଳାଭିଣା ।।୫।।
ଆନକୁ ନ କହନ୍ତି ମୁଇଂ ।। ତୁ ମୋର ପଞ୍ଚ ପ୍ରାଣ ସହି ।।୬।।
ଅଣାକାର ଜେ ଜୋତିରୁପ ।। ସେଠାରେ ନାହିଂ ରୁପ ରେଖ ।।
ଧୁ୍ମ ବର୍ଣ୍ଣର ଛାୟ ଦିସେ ।। ଅନ୍ଧକାର ଲିସେ ପ୍ରକାସେ ।।
ବ୍ରହ୍ମାଣ ଅନ୍ଧକାର ହୋଇ ।। ଜୋତିର ପରେ ହଂସ ରଇଂ ।।
ସେଠାରୁ ଓଂକାଂର ଜନ୍ମିଲା ।। ଉକାଂର ବ୍ରହ୍ମ ପ୍ରକାସିଲା ।।
ଏମନ୍ତେଂ ହୋଇଲା ଦିବସ ।। ଦିବସୁ ଜଗତ ପ୍ରକାସ ।।
ଅର୍ଥରେ ଏବେ କହିଦେବା ।। ତୋ ମନୁ ସଂଶୟ ଫେଡ଼ିବା ।।୧୪।।

ଅର୍ଥ :— ସୁଣ ପାର୍ବତି ଅଣାକାର ଜେ ବୋଇଲୁ ।। ସେ କୁହୁକ ବର୍ଣ୍ଣଟି ।। ଜୋତି ବର୍ଣ୍ଣକଟି କୁହୁକ ବର୍ଣ୍ଣ ।। ଧୁ୍ମ ବର୍ଣ୍ଣ ଜେ ଅନ୍ଧକାରୁ

ହୋଇଲା ।। ସେ ବିନ୍ଦୁକୁ ଓଂକାର ସବଦ କହନ୍ତି ।। ଠୁଳ ରୁପ କହ ।। ସେ ଉଂକାର ସବଦୁଂ ସକାର ସବଦ ହେଲା ।। ସକାର ଜେ ସକ୍ତି ସେ ।। ସକ୍ତି ଜେ ଅର୍ଧ ମାତ୍ରା ସେ ।। ମକାର ସବଦ ଦେଲା ।। ଏହି ରୁପଟି ଦିବସ ଜାଇ ଅନ୍ଧକାର ହୋଇଲା ।। ପାର୍ବତି ଉବାଚଃ ।।

× × ×

ନାଭି ପଦ୍ମରୁ ବେଗେ ଖସି ।। ଇନ୍ଦ୍ରୁଂ ଦୁଆରେ ଜାଇ ମିସି ।।୧୧୭।।
ଇନ୍ଦ୍ରିରୁ ଖସିଲା ବହନ ।। ପଦ୍ମଂ ମଧ୍ୟରେ କଲା ସ୍ଥାନ ।।୧୧୮।।
ଏ ରୁପେ ପଦ୍ମଂ ଉତପତି ।। ସ୍ତ୍ରମନେ ସୁଣ ଗୋ ପାର୍ବତି ।।୧୧୯।।
ପାର୍ବତି ସୁଣି ତୋସ ଚିତ୍ତ ।। ଭଣଇ ବିପ୍ର ଜଗନ୍ନାଥ ।।୧୨୦।।

ଇତି ଶ୍ରୀ ତୁଳାଭିଣା ହର ପାର୍ବତି ସମ୍ବାଦେ ମହମନ୍ତ ନିର୍ଣ୍ଣୟ କଥନେ ମାତୃଗର୍ଭ ପ୍ରସଙ୍ଗୋ ନାମ ପ୍ରଥମ ଅଧ୍ୟାୟଃ ।।

ଏହିଭଳି ଦ୍ୱାଦଶଟି ଅଧ୍ୟାୟରେ ତୁଳାଭିଣା ଲେଖନ ବର୍ଣ୍ଣିତ ହୋଇ ଶେଷ ହୋଇଅଛି ।। ଦ୍ୱାଦଶ ଅଧ୍ୟାୟର ଶେଷ କେତେକ ପଙ୍କ୍ତି ଉଦ୍ଧାର କରି ପରିଚୟର ପରିସମାପ୍ତି କରଯାଇପାରେ ।।

## ଦ୍ୱାଦସ ଅଧ୍ୟାୟ

ଗଜନ ସୁଣି ତୋସ ହେଲେ ।। ଦାସଙ୍କୁ ପ୍ରଳମ୍ଭିତ ହେଲେ ।।୧।।
ସୁଣି ସକଳ ସାଧୁଜନ ।। କହନ୍ତି କୋମଳ ବଚନ ।।୨।।
ତୁମ ପ୍ରସନରେ ସୁଣିଲୁ ।। ଏ ତନୁ ସୁଫଳ ଜେ କଲୁ ।।୩।।

ପାର୍ବତି ଉବାଚଃ

ସୁଣି ପାର୍ବତି ପଶ୍ନରନ୍ତି ।। ସୁଣ ହେ କପିଳାସ ପତି ।।୪।।
ଗୋଲକ ମହାନିତ୍ୟ ସ୍ଥାନ ।। କେମନ୍ତେ ଗୋ କଲ ଭିଆଣ ।।୫।।
କେତେକ ସଖି ଗଣ ଘେନି ।। କି ରୁପେ ଛନ୍ତି ଚକ୍ରପାଣି ।।୬।।

× × ×

ସୁନ୍ୟ ଦେଉଳ କଥା ସୁଣି ।। ପାର୍ବତି ତୋସ ହେଲେ ପୁଣି ।।୬୧।।

ସୁନ୍ୟ ଦେଉଳ କଥା ସୁଣି || ପାର୍ବତି ତୋସ ହେଲେ ପୁଣି ||୬୧||
ଗୋଲକ ନିତ୍ୟ କଥା ସଖି || ସୁଣିଲୁ ଟିକି ଚନ୍ଦ୍ର ମୁଖି ||୬୨||
ସୁଣ ତୁ ମୋର ପ୍ରିୟତମା || ତୋତେ କହିଲୁ ତୁଳାଭିଣା ||୬୩||
ବ୍ରହ୍ମ କାବ୍ୟକୁ ମନେଧରି || ସୁଖେ ଗୋ ତରେଣି ସୁନ୍ଦେରି ||୬୪||
ଆମ୍ଭ ଚରଣ ଥାଅ ଛୁଇଂ || ପ୍ରଘଟ ନ କରିବୁ କାହିଂ ||୬୫||
ଜଦି କୁଜନେ ପ୍ରସିବୁ || ଅବସ୍ୟ ସ୍ୱାମୀ ଦ୍ରୋହ ହେବୁ ||୬୬||
ସୁଣି ପାର୍ବତି ହେଲେ ତୋସ || କହିଲେ ଜଗନ୍ନାଥ ଦାସ ||୬୭||
ସୁଣି ସକଳ ସାଧୁ ଜନ || ସମସ୍ତେ କଲେ ଧନ୍ୟ ଧନ୍ୟ ||୬୮||
ଗଜନ ପ୍ରଳମ୍ବିତ କଲେ || ଜେ ଜାହା ଆଶ୍ରମକୁ ଗଲେ ||୬୯||

ଇତି ଶ୍ରୀ ତୁଳାଭିଣା ହର ପାର୍ବତି ସମ୍ବାଦେ ନିତ୍ୟ ନିତ୍ୟସ୍ଥଳ କଥନେ ନାମ ଦ୍ୟାଦସୋଧ୍ୟାୟଃ || ଭିମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମ ଯଦି ସୁଦ୍ଧଂ ମସୁଦ୍ଧଂ ବା ମମ ଦୋସ ନ ବିଦ୍ୟତେ || ୟେ ପୁସ୍ତକ ବର୍ଦ୍ଧିଲ କିଣିଜର ଗଡ଼େ ହାତିବାରି ଗ୍ରାମରେ ମାଘମାସେ ସୁକଳ ପଖେ ପଞ୍ଚମି ଦିନରେ ସନିବାର ଅଣ୍ଟୁଣ ଦେବ ପାଞ୍ଚ ଘଡ଼ି ସରି ସପୂର୍ଣ୍ଣ ହୋଇଲ || ଜାହା ଥିଲି ଅଦୁସରେ ତାହା ଲେଖିଲୁ || ଥିଲ ନଥିଲ ପୁଗେଇ ଗାଇବ || କହେ ସୁଗ୍ୟୋଜନମାନେ ଦୁସ ନ ଧରିବ || ଭୋଟଦୋ ନାଈକାକୁ ରଖା କରିବ || ଶ୍ରୀ ଗୁରୁ ଚରଣେ ସରଣ || ଶ୍ରୀ ଜଗନ୍ନାଥ ଚରଣେ ସରଣ || ଶ୍ରୀରିଜନିଅ ପାଟର ଚରନେ ସରଣ || ଶ୍ରୀରିବତୀ ବନ୍ଦ ଦେବତାର ଚରଣେ ସରଣ || ଶ୍ରୀରି ସମଲେ ସରଣ || ସାଲମତ ଅଞ୍ଚଗ୍ୱସ ପଞ୍ଚାସ ସାଲ ଲେଖି ଏ ଗ୍ରନ୍ଥ ||

— : ୦ : —

## ବ୍ରହ୍ମାସ ଗୀତ ଏ (ତାଳପତ୍ର ଖେଳା)

ଶ୍ରୀ ଗଣସାଏ ନମଂ ||

ସୁଣ ପରିକ୍ଷ ନରନାଥ || କୃଷ୍ଣ ଚରିତ ଭଗବତ ||
ଗୋବିନ୍ଦେଂ ବିଭ୍ରରନ୍ତି ମନେ || ଆଜ ରମିବା ବୃନ୍ଦାବନେ ||

ଷୋଳ ସହସ୍ର ଗୋପବାଳି || ମେନ୍ତ ବରିଲେ ତପ କରି ||
ମୁଂ ତାଙ୍କ ପୁରଇବି ଆସ || ସବୁ ମୋ ଭଗତ ବିଶ୍ୱାସ ||
ଅନେକ ଜନ୍ମେ ତପ କରି || ଯେବେ ହୋଇଲେ ଗୋପନାରି ||
ରମଣି ଦେବି ନିଜ ପୁର || ଆଜ ମୁଂ କରିବି ନିସ୍ତାର ||
ଯେତେ ବିଗ୍ୟରି ବନମାଳି || ଘେନିଲେ ବିରହା ମୁରଲି ||

× × ×

ଗୋବିନ୍ଦ କର ଧରି ସିରେ || ସର୍ମ ଛାଡ଼ିଲ ମୁଖନ୍ତରେ ||
କୃଷ୍ଣ କୁ କାନ୍ତ ପଣେ ପାଇ || ଗୋପି ରମିଲେ ସନ୍ତୋସ ହୋଇ ||
ବଳୟ ନେପୁର ସବଦେ || ଗୋବିନ୍ଦ ନାଚନ୍ତି ଆନନ୍ଦେ ||
କାବେରି ଫୁଟି ଫୁଲମାଳେ || ଅବନି ପଡ଼ିଲେ ଗହଳେ ||
କୃଷ୍ଣ ରନ୍ତଜ ଧରି ଗୋପି || ଆଘ୍ରାଣ କଲେକନି ଗୋପି ||

× × ×

ପୁରଣେ ସିରି ଭଗବତ || କହିଲେ ବିପ୍ର ଜଗନ୍ନାଥ ||

ଇତି ଶ୍ରୀମଦ୍ ଭଗବତେ ମୋହା ପୁରଣେ ଦସମ ସ୍କନ୍ଧେ କୃଷ୍ଣ ରହାସ ଲିଳାୟାଂ ଗୋପିକା କାମନା କାମ ସପୁଂର୍ଣ୍ଣ || ନାମ ପଞ୍ଚମ ଅଧ୍ୟାୟଃ || ଶ୍ରୀ ରହାସ ସଦା ଯଏ ସଂପୁଂର୍ଣ୍ଣ || ଏ ପୁସ୍ତକ ବର୍ଦ୍ଧିଲ କଂଶିଚର ଗଡେ ହାଥିବାରି ଗ୍ରାମରେ ନୋଆଟୁଲରେ ସନିବାର ଦିନ ବେଳ ନ ଘଡ଼ି କି ସପୁଂର୍ଣ୍ଣ ହେଲ || ଯେ ମାସେ ଅନ୍ଧ୍ର ପକ୍ଷେ ସପ୍ତମି ସଣିବାର ଚନ୍ଦ୍ର ଜାହାଥିଲ ତାହା ମୁଂ ଲେଖିଲି || ଏ ଗ୍ରନ୍ଥ ପୁତ୍ର ପାଳ ରଖ || ଅଧମୋନ୍ତେୟ ଦୋନାଣ୍ଡି-ଙ୍କ ( ବୋଧହୁଏ ଦୋନାନାୟକ ) କୁ ଦୟାକର ହେ || ଜଗନ୍ନାଥ ଚରଣେ ସରଣ || ଶ୍ରୀରି ଜଟାପାଟ ସରଣ || ଶ୍ରୀରି ଗଙ୍ଗାଧର ଟାକ୍ରଙ୍କ ଚରଣେ ସରଣ || ଶ୍ରୀରି ନିତ୍ୟାନନ୍ଦ ଚରଣେ ସରଣ || ଶ୍ରୀରି ସମଲଇ ଚରଣେ ସରଣ || ଯେ ପୁସ୍ତକ ପୁରଇ ଗାଇବ || ଲେଖନକାରକୁ ଦୋସ ନ ଦେବ || ଦସଭୁଜା ହୁଆ ଲିଖି ବିସମନ୍ତ ଏକାନ ବେସାଲ ||

ଉହାନ ଗୀତ ପାଞ୍ଚୋଟି ଅଧ୍ୟାୟରେ ଲେଖନକାର ବିପ୍ର ଜଗନ୍ନାଥଙ୍କ ଓଡ଼ିଆ ଭଗବତ-ର ଗସକ୍ରୀଡ଼ାକୁ ଉଦ୍ଧାର କରିଅଛନ୍ତି । ଉପରୋକ୍ତ ଲିଖିତ ପଙ୍କ୍ତି ଗୁଡ଼ିକରୁ ତତ୍‌କାଳୀନ ଓଡ଼ିଆ ଭଷାର ପରିଚୟ ଅନୁମେୟ କରଯାଇପାରେ ।

———

## ଶ୍ରୀ ନାବକେଳି ଲେଖନ (ତାଳପତ୍ର ଖେଳା)

ଶ୍ରୀ ବିଘ୍ନରଜ ନମସ୍ତୁତେଃ

ଜୟ ଗୋପିନାଥ ମହିମା ମେର ।। ତମାୟାକେହୁ ଅନ୍ତର କରିପାର ।।୧
ଜୋଗିଜନେ ଯାକୁ କରନ୍ତି ଚିନ୍ତା ।। ତୁ ନାଥ ପ୍ରଭୁ ଜଗତରେଂ ଯିତା ।।୨
ନାବକେଳି କଥା ଯେ ଦିବ୍ୟ ରସ ।। ସଜ୍ଜନମାନେ ତହିଂକି ତୋସ ।।୩
ଗୋପିଏ ବୋଇଲେ ସୁଣ ପରଣ ।। ସେ କାହ୍ନୁ କଥା ଗୋ ତୁମ୍ଭେ ନ ଜାଣ ।।
ଏକଦିନେ ଆମ୍ଭେ ସର୍ବ ଗୋଆଳି ।। ଗଭ୍ରହୁଂ ଉଠିଣ ଦିପାନ୍ତ ଜାଳି ।।୫
ମଥୁର ହାଟକୁ ଯିବାର ପାଇଂ ।। ଦଧି ମନ୍ଥନରେ ପସି ଲେ ଗୋଇ ।।୬

× × ×

ସମୋଦ୍ର ପ୍ରାୟେ ସୋଭେ ଦଧିମୁହଂ ।। କହାଘରେ ବୁଲେ ପରଣ ଖୋଆ ।।୭
ଯାହାର ଅଧିକ ହୋୟେ ଗୋରସ ।। ତା ଘରେ ବୁଲଇ ଖୋଆ ଦୁଇସ ।।୮
କାହିଂ ସାଠିଯେକ ସତୋରି କାହିଂ।। ସହସ୍ରେ ବୋଲିତ କଳଣା ନାହିଂ ।।୯
ସବୁ ଗୋପିଙ୍କର ସହସ ଚିତ ।। ଦଧି ମଛନେ ଗାଉରନ୍ତି ଗିତ ।।୧୦

× × ×

ଯେମନ୍ତ ବିଗ୍ରର କରନ୍ତେ ଯେଣେ ।। ନାବ ଗୋଟାୟେ ତ ଦିଶିଲ ତେଣେ।।୬୫
କୃଷ୍ଣ ବୋଲି ତାନ୍ତୁ ନ ଜାଣୁ କେହି ।। ମାୟା ରୂପେ ଛନ୍ତି କେଉଟ ହୋଇ ।।୬୬
ଅଝାଲ ଦଉଡ଼ି ବାନ୍ଧିଛି ଟାଣି ।। ଦଦର ନାବରେଂ ପସୁଛି ପାଣି ।।୬୭
ମିନ ଖଳାଇ ତା ଅଛି କତିର ।। ଜାଲ ପଡ଼ିଅଛି ନାବ ଉପର ।।୬୮

× × ×

କୃଷ୍ଣ ନାମ ଧରି ଦିନ ବଞ୍ଚିଲେ ।। କୃଷ୍ଣ ନାମ ଧରି କିରତି କଲେ ।।୨୯୮
କୃଷ୍ଣ ନାମ ଧରି ପୁଅକୁଂ ଗଇ ।। କୃଷ୍ଣ ନାମ ଧରି ବାଛୁରି ଫେଇ ।।୨୯୯

କୃଷ୍ଣ ନାମ ଧରି ଗାଈ ଦୁହନ୍ତି ।। କୃଷ୍ଣ ନାମ ଧରି ଦିନ ହରନ୍ତି ।।୩୦୦
କୃଷ୍ଣ ନାମ ଧରି ଦିନ ଜେ ନେଇଂ।। କୃଷ୍ଣ ନାମ ଧରି ପାଣି ବୁଡ଼ାଇଂ ।।୩୦୧

× × ×

କୃଷ୍ଣ ନାମ ଧରି ବଞ୍ଚିଲେ ଦିନ ।। **ଷିଦ୍ର କୃଷ୍ଣ ଦାସ** ପସେ ସରଣ ।।

ଶ୍ରୀ ନାବ କେଳି ସଦା ଜୟେ ସପୂର୍ଣ୍ଣ ।। ଭିମସାଧି ରଣେ ଭଙ୍ଗେ।
ମୁନେ ରର୍ଧି ମତି ଶ୍ରମ ଯଦି ସୁଦ୍ଧଂ ମସୁଦ୍ଧଂ ବା ମମ ଦୋସ ନ ବିଦ୍ୟତେ ।।
ଉକ୍ତ ପୋଥିରେ ଲିଖନକାରଙ୍କର ନାମୋଲ୍ଲେଖ କରଯାଇନାହିଁ ।

---

## ଶ୍ରୀ ରାମାୟଣ ପଶସ୍ତ ପୁଷ୍ପ ଲେଖନ (ତାଳପତ୍ର ପୋଥି)

ଶ୍ରୀ ଗଣେସାୟ ନମଃ ।। ଜୟ ଅନାଦି ପୁରୁଷ ଅଦୃଷ୍ଟ ଅଶେଷ କ୍ଷିତି ରକ୍ଷା ଅର୍ଥେ ଦେହ ଧରି ।। ସୁର୍ଯ୍ୟବଂସେ ଅବତାର ପାଳିଣ ସଂଶାର ଜୁଗେ ଜୁଗେ ନାନା ତନୁ ଧରି ।।୧।।

ଅନିମିସ ସୁନ୍ୟ ରୂପି ଯୋତିମୟେ ବ୍ୟାପି, ସୁକ୍ଷ୍ମ ପରମ ଆନନ୍ଦ ମୟ ।।
ତୁମ୍ଭେ ନିତ୍ୟେଂ ନିରାକାର ଅଦୃସ୍ୟ ଅପାର, ଜିବ ରୂପେ ସବିଦେହେ ରହ ।।୨
ଜେଣୁ ଆତ୍ମାରସ ଜନେ ଆମ୍ଭେ ଆତ୍ମା ଜ୍ଞାନେ, ତେଣୁ ଯେ ଅନନ୍ତ ଶକ୍ତି ଧର ।।
ତଥାପି ହିଂ ନିଜ ଅଂସେଂ ସେଂ ଜାତ ବିଷ୍ଣୁ ବଂସେ, ଧରଣି ଭରକୁ ଅପହର ।।୩

× × ×

ଆହେ ସଂଖ ଚକ୍ରଧର କର ପ୍ରତିକାର, ସରଣ ପସିଲି ଶ୍ରୀଚରଣେ ।।
ଅନ୍ତର୍ଯାମି ଦୁଖ ହର ନିତ୍ୟେ ହେ ତୁମ୍ଭର । ଚକ୍ର ଭ୍ରମୁଥାଇ ତ୍ରିଭୁବନେ ।।୨୨।।
ଦିନ ଜନ ବନ୍ଧୁ ଅଟ ତୁଛ ଜନ ଶ୍ରେଷ୍ଟ । କରିପାର ତୁମ୍ଭ କୃପା କଲେ ।।
ପସୁ ମନୁସ୍ୟ ଜାତିରେଂ କେତେ ଯେ ଖିତିରେଂ । ତୁମ୍ଭ ଆଶ୍ରେଽକ କି ନ ତରିଲେ ।।
ଜା ଚରିତ୍ର କର୍ଣ୍ଣେ ସୁଣି ମୋକ୍ଷ ହୋନ୍ତି ପ୍ରାଣି। ଲଭନ୍ତି ବହୁ ମଙ୍ଗଳ ମାନ ।।୨୩।।
ଯେତେ ଦୁର୍ବାସନା କୁଳ ନାସ ତୁ ସକଳ । ଜେଣେ ପବିତ୍ର ହୁଅନ୍ତି ଜନ ।।୨୪।।
ବାଞ୍ଛା କଳ୍ପତରୁ ଜେଣୁ ଜଣାଇଲି ତେଣୁ । ଚିତେଂ ମୋ ଦେହେ କରୁଣାକର ।।
ତୁମ୍ଭ ପଦେ ଥାଉ ମନ କହେ ଗୋବର୍ଦ୍ଧନ । କହିବି ତୁମର ସୁଜ୍ଞସାର ।।୨୫।।

ଗୀତ ରାଗ—ଶ୍ରେଣି

ଶୁଣିବା ସୁଜନେ ଜନେ ସଙ୍କର ସମୁଖେ ଦିନେ
କର ଯୋଡ଼ି ପଚାରନ୍ତି ଗିରିସ ଜେମା ।।

ସୂର୍ଯ୍ୟବଂଶେ ହୋଇଂ ଜାତ ନୃପ ଦସରଥ ସୁତ
କ୍ଷିତି ଭର ନାସାଗ୍ର ହୋଇଲେ ମହିଂମା ।।
କଉସୀକ ଯାଗ ରଖିଲେ,
ଗଉତମ ନାରିକି ପାଷାଣୁ ତରିଲେ ।।୧।।

× × ×

ହର ମୁଖୁଂ ଏ ଚରିତ୍ର ସୁଣି ଗିରିଷ ଦୋହିତ
ପୁଣି ପଚାରନ୍ତି କହ ହେ ଶୂଳପାଣି ।।
ବୋଇଲ ଯେ ଲଙ୍କାକଇ ରାମ କଲେ କଟକାଇ
ପୁଣି ସେ କେମନ୍ତ କଲେ କହିବା ସ୍ୱାମି ।।
ସେ ଯେ ରାମ ଲକ୍ଷଣ ବେନି,
ସିନ୍ଧୁ ପୋତି ପାସ ହେଲେ ସବ ସଇନି ।।୫।।

## ଦ୍ୱିତୀୟ ଛାନ୍ଦ

ରାଗ—ପୋଇ

ସେ ଯେ ଗିରି ରଯା ସୁତା କହନ୍ତି ପ୍ରଥମା । ଧିଠ ଚରଣେ ପ୍ରଣାମ କରି ।।
ରିକ୍ଷ କପି ସନ୍ୟ ଘେନିଗଲେ ରଘୁମଣି । ସେତୁ ବାନ୍ଧି ସିନ୍ଧୁ ହେଲେ ପାରି ।।୧।।

× × × ×

ଦସଗ୍ରିବ ଆଜ୍ଞା ଘେନି ଦେଖିବୁଂ ସଇନି । ତୁମ୍ଭର ପୁଣ ସାହାସ କେତେ ।।
ସେ ଯେ କହେ ଗୋବର୍ଦ୍ଧନ ଯେଣୁ ସେ ଅଜ୍ଞାନ ।
ବୋଇଲେ ଅଇଲୁଂ ଯେହି ଅର୍ଥେ ।।୨୫।।

## ଗୀତ ରାଗ-ଚୋଖି

ଘୁଣି ଶ୍ରୀରାମ ବୋଲନ୍ତି ବେଗେଂ ତୁମ୍ଭେ ନିଅ ମର୍ତ୍ତି
କିମ୍ପା ରୂପ ଗୋପ୍ୟ କରି ହୁଅୟେସନ ।।

ସଭବେଂ ଜେ ମର୍ତ୍ତି ହୋଇଂ ମଧ୍ୟସ୍ତ ପଣ କରଇ
ଜାଣିଲୁଂ ରାବଣର ନ ଜାଣିମା ପଣ ।।

ମନ୍ତ୍ରି କି ଯେ ପେସିଲା ରାର
ଆପଣେ ନାସ ଜାନ୍ତି ରଜା ମନ୍ତ୍ରିବର ।।୨।।

× × ×

କହେ ମର୍ତ୍ତି ଜୋଡ଼ି କର ସୁଣ ଦେବ ଲଙ୍କେଂଶ୍ୱର
କପି ରୂପ ହୋଇ ଆମ୍ଭେ ସନ୍ୟେ ପସିଲୁ ।।

ଭୁକ୍ଷ କପି ଅପ୍ରମିତ ନୁହଇଂ ଦେବ କଳିତ
ଶ୍ରୀରାମ ସଇନ ଦେଖି ଆସିର୍ଯ ହେଲିଂ ।।

ଯେକେ ଯେକେ ବାନରମାନେ
ଦେହମାନ ଦିସଇ ପର୍ବତ ସମାନ୍ୟେ ।।୫।।

ଏହିଭଳି ତ୍ରୟୋଦଶଟି ଛାନ୍ଦ ଉପରୋକ୍ତ ରାମାୟଣ ପଟିଶ ପଞ୍ଚ ଲେଖନରେ ଦୃଷ୍ଟି ଗୋଚର ହୁଏ ।

## ତ୍ରୟୋଦଶ ଛାନ୍ଦ

### ରାଗ-ଚୋଇ

ବିଭିଷେଣର ବଚନ ସୁଣିଣ ଲକ୍ଷଣ ରକତ ବର୍ଣ୍ଣ ନୟନ କଲ ।।
ବୋଲେ ଶ୍ରୀରାମଙ୍କୁ ରହିଂ ଆଜ୍ଞା ଦିଅ ତୁହି ଧନୁ ଧରି ଉଠି ଉଭା ହେଲ ।।୧।।
ସେ ଜେ ଦସାନନ ବଳା ଜପ ତପ କଲ ଧାତା ତରା ବର ଦେଲ ତାକୁ ।।
ଧନୁ ଧରି ମୁଂ କହୁଛିଂ ରାବଣର ବଛିଂ ମାରିବି ପାରିଲେ ଆସି ରଖୁ ।।୨।।

× × ×

ବାଜି ସଉମେତ୍ରି କାଣ୍ଡ ସାରଥିର ମୁଣ୍ଡ ଛିଡ଼ିଲା ଦେଖି ସେ ଇନ୍ଦ୍ରଜିତ ।।
ଲକ୍ଷଣକୁ ସେ କହଇ ଆସଇଂ ମୁଁ ଜାଇଂ ବିରଥି ହୋଇଲି ନାହିଂ ରଥ ।।୨୪।।
ସନ୍ୟ ସଙ୍ଗତରେ ମୋର ଯୁଧ୍ଧୁଥାଅ ବିର ଯେକ୍ଷଣି ଜାଇ ଆସିବି ବେଗେ ।।
ଦେଷ୍ଟା ଦସାନନ ସାନ କହେ ଗୋବର୍ଧନ ବୋଲଇ ଲକ୍ଷଣ କର୍ଣ୍ଣ ଲଗେ ।।୨୫।।

## ଗିତ ସୁଗ-ଚୋଖି

ସେ ଜେ ଦସାନନ ଭଇ          ଲକ୍ଷଣ କର୍ଣ୍ଣେ କହଇ
ଛାଡ଼ି ନ ଦିଅ ଯେହାକୁ ଓଗାଳ ଆଜ ।।
ଭଲ ସମୟଟି ଯେହି          ଯେମନ୍ତ ବେଳ ନପାଇ
ମହାକ୍ଷେତ୍ରି ଅଟେ ଯେ ରବଣ ତନୁଜ ।।
ଜିବାକୁ ଯେ କରିଛି ମନ
ଗଲେ ଆଣିବ ଯେ ଦେବଦଳଣ ଜାନ ।।୧।।

× × ×

ବାବଲ ସୁମରି ବିନ୍ଧି          ଆସନ୍ତେଣ ବାଣ ଛେଦି
ଯେସନ ସମୟେ ହନୁମତ ଧାଇଂଲ ।।
ପର୍ବତ ଜେ ଥିଲ କରେ          ଫିଙ୍ଗିଲ ତା ରେସଭରେ
ଇନ୍ଦ୍ରଜିତ ବଜ୍ରସର ପେସି ଛେଦିଲ ।।
ଦେଖି ସଉମିତ୍ରି ଧାଇଂଲେ
ଧନୁ ଓଟାରି ଦଇତ ଆଗେ ମିଳିଲେ ।।୫।।

ଉପରୋକ୍ତ ରମାୟଣ ପଚିଶ ପୋଇ ତାଳପତ୍ର ପୋଥିର ଅବଶିଷ୍ଟାଂଶ ବର୍ଣ୍ଣିତ ବାରଗୋଟି ଛାନ୍ଦର ପତ୍ରଗୁଡ଼ିକ ଲୁପ୍ତ ହୋଇଯାଇଥିବା ମନେହୁଏ ।

ରମାୟଣ ପଚିଶ ପୋଇ ତାଳପତ୍ର ପୋଥିର ଏକ ପ୍ରକାଶିତ ପୁସ୍ତକ "ପଚିଶ ପୋଇ" ଲେଖକ ଝିରପାଣି ନିବାସୀ ଶ୍ରୀପରୀକ୍ଷିତ ପଣ୍ଡାଙ୍କଠାରୁ ପଢ଼ିବା ସୁଯୋଗ ଲଭ କରିଅଛି । ଏଥିରେ ପଞ୍ଚବିଂଶ ଛାନ୍ଦ ଶ୍ରୀରମଚନ୍ଦ୍ରଙ୍କ ଜନ୍ମଠାରୁ ଅଯୋଧ୍ୟାରେ ସିଂହାସନ ଆରୋହଣ କରିବା ପର୍ଯ୍ୟନ୍ତ ରମାୟଣର ବିଷୟକୁ

ନେଇ ବର୍ଣ୍ଣନା କରାଯାଇଅଛି । ପଚିଶ ଚୋଇ ମୁଦ୍ରିତ ପୁସ୍ତକରେ ମୁଖ୍ୟତଃ ଇଙ୍କା କାଣ୍ଡର ବିବରଣୀ ମୁଖ୍ୟ ସ୍ଥାନ ଅଧିକାର କରିଅଛି । ଗୋଟିଏ ଚୋଇ (ରାଗ-ଚୋଇ) ଏବଂ ଗୋଟିଏ ଗୀତ (ରାଗ-ଶ୍ରେଣୀ)ର ଆଶ୍ରୟରେ ପ୍ରତ୍ୟେକ ଛାନ୍ଦ ଗଠିତ ହୋଇଅଛି । ପ୍ରତ୍ୟେକ ଚୋଇ ପଞ୍ଚବିଂଶ ପଦ ଓ ପ୍ରତ୍ୟେକ ଗୀତ ପାଞ୍ଚଗୋଟି ପଦକୁ ନେଇ ରଚିତ ହୋଇଅଛି । ଚୋଇ ଏବଂ ଗୀତଗୁଡ଼ିକର ଭଣିତିରୁ ରାମାୟଣ ପଚିଶ ଚୋଇର ରଚୟିତା କବି ଗୋବର୍ଦ୍ଧନ ବୋଲି ଜଣାପଡ଼େ ।

ରାମାୟଣ ପଚିଶ ଚୋଇର ଏକ ପ୍ରାଚୀନ ତାଳପତ୍ର ପୋଥି ହାତୀବାରି ଜମିଦାର ସ୍ୱର୍ଗତ ଦିଗାମ୍ବର ଶେଖର ଦେଓଙ୍କ ଶ୍ରୀ ଶ୍ରୀ ରଘୁନାଥ ଜୀଉଙ୍କ ମନ୍ଦିରରେ ସ୍ୱର୍ଗତ ଗୌରାଙ୍ଗ ପଣ୍ଡା ପ୍ରତ୍ୟହ ପାଠ କରୁଥିଲେ । ଗୌରାଂଗ ପଣ୍ଡାଙ୍କ ଅନ୍ତେ ଏହାଙ୍କ ପୁତ୍ର ଶ୍ରୀ ପରୀକ୍ଷିତ ପଣ୍ଡା ପୋଥିଟି କିଛିକାଳ ପାଠ କରିଥିଲେ । ସମୟ କ୍ରମେ ପରୀକ୍ଷିତ ପଣ୍ଡା ହାତୀବାରିରୁ ଓଲ୍ହାଣୀ ତଥା ଗର୍ଜନ ଶେଷରେ ଝିରପାଣିର ବାସିନ୍ଦା ହେଲେ । ଅବହେଳା ବଶତଃ ରାମାୟଣ ପଚିଶ ଚୋଇ ପୋଥିଟି ନଷ୍ଟ ହୋଇ ଯାଇଅଛି । ଏବେ ବି ବୃଦ୍ଧ ପରୀକ୍ଷିତ ପଣ୍ଡାଙ୍କ କଣ୍ଠରେ ପଚିଶ ଚୋଇର ସୁମଧୁର ଗୀତି ଲେଖକ ଉପଭୋଗ କରୁଛି ।



## ଶ୍ରୀ ରାହାସ ଲେଖ୍ଯଃ (ତାଳପତ୍ର ଖେଜା) ।।

ଉକ୍ତ ଶ୍ରୀ ରାହାସ ଲେଖ୍ଯଃ ତାଳପତ୍ର ଖେଜାରେ ଜଗନ୍ନାଥ ଦାସଙ୍କ ଶ୍ରୀକୃଷ୍ଣ ରାସଲୀଳା ପ୍ରଥମ ଅଧ୍ୟାୟରୁ ପଞ୍ଚମ ଅଧ୍ୟାୟ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଅଛି ।

ପ୍ରଥମ ଅଧ୍ୟାୟର ପ୍ରଥମ ଦୁଇପଦ ଏବଂ ପଞ୍ଚମ ଅଧ୍ୟାୟର ଶେଷ ଦୁଇ ପଦର ଉଦାହରଣ ସହିତ ପୋଥିର ଲେଖନକାରଙ୍କ ମନ୍ତବ୍ୟ ପାଠକଙ୍କ ଅବଗତ ନିମନ୍ତେ ଦିଆଯାଇଅଛି ।

### ପ୍ରଥମ ଅଧ୍ୟାୟ

ଶ୍ରୀ ଗଣେଶାୟ ନମ ।।

ସୁଣ ପରୀକ୍ଷ ନରନାଥ ।। କୃଷ୍ଣ ଚରିତ ଭାଗବତ ।। ୧ ।।
ଗୋବିନ୍ଦ ବିଚାରନ୍ତି ମନେ ।। ଆସ ରମିବା ବୃନ୍ଦାବନେ ।। ୨ ।। (ଇତ୍ୟାଦି)

× × ×

## ପଞ୍ଚମ ଅଧ୍ୟାୟ (ଶେଷ ଦୁଇପଦ)

କେ ତାହା କରିବଟି ଆନ ।। ସବୁରି ପ୍ରଭୁ ଭଗବାନ ।।୧୦୧।।
ସ୍ୱଜନ ଯନଙ୍କର ହିତେ ।। କହଇ ଦାସ ଯଗନାଥେ ।।୧୦୨।।

ଇତି ଶ୍ରୀମତ୍ ଭଗବତେ ମୋହା ପୁରଣେ ଦସମ ସ୍କନ୍ଧେ ରହାସ କ୍ରିଡ଼ାୟାଂ ଗୋପିକା ବିଗ୍ରରଣେ ନାମ ପଞ୍ଚମୋ ଅଧ୍ୟାୟଃ ।। ଯେ ପୋସ୍ତେକ ସମ୍ପୁର୍ଣ୍ଣ ହେଲ ନଇଡ଼ା ଗ୍ରାମରେ ।। ଶ୍ରୀଶ୍ରୀ ଯଗନାଥ ଶ୍ରୀ ଚରଣେ ସରଣ ।। ଯେ ପୋସ୍ତେକ ବର୍ଦ୍ଧିଲ ନଇଡ଼ା ଗ୍ରାମରେ ମାସ ନାମ କାର୍ତ୍ତିକ ଦିବା ସୋବାର ଦିନ ବେଳ ତିନି ଘଡ଼ିଠାରେ ବର୍ଦ୍ଧିଲ ।। ବିଦ୍ୟାଧର ଅରକ୍ଷିତକୁ ରକ୍ଷା କରିବେ ।। ଗୁରୁଦେବ ସରଣ ।। ଶ୍ରୀଶ୍ରୀ ସମଲଇଶ୍ୱରିଙ୍କ ଚରଣେ ସରଣ ।।

## ଶ୍ରୀମଦ୍ ଭାଗବତ ଏକାଦଶ ସ୍କନ୍ଧ (ତାଳପତ୍ର ପୋଥି)

ଶ୍ରୀମଦ୍ ଭଗବତ ଏକାଦଶ ସ୍କନ୍ଧ ତାଳପତ୍ର ପୋଥିର ଆରମ୍ଭରୁ ତିନି ଅବା ଚାରେଟି ପତ୍ର ନଷ୍ଟ ହୋଇ ଯାଇଅଛି । ସୁତରାଂ ପୋଥିର ଆଦ୍ୟ ପରିଚୟ ନ ଦେଇ ଶେଷ ପରିଚୟ ଦିଆଯାଇ ପାରେ ।

ଉପରୋକ୍ତ ତାଳପତ୍ର ପୋଥିରେ ଜଗନ୍ନାଥ ଦାସଙ୍କ କୃତ ଶ୍ରୀମଦ୍ଭାଗବତ ଏକାଦଶ ସ୍କନ୍ଧ ; ପ୍ରଥମ ଅଧ୍ୟାୟରୁ ଦ୍ୱାତ୍ରିଂଶ ଅଧ୍ୟାୟ ବର୍ଣ୍ଣିତ ହୋଇଅଛି ।

## ଦ୍ୱାତ୍ରିଂଶ ଅଧ୍ୟାୟଃ

ବାଦରାୟଣି ରୋବାଚ

ଏବେ ହୋ ପରିକ୍ଷିତ ସୁଣ ।। ବିଧାତା ଆଦି ଦେବଗଣ ।।୧।।
ମିଳିଲେ କୃଷ୍ଣର ଅଗ୍ରତେ ।। ରଜନି ମୁଖେ ଦିନ ଅନ୍ତେ ।।୨।।
ତ୍ରିଦସ ନାଥ ପୁରନ୍ଦର ।। ମିଳିଲେ ରଜତ ସଙ୍କର ।।୩।।
ସିଦ୍ଧ ଗନ୍ଧର୍ବ ପିତୃଗଣ ।। ଫିଗ୍ରସ କିନ୍ନର ଚାରଣ ।।୪।।
ଯକ୍ଷ ଗୁହ୍ୟକ ବିଦ୍ୟାଧର ।। ଘେନାଇଂ ନାନା ଉପହାର ।।୫।।
କୃଷ୍ଣ ଗମନ ଖେଳା ଦେଖି ।। ମିଳିଲେ ଭୁବନ ଉପେଖି ।।୬।।
ଦିବ୍ୟ କୁସୁମ ବରଷନ୍ତି ।। ଜୟ ସବଦେ କଲେ ସ୍ତୁତି ।।୭।।

ନିକଟେ ଦେଖି ଦେବଗଣ ॥ ମନେ ଚିନ୍ତିଲେ ନାରାୟଣ ॥୮॥
ଦେବଙ୍କ ମନ୍ଦିରେ ମୋ ବାସ ॥ ଏଣୁ ଏ ମୋହର ବିଶ୍ୱାସ ॥୯॥
ଏହାଙ୍କ ଅର୍ଥେ ଅବତରି ॥ ମୁହିଂ ଧରଣି ଭର ହରି ॥୧୦॥

× × ×

ନିଜ ଭୁବନେ ଗଲେ ହରି ॥ ଜୟ ସବଦେ ଦିଗ ପୁରି ॥୧୮॥
ଶ୍ୟାମ ସୁନ୍ଦର କଳେବର ॥ ଅଶେଷ ଜନ ସୁଖଘର ॥୧୯॥

× × ×

ସୁଣି ତୋ ପିତିମହ ଗଣେ ॥ ରଜ୍ୟ ଛାଡ଼ିଲେ ତତ୍କ୍ଷଣେ ॥୧୦୧॥
ତୋ ସିରେ ଅବସେକ କରି ॥ ତୁ ଜେ ପାଣ୍ଡବ ବଂସ ଧାରିଂ ॥୧୦୨॥
ଉତରେ ହେସ ପଥେ ଗଲେ ॥ ଅନ୍ତେ ବୈକୁଣ୍ଠ ସେ ଲଭିଲେ ॥୧୦୩॥
ସୁଣ ହେ ଅଭିମନ୍ୟୁ ବଳା ॥ ଜେତେ କହିଲି କୃଷ୍ଣ ଲିଳା ॥୧୦୪॥

× × ×

ସ୍ରଦ୍ଧା ଅସ୍ରଦ୍ଧା ଅବହେଳେ ॥ ଜେ ପ୍ରାଣି ସୁଣେ ଏକାବେଳେ ॥୧୧୨॥
ଭଗତି କରେ କୃଷ୍ଣ ପାଦେ ॥ ନ ପଡ଼େ ଭବ ପରମାଦେ ॥୧୧୩॥
ପରିକ୍ଷେ କହେ ବ୍ୟାସ ସୁତ ॥ ଶ୍ରୀ ଏକାଦଶେ ଭଗବତ ॥୧୧୪॥
ଏଣେ ଜିବର ପରିତ୍ରାଣ ॥ ସୁଜନେ ନିତ୍ୟେଂ ଏହା ସୁଣ ॥୧୧୫॥
ଭଗତି କୃଷ୍ଣ ପାଦେ ଲଭ ॥ ମନୁଷ୍ୟ ଜନ୍ମ ଏ ଦୁର୍ଲ୍ଲଭ ॥୧୧୬॥
ବୋଲଇ ବିପ୍ର ଜଗନ୍ନାଥ ॥ ମୁ ତୁମ୍ଭ ଭୃତ୍ୟଙ୍କର ଭୃତ୍ୟ ॥୧୧୭॥

ଇତି ଶ୍ରୀମଦ୍ ଭଗବତେ ମହାପୁରଣେ ପରମ ହଂସ ସହିତାୟାଂ ବୟାସିକାଂ ଏକାଦଶ ସ୍କନ୍ଧେ ଶ୍ରୀକୃଷ୍ଣ ବୈକୁଣ୍ଠ ଗମନେ ନାମ ବତିଶୋଧ୍ୟାୟଃ ॥ ବିରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳେଶ୍ୱର ଚିରଧିବିରବର ପ୍ରତାପ ଶ୍ରୀଶ୍ରୀ ଦିବ୍ୟସିଂହ ଦେବ ମାହାରଜାଙ୍କ ବିଜେ ଶୁଭ ରଜ୍ୟେ ସମସ୍ତ ୧୯ ସ ୧୪ ଅଙ୍କେ ବରଶଲୟା ଗ୍ରାମରେ ବର୍ତ୍ତିତ ପାଲକୁଟ ପ୍ରଗନେ ଶନୈଶ୍ଚର ଦତ୍ୟବାସରେ ମାର୍ଗଶିର ଶୁକ୍ଳପକ୍ଷ ଅଷ୍ଟମି ପୂର୍ବ ଭେଦୋନାମାଧି ନକ୍ଷତ୍ରେ ବେଳ ୧୫ ଘଡ଼ି ଠ୍ୟରେ ଶ୍ରୀଶ୍ରୀ ଜଗନାଥ ମହାପ୍ରଭୁଙ୍କ ମଣ୍ଡୋପରେ ॥ ଶ୍ରୀମାନ ବଳଭଦ୍ର ଆମ୍ଭଜେ ବିଶ୍ୱନାଥ ବସ୍ତ୍ୟ ଲିଖିତଂ ମିଦଂ ପୁସ୍ତକଂ ॥ ଗ୍ରନ୍ଥକର୍ତ୍ତା ସ୍ୱୟଂ

ବ୍ୟାସୋ ଲିକ୍ଷ୍ୟ କୋପି ବିନାୟକ ।। ତସ୍ୟା ବିଚଳିତଂ ବୁଧି ମନୁସ୍ୟା ଣାଂଚ କାକଥା ।। ଆଦ୍ରସେ ଯାଦୃଶଂ ଦୃଷ୍ଟି ତଂ ଦୃଶଂ ଲିଖିତଂ ମୟା ।। ସୁଦ୍ଧୋ ବା ଯର୍ଦିବା ଶୁଦ୍ଧଂ ମମ ଦୋସ ନ କାୟତେ ।। ଶ୍ରୀ ।। ପୁସ୍ତକଂ କଠିନି ବାମା ବାହନଂ ଚନ୍ଦନଂ ଧନ ।। ପର ହସ୍ତେ ନ ଦାତବ୍ୟଂ ଦାତବ୍ୟଂ ଦୃଷ୍ଟିଗୋଚରେ ।। ତୈଳ ଦ୍ରକ୍ଷଂ ଜଳା ଦକ୍ଷଂ ଦ୍ରକ୍ଷମାଂ ଶ୍ଳେଦ ବନ୍ଧନାତ୍ ।। ଅକ୍ଷୂଜପର ହସ୍ତେଭ୍ୟେ ଇଦଂ ବଦତି ପୁସ୍ତକ ।।

—:୦:—

## ରସ କଲ୍ଲୋଲ ତାଳପତ୍ର ପୋଥି

### ରସ କଲ୍ଲୋଳ ପ୍ରଥମ ଛାନ୍ଦଃ

ପତ୍ର ସଂଖ୍ୟା—୧

ଶ୍ରୀ ହେରମ୍ବାୟ ନମଃ ।। ରାଗ—ଗୁଜ୍ଜରି ।। ସଂଗମତିୟାବାଣି ।।କା।ରା।
କର ସାଧୁଜନମାନେ ମନକୁ ଯେକ ।। କର ଧିରେ ଧ୍ୟାନ ନିଳାଚଳ ନାୟେକ ।।୧।
କମନିୟଂ ଶ୍ରୀମୁଖ-ଚନ୍ଦ୍ରରୁ ଅଧିକ ।। କଲେ ଦ୍ରସନ ନରହେ ସଂସାର ଶୋକ ।।୨।।
କମଳ ନୟନ କୋଟି ସୁଖ ଦାୟକ ।। କଳାଡ଼ୋଳା ଭ୍ରମର ଚୁମ୍ବିଲ ପ୍ରାୟେକ ।।୩।।
କପୋଳେଂ ସୁବର୍ଣ୍ଣ ରହୁ ରେଖ ଝଳକ ।। କେଉଁ ଲୋକ ଅଙ୍ଗ ନକରଇ ପୁଲକ ।।୪।।
କହି ନୋହଇ ରଙ୍ଗ ଅଧିକ ଟେକ ।। କଚି ଜଡ଼ ହୋଯେ ଜାହାକରି ବିଲୋକା।୫।।

× × × ×

କରୁଣା ସାଗର ସାଗରଜା ନାୟେକ ।। କରନ୍ତି ଭୟ ଅଭୟ ବର ଦାୟେକା।୨୦।।
କଷ୍ଟ ମହିଧର ମହିଧର କଣ୍ଟକ ।। କଳମସ ବାରଣ ବାରଣ ଅନ୍ତକ ।।୨୧।।
କର ଆଜ୍ଞା ସୁର ସୁର ପ୍ରଭୁ ଯେତେକ ।। କହୁ ଦୀନକୃଷ୍ଣ କୃଷ୍ଣ କଥା ଅନେକା।୨୨।।

ରସକଲ୍ଲୋଳ କାବ୍ୟ ରଚୟିତା କବି ଦୀନକୃଷ୍ଣ ଦାସ ଚଉତିରିଶଟି ଛାନ୍ଦରେ "କ" ଅକ୍ଷରକୁ ଆଦ୍ୟରେ ରଖି ବିଭିନ୍ନ ରାଗ ରାଗିଣୀରେ ତାଙ୍କର ସୁପ୍ରସିଦ୍ଧ ରସକଲ୍ଲୋଳ କାବ୍ୟ ରଚନା କରି ଅଛନ୍ତି । ଉପରୋକ୍ତ ରସକଲ୍ଲୋଳ ତାଳପତ୍ର ପୋଥିରେ ବଉତିରିଶଟି ଛାନ୍ଦର ସମ୍ପୂର୍ଣ୍ଣ ବର୍ଣ୍ଣନା ଲିଖନକାର ଉଦ୍ଧାର କରି ଅଛନ୍ତି ।।

## ଚଉତିରିଶ ଛାନ୍ଦ

ରାଗ–ବରାଡ଼ି ॥ ଆଶାଢ଼ ସୁକ୍ଳବାଣି ॥

କଂସ କରି କର୍ଣ୍ଣିରବ କେସବ
କହନ୍ତି ପ୍ରସନ କରି ଉଦ୍ଧବ
କହ କହ ଗୋପପୁର ସନ୍ଦେସ
କେମନ୍ତ ହୋଇଛନ୍ତି ଗୋପବଂସ
କହନ୍ତି ଉଦ୍ଧବ ହେ
କର ଅବଧାନ ପ୍ରଭୁ ମାଧବ ॥୧॥

× × ×

କୁଟିଳ ନିଳ ଅଳକା ବଳିଆ
କମନିୟ ଫୁଲ ବନମାଳିଆ
କଳଧଉତ କାନ୍ତି ଦୂକୁଳିୟା
କିଶୋରି ବରଜ ଧଂଗ ମେଳିୟା
କୃଷ୍ଣ ଦାସ ମନ
କମଳ ଉନିଦ୍ର କର ତପନ ॥୩୪॥

ଶ୍ରୀ ରସକଲ୍ଲୋଳ ସମାପ୍ତଃ ॥ ଶ୍ରୀରାମ ସରଣ ମମ ଜିବନଂ ॥
॥ ଶ୍ରୀ ॥ ମୁଦ୍‌ଗଲସ୍ୟ କୁଳୋପନ୍ନ ସଙ୍ଖ୍ୟାପତି ମଧିୟତା ॥ ରସକଲ୍ଲୋଲଙ୍କଂ ଲିଖ୍ୟେ ବୈଦ୍ୟନାଥ ଦ୍ୱିଜୋତ୍ତମଃ ॥

ପୋଥିଟିର ପତ୍ର ସଙ୍ଖ୍ୟା ୧୦୨ । ପୋଥିଟି ସମ୍ପୂର୍ଣ୍ଣ ଅଛି ମାତ୍ର ଏହାର କେତେକ ଅଂଶ ଉଇଖାଇ ନଷ୍ଟକରି ଦେଇଅଛନ୍ତି ।

## ପ୍ରେମ ସୁଧାନିଧି ଲେଖନୀ (ତାଳପତ୍ର ପୋଥି)

ପ୍ରେମ ସୁଧାନିଧି ଲିଖିତଂ ଆଦ୍ୟ ଜମକ ପ୍ରଥମ ଛାନ୍ଦ ॥

ଶ୍ରୀ ଗଣେଶାୟ ନମଃ ॥ ରାଗ ମଂଗଳ ଗୁଜ୍ଜରି ॥
ମୁକୁନ୍ଦ ମୁକୁନ୍ଦ ବିଧୁ ଜୟ ଉଦିତ ॥ ଜନଙ୍କ ଜନକ ତୋଷ କରେ ବିଦିତ ॥

ଅନନ୍ତ ଅନନ୍ତ ଜାହା ମହିଂମା ମାନ ।। ଜଗତି ଜଗତି ବ୍ରତ ଲିଳା ରଞ୍ଜନ ।।
ସିତା ସିତାମ୍ବୁଜ ମୁଖ ମତ ଭ୍ରଷଳ ।। ରାମ ରାମ କଦଳି କର୍ମ୍ମେଂନେ ସର୍ମର ।।
ଲକ୍ଷଣ ଲକ୍ଷଣ ବନ୍ତ ପାଦେଂ ଜା ଯେବେ ।। ଭଞ୍ଜ ଭଞ୍ଜ ବିରବର ସନ୍ତାପ ଯେବେ ।।

× × ×

ଚନ୍ଦ୍ରମା ଚନ୍ଦ୍ରମା ହାସି ସୋଭ ପୁଛଇ ।। ସୁମନା ସୁମନା ପରିବାରି ଡ଼କାଇ ।।
ବିଗ୍ରରି ବିଗ୍ରରି ନେତ୍ର ସୋଭ କଥନ ।। ଆଳି ଆଳି କରେ ହୋଇଂ ହରସମନ ।।
ଉପଇନ୍ଦ୍ର ଉପଇନ୍ଦ୍ରଧ୍ୟାନେଯେ ଛାନ୍ଦ ।। ରଚିତର ଚିତକରି ଅତି ଆଂନନ୍ଦ ।।

ଏହାପରେ ଅବନାନେତ୍ର ଚଣ୍ଡିକା ଦୃତିୟ ଛାନ୍ଦଃ ରାଗ ବରାଡ଼ି ଆସାଢ଼ ସୁକ୍ଳ ବାଣିରେ ଗାଇବ; ପ୍ରାନ୍ତ ଜମକ ତୃତିୟ ଛାନ୍ଦଃ ରାଗ ଆହାରି; ଅଭୁତ ଉପମା ଚତୁର୍ଥ ଛାନ୍ଦ ରାଗ କଲ୍ୟାଣ ଆହାରି; ବିରୋଧ ଭସା ପଞ୍ଚମ ଛାନ୍ଦ ରାଗ ନିଳିଣି ଗୌଡ଼ା କଛସା ବାଣିରେ ଗାଇବ; ରୁପକ ସଷ୍ଠମ ଛାନ୍ଦ ରାଗ ଚକ୍ରକେଳି; ଅନୁପ୍ରାସୟ ସପ୍ତମ ଛାନ୍ଦ ରାଗ ରେଖି; ଅନୁପ୍ରାସ ସିଂହାବଲୋକନ ଅଷ୍ଟମ ଛାନ୍ଦ ରାଗ ବଂଗଳାଶ୍ରୀ; ପ୍ରାନ୍ତଜମକ ନବମ ଛାନ୍ଦ ରାଗ କେଦାର କାମୋଦି; ର୍ତ୍ତି ଭଂଗି ଦସମ ଛାନ୍ଦ ରାଗ କାଳି; ଆଦ୍ୟ ପ୍ରାନ୍ତ ଜନମମକ ଯେକାସ ଛାନ୍ଦ ରାଗ ଇଛାବତି ମଧୁପ ଚଉତିଶାବାଣି; ଆଦ୍ୟ ଦ୍ୱାଦସ ଛାନ୍ଦ ବିଳାପ ରାଗ କାନୋଡ଼ା; ଜୋଡ଼ି ଜୋଡ଼ି ଜମକ ତ୍ରୟୋଦସ ଛାନ୍ଦଃ ରାଗ ଖଣ୍ଡ କାମୋଦି; ଦୃଷ୍ଟାନ୍ତରେ ଚତୁର୍ଦ୍ଦଶ ଛାନ୍ଦ ରାଗ ଶଙ୍କରା ଭରଣ; ଉଲଟ ଅନୁଲୋମ ବିଲୋମ ପଞ୍ଚଦଶ ଛାନ୍ଦ ଏବଂ ସୋଡ଼ଦସ ଛାନ୍ଦ ରାଗ ମଂଗଳ ଜୁଗ୍ମ ପ୍ରଭୃତି ଛାନ୍ଦଗୁଡ଼ିକର ନାମବଳୀ ଉକ୍ତ ପୋଥିରେ ଦେଖିବାକୁ ମିଳେ ।

## ସୋଡ଼ଦଶ ଛାନ୍ଦ

### ରାଗ ମଂଗଳ ଜୁଗ୍ମ

ପତିକାନ୍ତ ପ୍ରିୟେ ବଚନ କର୍ଣ୍ଣରେ ସୁଣି
କୋପମାନ ନାସକଲ ରାମା ସିରୋମଣି

ହେମ କନକ ଗାତ୍ର ତା ପୁଲକିତ ହୋଇ ।।
ପଦ୍ମ କମଳ ବିଜିତ ନେତ୍ରେ ଢ଼ାଳି ଗୁହିଂ ।।୧।।

× × ×

ତ୍ରିପୁର ବିଜୟି ପ୍ରର୍ବଭୂତପତି ଅଜ ॥
ତ୍ରିପୁର ବିଜୟି ସର୍ବଭୂତପତି ଅଜ ॥
ରାଘବ ସିବ ଭବନା କରି ଏ ପ୍ରକାର ॥
କହେ ରସେ ଉପଇନ୍ଦ୍ର ଭଞ୍ଜ ବିରବର ॥
ହେଉ ପ୍ରଭୁ କୃପା ଅକୁପାର କୃପାକର ॥
ଖ୍ୟାତ ହେଉ ପ୍ରେମ ସୁଧାନିଧି ଗିତ ମୋର ॥
ଏ ପ୍ରବନ୍ଧ ବିରଚି ସତ ଅଷ୍ଟସଠି ପଦ ॥
ସଦନ କରୁ ଉତ୍ତମ ଜନକଂର ହ୍ରଦ ॥

ଭିମ ସ୍ୟାପି ରଣେ ଭଗ୍ନେଂ। ମୁନେ ରପି ମତିଭ୍ରମ ॥ ଯଦି ସୁଦ୍ଧ ମସୁଦ୍ଧମ୍ବା ମମ ଦୋସ ନ ବିଦ୍ୟତେ ॥

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପ୍ରେମ ସୁଧାନିଧି କାବ୍ୟ ଉପରୋକ୍ତ ତାଳପତ୍ର ପୋଥିରେ ସମ୍ପୂର୍ଣ୍ଣ ବର୍ଣ୍ଣିତ ହୋଇଅଛି । ପୋଥିର ଅନେକାଂଶ ଉଇ-ଖାଇଥିବାରୁ କାବ୍ୟଟିର କେତେକ ଅଂଶ ପଢ଼ିବା ସମ୍ଭବ ହୋଇପାରୁନାହିଁ । ଏତଦ୍‌ ବ୍ୟତୀତ ପ୍ରେମ ସୁଧାନିଧି ପୋଥିର ଶେଷରେ କେତେକ ଅସମ୍ପୂର୍ଣ୍ଣ ଚଉତିଶା ଦୃଷ୍ଟିଗୋଚର ହୁଏ । ବୋଧହୁଏ ଅନ୍ୟ ଏକ ପୋଥିର କେତେକ ପତ୍ରକୁ ଉକ୍ତ ପୋଥିରେ ରଖିଦିଆଯାଇଅଛି । ଲେଖକ ଅସମ୍ପୂର୍ଣ୍ଣ ଚଉତିଶାର କେତେକ ଦୃଷ୍ଟାନ୍ତ ନିମ୍ନରେ ଉଦ୍ଧାର କରୁଅଛି ।

## ବିବିଧ ଚଉତିଶା

### ଓଲଟ ଚଉତିସା

ଖଗପତି ବାଣି ଦୂତକରି ଘେନି ଖଣ୍ଡୋର ମାତଗଳ
ଖଞ୍ଜନି ନେତ୍ରି ସମିପରେ ଜାଇଣ ଖଞ୍ଜାଳ ସବୁ କହିଲ ॥କୋ।
କ୍ଷମାନିଧିଙ୍କର ବାରତ ॥ ଖୋଭ ପାଇଲେ ସୁଣି ବୃତାନ୍ତ ହେ
କରଧରି ଶଖି ବୃସଭନୁ ଜେମା କୁଞ୍ଜବନେ ଜାଇ ହେଲେ
କୃପାନିଧି ଦେଖି ହରସ ହୋଇ ଚତୁସର୍ଷ ଆରମ୍ଭିଲେ ହେ
କଲେ ବେନିଚିତ ତୋସ ॥ କହେ ବିପ୍ର ଭଥଙ୍କରି ଘୋସ ହେ

## ପବନ ଚଉତିଶା ଏ ପୁରୁଷ ଉକ୍ତି ରାଗ କେଦାର କାମୋଦି :

କହୁଛି ଦଇନିରେ ପବନ ଦୂତ ।। କାନ୍ତାକୁ କହ ମୋର ସୁଭ ବୃତାନ୍ତ ରେ ।।
କରିବୁ ମୋର ପାଇଂ ବାରେ ଗମନ ।। କିଣିବୁ ଆଜ୍ଞ ଆଦିମୋର ଜିବନରେ ।।
ଖଟାଇ ଥିବ ନେତ୍ର ମୋହର ପଥରେ ।। ଖୁରଜେ ଦେଇଂଆସି ଅଛି ତର୍ଣ୍ଣିରେ ।।
ଖୁମାଳଂ ବିନ୍ଧୁଥିବ ଖଣ୍ଡ ମଦନ ।। ଖିନ ଉଦରି କେହ୍ନି ବଂଚିବ ଦିନରେ ।।

## ଶ୍ରୀଚନ୍ଦ୍ର ଚଉତିଶା ଲେଖ୍ୟତେ ରାଗ—ଆହାରି :

ବିଦେସେ କଉଂ ରସିକ ଚନ୍ଦ୍ରମାକୁ କହେ ପ୍ରିୟା କେବେ ପାଇବି ।।
ବିସମ ମିନ କେତନ ଶର ଘାତ ଦୁସନ ମାତ୍ରେ ଛଡ଼ାଇବି ।। ବୁଧହେ ।।
ବିନତି କରୁ ଜଣାଇବି ।। ବିଛେଦ ଦୋସ ଅପମାନ ସେମାନ ବଡିକି କହି ମନାଇଂବି ।।

× × ×

ବିସବାହୁ ସୁତ ରିପୁ ପଦ ତାକୁ ପାଇ ମୁଂ ତୁଚ୍ଛ କରଇବି ।।
ବିହି ମୋତେ ଯେତେ କଲେ ଗଂଗାଧର ସିରେ ସୁରଭି ବୁହାଇବି ।।
ବୁଧ ହେ ।। ବିଦେଶ ଦୁଃଖ ଛାଡ଼ାଇବି ।। ବିପ୍ର ପଦ୍ମନାଭ
ରସିକ କହଇ ମୁହିଂ ନିକି ଏହା ପାଇବି ।

## ରାମ ଶୋକ ଲେଖ୍ୟତେ ।। ଶ୍ରୀ ।। ରାଗ ମଙ୍ଗଳ କଳସାବାଡ଼ୀ ।।

କରନ୍ତି କାରୁଣ୍ୟ ରାମ ସିତା ଗୁଣ ଗୁଣି
କେଣେ ଛାଡ଼ିଗଲୁ ସଖି ପ୍ରାଣର ମିତଣି ଗୋ
କ୍ଷଣେ ହେଂ ନ ଛାଡୁ ସଖି ଏ ମୋହର ପାସ
ଖଣ୍ଡିଲୁ କେବଣ ବିହି ଏଡ଼େ ସ୍ନେହ ଆସ ଗୋ
ଗୁଣର ବଲ୍ଲଭି ସିତା କେଣେ ଛାଡ଼ିଗଲୁ
ଗହନ ବନସ୍ତେ ମୋତେ ଏତେ କଷ୍ଟ ହେଲୁ ଗୋ
ଘରୁଂକେ ବାହାର କଲେ କଏକୟୀ ମାଈ
ଘେନି ତୋତେ ବନବାସ ହେଲି ବଇଦେହି ଗୋ ଇତ୍ୟାଦି

କବି ଗୋପିନାଥଙ୍କ ଚଉତିଶା :—

× × × ×

ଠିକ ବାରତା ଜେତେକ ସନ୍ଧି କଥା ଠାକୁରଣି କି କହିବ ।।
ଠୁଳ କରି ସବୁ ଗୋପିକିଂ ବସାଇ ପ୍ରବୋଧ ବଚନ ଦେବ ।।
ଉଦ୍ଧବ ହେ ।। ଠାକୁରଙ୍କ ଠାକୁରଣି ।। ଠିକେ ଶ୍ରୀରାଧାକୃଷ୍ଣ ପଦ୍ମ ପାଦରେ
କବି ଗୋପିନାଥ ଭଣି ।।୧୨।।

ଡ଼ାଳିମ୍ବ ଦନ୍ତି ରାଧିକାକୁ ଡ଼ାକିଣ ଯେକାନ୍ତ କରି କହିବ
ଡ଼ୋଲା ପିତୁଳା ପ୍ରତିମାକୁ ଆମ୍ଭର ଅନ୍ତର କଲ୍ଲ ଦଇବ
ଉଦ୍ଧବ ହେ ।। × × × ।। ଡ଼କାଇତ ଜାରସନ୍ଧ କଥା ଦୂରୁ ଦେବୁ
ଆମ୍ଭେ ଦରସନ ।।୧୩।।

ଢ଼ଳୁଛି ଆମ୍ଭ ନିରନ୍ତରେ ଉଦ୍ଧବ ଭିତରେ କ୍ରୋଟ ବହନି ।।
ଢ଼ଳି ପଡିବାକୁ ସର୍ଖି ଅତି ଜାଣନ୍ତି ସେଇତ ସିଧ୍ୟ ଜୋଗ୍ନି ।।
ଉଦ୍ଧବ ହେ ।। ଢଡ଼ ରଙ୍ଗି ଗ୍ଭପେ ଢ଼ମ ।। ଢ଼ାଢ ସମାର୍ଦ୍ଧି
କେବଳ ରଖି ଅଛୁଂ କରୁଛିଂ କରି ନିୟମ ।।୧୪।।

× × ×

ବଡ଼ କଥା କଲ ଅଇଲି ଉଦ୍ଧବ କହିଲ କୃଷ୍ଣ ସନ୍ଦେସ ।।
ବାରତା ପାଇଲୁ ତୁମ୍ଭଙ୍କୁ ଦେଖିଲୁ ଯେ ଆମ୍ଭ ଲାଭ ବିସେସ ।।
ଉଦ୍ଧବ ହେ ।। ବୋଲିବ ଯେତେକ ମାତର ।। ବିନୟ ହୋଇ
ଗୋପିଏ ମାଗିଛନ୍ତି ପ୍ରେମ ପାସୋର ମନ୍ତର ।।୨୩।।

ଭବେ ଗଦ ଗଦ ବିଉଳିତ ବଚନ ନୟନ ଜଳ ଜଳିକା ।।
ଭଗତି ଲକ୍ଷଣ କୁଣ୍ଠିତ କଣ୍ଠେଣ ଫୁଲତେ ରୋମ ମାଳିକା ।।
ଉଦ୍ଧବ ହେ ।। ଭବେ ଗୋପି ପ୍ରସଂସିଲେ ।। ଭଲ କରି-ଚନ୍ଦ
ମ୍ଭାଙ୍କାୟେ ରଜାଙ୍କୁ ରାଧିକା ମେଲଣି ଦେଲେ ।।୨୪।।

× × ×

ଛ ଛନ୍ଦ କୃଷ୍ଣ କଥାରେ କର୍ଣ୍ଣିବୁ ଉଦ୍ଧବ ଗୋପିକଂ ବାଣି
କ୍ଷିର ସିନ୍ଧୁ ସୁତା ପତି ପଦ୍ମ ପାଦେ କବି ଗୋପିନାଥ ଭଣି
ଉଦ୍ଧବ ହେ ।। ଷଡ଼ ଭୁଜ କର ଲୟେ ।। ଛ ଛନ୍ଦେ
ଶ୍ରୀ ଭଗବତ ରସଖାୟ ଜମଦଣ୍ଡ ନାହିଁ ଭୟେ ।।୩୪।।

କବି ଭୁପତିଙ୍କ ଚଉତିଶା :—

× × ×

ହା କୃଷ୍ଣ ବୋଲି କେ ଗାଲେ ହାତ ଦେଇ କାନ୍ଦନ୍ତି ଏକୁଂ ଆରେକ ।।
ହଜାଇ ଗ୍ୟାଂନ ସୋକ ସିନ୍ଧୁ ମଧ୍ୟରେ ବୁଡାଇ ନାନା ବିବେକ ।। ଉଦ୍ଧବ ହେ ।।
ହତ୍ୟା ହେବ ସିନା ମନେ ନ କଲେ ।। ସିଳାଠୁ କଠିଣ ହୃଦୟ ତୁମ୍ଭର
ବୋଲିବେ ତୁମ୍ଭେ ନ ଗଲେ ।।୩୩।।

କ୍ଷମାନିଧି କହେ ଶୁଣସି ଉଦ୍ଧବ ମୁଂ ନିରନ୍ତରେ ଅଛିଂ ଗୋପେ
ଛାଡ଼ି ମନ ଦେହ ସୋୟ ନେତେ × × × ଗୋପେ ।। ଉଦ୍ଧବ ହେ ।।
କ୍ଷେମ ଗୋପିଗାଳି ଶୁଣି ।। ଛାର ପ୍ରାୟେ ମୋତେ ଦେବ ସ୍ତୁତିବାଣି
କବି ଭୁପତି ବଖାଣି ।।୩୪।।

କବି ଜଗନ୍ନାଥ ଦାସଙ୍କ ଏକ କବିତା :—

ତାମ୍ରଚୁଡ଼ଙ୍କର ବାଣି ।। ଶୁଣି ଶ୍ରୀରାମ ଜନନି ।।
ଶଂଖଙ୍କ ର ଦେଇ ପାଣି ।। ଉଚସ୍ୱରେ ଧ୍ୱନି ଭଣି ।
।। ଜିବଧନ ଡ଼ାକିଲେ ନ ଶୁଣି ହେ ରଘୁମଣି ।।୧।।
କୁମୋଦ କଲେ ଶୟନ ।। ହସିଲେ ସାରଦ ବନ
ବିଷ୍ଣୁ ଚରିତ ଗାୟନ ।। କଲେ ମୁଖେ ସାଧୁଜନ
।। ଶୁଭିଲଣି ଆସା ଘୋସ ଧ୍ୱନି ହେ ରଘୁମଣି ।।
।। ଉଠ ରାମ ।। ପାହିଲା ରଜନି ହେ ରଘୁମଣି ।।

× × ×

ଶୁଣି ଜନନୀ ଉତ୍ତର ।। ପଲଙ୍କ ତେଜି ବସ୍ତର ।।
ଅନ୍ତ ପୁରରୁ ବାହାର ।। କେଶବାର ଧୀଟାକର ।।
କରଯୋଡ଼ି ନାନା ସ୍ତୁତି ଭଣି ହେ ରଘୁମଣି ।।

।। ଉଠ ରାମ ।। ପାହିଲା ରଜନି ହେ ରଘୁମଣି ।।
କହେ ଜଗନ୍ନାଥ ଦାସ ।। ଆହେ ଜାନେକ ବିଳାସ ।।
× × × ।। କେ କରି ପାରେ ଉଲ୍ଲାସ
ତୁମ୍ଭ ବିନା ।। ଅଛି କେ ଧରଣି ହେ ରଘୁମଣି ।।
ଉଠରାମ ପାହିଲା ରଜନି ହେ ରଘୁମଣି

ଭିମସ୍ୟାପି ରଣେ ଭଙ୍ଗୋ ମୁନେ ରପି ମତିଭ୍ରମ ।। ଜଦି ସୁଦ୍ଧ ଅସୁଦ୍ଧଂବା ମମ ଦୋସ ନ ବିଦ୍ୟତେ ।। ˜ ।। ଶ୍ରୀ ରାମଚନ୍ଦ୍ର ଦେବ ଗଜପତିଙ୍କ ଅ୨୧ଙ୍କେ ଶ୍ରାବଣ କୃଷ୍ଣ ଶୌରିବାର ଚତୁର୍ଥି ଦିନ ଏ ପୋସ୍ତକ ସଂପୂର୍ଣ୍ଣ ହୋଇଲା ।। କର୍କଟେଦରଣେ ପକ୍ଷେ ଚତୁର୍ଥ୍ୟାଂ ଶୌରି ବାସରେ ।। ମୁଦ୍‌ଗଲସ୍ୟ କୁଳୋପର୍ଣ୍ଣ ଶକାବ୍ଦ ୧୭।୫୫

## ଓଁ ନମଶ୍ଚଣ୍ଡିକାୟୈ (ତାଳପତ୍ର ପୋଥି)

ଆରମ୍ଭ—ଅବିଘ୍ନ ମସ୍ତୁ ... ... ଇତି ଚଣ୍ଡିସ୍ତବ ଶାପ ବିମୋଚନଂ ।।

× × ×

ଶେଷ : ପ୍ରୀତିର୍ମେ କ୍ରିୟତେ ସାପି ସଂକୃତ୍ସୁଚରିତେ ଶ୍ରୁତେ
ଶ୍ରୁତଂ ହରତି ପାପାନି ତଥା ରୋଗ୍ୟଂ ପ୍ରୟଚ୍ଛତି ।।

ପୋଥିର ଲମ୍ବ : ଏଗାର ଫୁଟ ଛଅ }
ପୋଥିର ପ୍ରସ୍ଥ : ଏକ ଫୁଟ ଚାରି ଇଞ୍ଚ } ପତ୍ର ସଂଖ୍ୟା ବୟାନବେ

## ପାରସ୍କର ଗୃହ୍ୟେ ଦଶକର୍ମ ସୂତ୍ରଃ ଲିଖ୍ୟତେ (ତାଳପତ୍ର ପୋଥି)

ଆରମ୍ଭ : ଶ୍ରୀ ଗଣେଶାୟ ନମଃ ।। ଅବିଘ୍ନମସ୍ତୁ ।। ପାରସ୍କର ଗୃହ୍ୟେ ଦଶକର୍ମ ଲିଖ୍ୟତେ ।।

× × ×

ଶେଷ : ଦାଲଭସ୍ୟ ଗୋତ୍ରସ୍ୟ । ଜମଦଗ୍ନି ଉର୍ବ ପ୍ରୁବନ ଚ୍ୟବନ ଭୃଗୁ ପ୍ରବରଃ ।। ଜମଦଗ୍ନି ସ ଗୋତ୍ରସ୍ୟ ।। ବୃଣସୋବୃଷ୍ଣା ବିଷ୍ଣୁ ମୋଦି ପ୍ରବରଃ ।। ଦଣ୍ଡା ବିନାୟକ ଗୋତ୍ରସ୍ୟ ।। ଭର୍ଗବ ବଶିଷ୍ଠମିତ୍ରା ବରୁଣ କୁଣ୍ଡିନ୍ୟ ପ୍ରବର ।। ଇତି ପ୍ରବରଃ ସମାପ୍ତଃ ।।

## ନିତ୍ୟକର୍ମ ସ୍ତୋତ୍ରାବଳୀ (ତାଳପତ୍ର ପୋଥି)

ନାନାଦି ଦେବ ଦେବୀ ନବ ଗ୍ରହ ନକ୍ଷତ୍ର ଋତୁମାନଙ୍କ ଋଷିଛନ୍ଦ ଅଙ୍ଗନ୍ୟାସ ଜପ ପୂଜା ହୋମ ଦାନ ଓ ବିବିଧ ବୀଜ ମନ୍ତ୍ର ଉପରୋକ୍ତ ପୋଥିରେ ଦେଖିବାକୁ ମିଳେ । ପୋଥିଟିର ପ୍ରତ୍ୟେକ ପତ୍ରର ଲମ୍ବ ଏକ ଫୁଟ ତିନି ଇଞ୍ଚ ଅଟେ । ପ୍ରତ୍ୟେକ ପତ୍ରର ଉଭୟ ପାର୍ଶ୍ୱରେ ଚାରି ଧାଡି କରି ସଂସ୍କୃତ ଭାଷାକୁ ଓଡ଼ିଆ ଅକ୍ଷରରେ ଲେଖାଯାଇଅଛି । ପୋଥିର ସମୁଦାୟ ପତ୍ର ସଂଖ୍ୟା ୧୨୬ ଖଣ୍ଡ ପତ୍ର ଅଟେ ।

ଆରମ୍ଭ : ଓଁ ନମୋ ଗଣେଶ ବିଘ୍ନେଶ ଗିରିଜା ନନ୍ଦନ ପ୍ରଭୋ ।। ସର୍ବ ବିଘ୍ନ ବିନାଶାୟ ଶ୍ରୀ ଗଣାଧି ପତୟେ ନମଃ ।। ଯ ସହସ୍ର ଗଣେଯାମୋମକରେ ଯଣ୍ୟ ବାହନ ।। ତସ୍ମିଂଶର୍ବସ୍ୟାନ୍ତର୍ଯ୍ୟର୍ଥଂ ବର୍ତ୍ତୁଂଶ-ପତ୍ର ଏବଚ ମେବଚ ।। ଓଁ ଅ ଦିତ୍ୟଶ୍ଚନ୍ଦ୍ରଂମା ଭୌମୋ ବୁଧ ଜିବୋଭୃମୋ ସୁତ ।। ଶୌରି ସ୍ୱରରି କେତୁଶ୍ଚ ଗ୍ରହେଭ୍ୟୋଶ୍ଚ ନମୋନମଃ ।।

× × ×

ପରିଶେଷରେ : ଓଁ ଧ୍ୟାୟେହଂ ରାମ କୃଷ୍ଣଂ ରଘୁକୁଳ ନନ୍ଦିନଂ ପିତ ବସ୍ତ୍ରଂ ପ୍ରସନ୍ନଂ ଯୁଗ୍ମଂ ଯୁଗ୍ମାକ୍ଷ ଭୂତଂ ଭକ୍ତିଜନ ମନୋହ୍ଲାଦକଂ ଶୋଡ଼ଷାକ୍ଷ ।। ଦ୍ୱାତ୍ରିଶଂବର୍ଣ୍ଣଗୁଣାବୟମବୟ ତନୁଂ ଉଷରଂ ସର୍ବବିଜ୍ଞଂ ସଂସାର କୃଷ୍ଣାୟ ଗୋବିନ୍ଦାୟ ଗୋପିଜନ ବଲ୍ଲଭାୟ ସ୍ୱାହା ।।

## ଯୋତସ ରତ୍ନମାଳା ଲକ୍ଷଣେ (ତାଳପତ୍ର ପୋଥି)

ଶ୍ରୀ ଗଣେଶାଏ ନମଃ ।। ଶିବା ଭବାନି ଗାର୍ଗେଶ ଶୁଦ୍ଧାୟ ସନକାଦୟ ।। ଯୋତିସ ରତ୍ନମାଳାୟାଂ ବ୍ୟାସେନ ପରିକିର୍ତ୍ତିତାଃ ।।୧।। ମନ୍ୟାଦି ଶାସ୍ତ୍ରାର୍ଣ୍ଣ ପୁରେରଧି ହାସମ୍ୟକ୍ ତଥାଭ୍ୟାସ ଚିନ୍ତୁ ଯଥାର୍ଥଂ ।। ଦୃଷ୍ଟ ଚ ଶିଷ୍ୟର ରଣଂ ଚ କାର ଶ୍ରୀ ବିଶ୍ୱନାଥ ରଚିତଂ ଗ୍ରନ୍ଥ ରତ୍ନମାଳା ।।୨।। ଗ୍ରହାୟ ବିଧାନଂ ।। ଆଦିତ୍ୟ ସବିତା ସୁର୍ଯ୍ୟୋ ଉଷରର୍ତି ଦିବାକରଃ ।। ତିଷ୍ଣାଂ ସୁତପନୋ ଭନୁଃ ଶହସ୍ରାଂସୁ ପ୍ରଭକର ।। ଅର୍ଥ ଆଦିତ୍ୟ ସବିତା ସୁର୍ଯ୍ୟ ଉଷର ଅର୍କ ଦିବାକର ତିଷ୍ଣାସୁ ତପନ ଭନୁ ସହଶ୍ରାସୁ ପ୍ରଭକର ବୋଲି ।। ହିଂମାସୁ ଚନ୍ଦ୍ରମା ସୋମୋ ମୃଗାଙ୍କେନ୍ଦୁ ନିସାକରଃ ।। ଶିତରସ୍ମି ନିଷାନାଥ ଶଶକଂଃ ଶଶ ଲାଞ୍ଛନଃ ।। ଅର୍ଥଃ ।। ଚନ୍ଦ୍ରକୁଂ

ହିଂମାଶୁ, ଚନ୍ଦ୍ରମା, ସୋମ, ମୃଗାଙ୍କ, ଇନ୍ଦୁ, ନିସାକର, ସିତରସ୍ମି, ନିସାନାଥ, ଶଶାଙ୍କ. ଶଶ ଲଞ୍ଛନ ବୋଲି ।। ଇତ୍ୟାଦିରୁ ଆରମ୍ଭ ହୋଇ ନାନାବିଧ ବିଷୟ ବର୍ଣ୍ଣିତ ହୋଇଅଛି ।

× × ×

ତାଗ ଚନ୍ଦ୍ର ସୁଦ୍ଧି,—ଇତିଶ୍ରୀ କୈଳାସ ବାସିନୋ ସିବ ଭବାନି ସୁକାୟ ସନକାଦୟ ସଂପାଦେ ଯୋତିଷ ରତ୍ନମାଳାୟାଂ ତାଗ ଚନ୍ଦ୍ର ନିର୍ଣ୍ଣୟ ନାମ ପ୍ରଥମୋଽଧ୍ୟାୟ ।।

ଗୋଚର ଫଳ କଥନଂ, ତୃଣ କାଷ୍ଠ ଛେଦନ, ବାର ତିଥି ଯୁକ୍ତ ଅମୃତ ଯୋଗଃ, ବିଶିଷ୍ଟ ନିର୍ଣ୍ଣୟ କଥନଂ, କାଳିଦାସ କଟପାୟା, ଲଗ୍ନ ପ୍ରମାଣ, ଜାଣିମା, ଜାତକ ପ୍ରକରଣ ଗ୍ରହ ଦୃଷ୍ଟି ଗଣ୍ଡ ମାତୃହା ପିତୃହା, ନବ ଗ୍ରହ ରିଷ୍ଟ ନିର୍ଣ୍ଣୟ, ବାଳାନାଂ ଜନ୍ମ ସମୟ ଲଗ୍ନ ପ୍ରମାଣ, ଆଦି ଦଶଟି ଅଧ୍ୟାୟ ବର୍ଣ୍ଣନା ଶେଷରେ ଇତି ଶ୍ରୀ କୈଳାସ ବାହିନ୍ୟେ ଶିବ ଭବାନୀ ଶୁକାୟ ସନକାଯୋ **ବ୍ୟାଘ୍ରୋକ୍ତ** ଯୋତିଷ ରତ୍ନ ମାଳାୟାଂ ଦ୍ୱାଦଶ ଲଗ୍ନ କୁଣ୍ଡଳି ଜାତକ ନିର୍ଣ୍ଣୟୋ ନାମୋ ଦଶମୋଽଧ୍ୟାୟଃ ।। ହାରିତସ୍ୟ କୁଳାୟନଂ ସାଙ୍ଖ୍ୟାଗ୍ରର୍ଯେ ତଥୈନୃଣାଂ ।। **ଡମ୍ବୁରୁଧର ମମ ନାମଂ** ଚ ରତ୍ନମାଳା ଗ୍ରନ୍ଥ ଲିକ୍ଷତେ ।।

ଦ୍ୱାଦଶ ଲଗ୍ନ ରିଷ୍ଟ କଥନଂ, ନିଧନାଧି ପ୍ରତିରଷ୍ଟ, ଗଜଯୋଗ ବୋସି ବେସି ଉଭୟଚରି ଯୋଗଃ, ଅପଘାତ ମୃତ୍ୟୁ ନିର୍ଣ୍ଣୟ ସ୍ଥିରି ଜାତକ ନିର୍ଣ୍ଣୟ, ଜାତ୍ରାୟାଂ ମାସ ଫଳ, ଯାତ୍ରା ପ୍ରକରଣ, ବାରଫଳ ଓଷା ପ୍ରସଂସା, ତ୍ରିବିଧୋତ୍ପାତ ନିର୍ଣ୍ଣୟଃ, ମଣ୍ଡଳ ଉତ୍ପାଦାଦି ଦୁର୍ଭିକ୍ଷ ନିର୍ଣ୍ଣୟଃ, ଶୁଭଦିନ ପ୍ରମାଣ, ଶୁଦ୍ଧା ଶୁଦ୍ଧ କନ୍ୟାକାଳ ବର ନିର୍ଣ୍ଣୟୋ, ବିବାହେ ମାସଫଳଃ, ରବି ଗୁରୁ ଚନ୍ଦ୍ର ଶୁଦ୍ଧି ନିର୍ଣ୍ଣୟ, ଦଣ୍ଡ ମେଳକାଦି ଏକୋଦର ବିବାହ ନିର୍ଣ୍ଣୟ, ଅଥ ବାର ଫଳ, ଅଥ ନବବଧୂ ଗମନ ମାସଫଳ, ନାମ କରଣାଦି ଚୂଡ଼ା କର୍ଣ୍ଣବେଧ, ଅନ୍ନ ପ୍ରାସନ୍ନ ବିଦ୍ୟାରମ୍ଭ, ମୃଗୟା ଚକ୍ରଂ, ଗଜାଭିଷେକ, ରତ୍ନାଦି ଅଳଙ୍କାର ହସ୍ତି ଦୋଳାଦି ଔଷଧ ଭକ୍ଷଣ, ଆରୋଗ୍ୟ ସ୍ନାନ, ଗଜ ଦ୍ରସନ, ହଳ ପ୍ରବାହ, ଧାନ୍ୟ ଚ୍ଛେଦନ, ତୃଣ ଗୋଗ୍ରଳନ, ନୌକାଯାତ୍ରା, ଦେବତା ପ୍ରତିଷ୍ଠା, କୂପ ପୁଷ୍କରିଣୀ ପ୍ରତିଷ୍ଠା, ଗର୍ଭ ପ୍ରସ୍ନାଦି, ଗ୍ରାମ ସଂକ୍ରାନ୍ତି ; ଶ୍ରୀ ସିବ ଯାତ୍ରା ଅଥ ଗୌରୀ ଯାତ୍ରା, ଗୃହ ଭୂମି ସୋଧନ, ତଥାଚ କାଳିଦାସେ ଜୋତିଷ ଦୋହା, ଗୃହ ଭୂମିବର୍ଗ ଗୃହ ସ୍ତମ୍ଭ ନିର୍ଣ୍ଣୟୋ,

ଚାଷ୍ଣ ନିର୍ଣ୍ଣୟ, ଗୃହ ଶଭ, ଗୃହ ବନ୍ଧ, ଗୃହ ନିର୍ଣ୍ଣୟ, ଗୋଚର ନିର୍ଣ୍ଣୟ, ଅଥ ଢବସ୍ତି, ବନ୍ଦାପନା ଆଦି ଉପରୋକ୍ତ ବିଷୟଗୁଡ଼ିକୁ ଏକାଦଶ ଅଧ୍ୟାୟରୁ ଚତ୍ଵିଶ ଅଧ୍ୟାୟ ମଧ୍ୟରେ ବର୍ଣ୍ଣିତ ହୋଇଅଛି । ଗଦ୍ୟ ପଦ୍ୟ ଶ୍ଳୋକ ଓ ଦୋହାବଳୀ ମାଧ୍ୟମରେ ପୋଥିଟି ପାଠକକୁ ଦିବ୍ୟରସ ପ୍ରଦାନ କରେ ।

ପରିଶେଷରେ ଯୋତିଷ ରତ୍ନମାଳା ପୋଥିର ୨୩୦ ପତ୍ରରେ ସ୍ତିରି ପୁରୁଷ ଜାତି ବିଗ୍ରହ ଆଦିର ଲକ୍ଷଣ ବର୍ଣ୍ଣନା ଆରମ୍ଭରୁ ଗ୍ରନ୍ଥଟି ଅସଂମ୍ପୂର୍ଣ୍ଣ ହୋଇ ରହିଅଛି ।

## ଅମର କୋଷ (ତାଳପତ୍ର ପୋଥି)

ପ୍ରଥମ ପତ୍ର : ଅମର କୋଷ ତାଳପତ୍ର ପୋଥିର ବିଦ୍ମୁଖରେ ରାମ ସୀତା ଲକ୍ଷ୍ମଣଙ୍କର ଚିତ୍ର ଅଙ୍କିତ ହୋଇଅଛି । ଅଙ୍କନ ଭିତରେ "ଶ୍ରୀ ରାମଚନ୍ଦ୍ର ସିତା ଲକ୍ଷ୍ମଣ ତିନିହେ ବନ ଜାଉଛନ୍ତି ।" ପତ୍ରର ଅପର ପାର୍ଶ୍ୱରେ ଅଶ୍ୱାରୋହି ପଦାତିକ ଦେବ ଦେବୀଙ୍କ ସମାରୋହରେ ଭରତ ଶ୍ରୀରାମଙ୍କୁ ବନରୁ ଫେରାଇବା ପାଇଁ ଯାତ୍ରା କରୁଥିବା ଚିତ୍ର ଅଙ୍କିତ ହୋଇଅଛି । ଚିତ୍ରାଙ୍କନରେ ଯେ ପ୍ରତ ଚ ଭ୍ରତଦେବ ଅଯୋଧ୍ୟାରୁଂ ଯାଉଛନ୍ତି ଶ୍ରୀ ରାମଙ୍କୁ ଫେରାଇବା ପାଇଂ ହେ" ଲେଖାଯାଇଅଛି ।

ଦ୍ଵିତୀୟ ପତ୍ର :

ଅପ୍ସରେ ଯକ୍ଷ ରକ୍ଷୋ ଗନ୍ଧର୍ବ କିନ୍ନରାଃ ।। ପିଶାଚୋଗୁହ୍ୟୋକଃ ସିଦ୍ଧୋଭୂତୋଽମୀ ଦେବା ଯୋନୟଃ ।। ଅସୁର ଦୈତ୍ୟ ଦୈତ୍ରେୟ ଦାନବେନ୍ଦ୍ରାରି ଦାନବାଃ ।। ଶୁକ୍ର ଶିଷ୍ୟା ଦିତି ସୁତାଃ ପୁର୍ବ ଦେବାଃ ସୁରଦ୍ଵିଷଃ ।। ସର୍ବଜ୍ଞଃ ସୁଗତୋ ବୁଦ୍ଧୋ ଧର୍ମରାଜା ସ୍ଥାଗତାଃ ।।

× × ×

ଇତ୍ୟ ମରସିଂହ କୃତୌ ନାମ ଲିଂଗାନୁ ଶାସନେ ।। ସ୍ଵର୍ଗାଦିଃ ପ୍ରଥମଃ କାଣ୍ଡଃ ସାଂଗିତ୍ରମର୍ନ୍ତିତଃ ।। ଏହାପରେ ଯଥାକ୍ରମେ ଇତି ପାତାଳ ବର୍ଗଃ, ଇତି ଶୈଳ ବର୍ଗଃ, ଇତି ବନୌଷଧି ବର୍ଗ, ସିଂହାଦି ବର୍ଗଃ, ମନୁଷ୍ୟ ବର୍ଗଃ, ବହ୍ମ ବର୍ଗଃ, କ୍ଷତ୍ରିୟ ବର୍ଗଃ, ଶୁଦ୍ର ବର୍ଗଃ, ବୈଶ୍ୟ ବର୍ଗଃ, ପ୍ରାଣୀ ବର୍ଗଃ, ବିଶେଷ ବର୍ଗ, ସଂକୀର୍ଣ୍ଣ ବର୍ଗଃ, ଇତ୍ୟନେନାର୍ଥ ବର୍ଗଃ ଇତ୍ୟ ବାୟବର୍ଗଃ ଆଦି ବର୍ଗଗୁଡ଼ିକର ସଂସ୍କୃତ ଶ୍ଳୋକଗୁଡ଼ିକ ଓଡ଼ିଆ ଲିପିରେ ଲେଖାଯାଇଅଛି ।

ଶେଷ ପତ୍ର :—

ଇତି ଲିଂଗାଦି ସଂଗ୍ରହ ବର୍ଗଃ ।। ଇତ୍ୟ ମରସିଂହ କୃତୌ ନାମ-ଲିଂଗାନୁଶାସନେ ସାମାନ୍ୟ କାଣ୍ଡ ତୃତୀୟଃ ସାଂଗଏବ ସମନ୍ୱିତଃ ।। ଭିମସ୍ୟାପି ରଣେ ଭଂଗୋ ମୁନେରପି ମତିଭ୍ରମ ଯଦି ଶୁଦ୍ଧଂ ମଶୁଦ୍ଧଂ ବା ମମ ଦୋଷ ନ ବିଦ୍ୟତେ ।। ଭଗ୍ନ ପୃଷ୍ଠ କଟୀ ଗ୍ରୀବ ତୁଲ୍ୟ ଦୃଷ୍ଟିରଧୋମୁଖ ।। ଦୁଃଖେନ ଲିଖିତଂ ଗ୍ରନ୍ଥ ପୁତ୍ରବତ୍ ପରିପାଳୟେତ୍ ।। ପୁସ୍ତକ ହରତେ ଯସ୍ତୁ କାଣୋ ଦୁଃଖୀ ଭବେନ୍ନର ।। ମୃତାସ୍ୱର୍ଗ ନ ଗଚ୍ଛନ୍ତି ପ୍ରତି ନରକେଂ ବ୍ରଜେତ୍ ।। ଯଥା ଦୃଷ୍ଟ ତଥା ଲେଖନଃ ।। ରଇଗଡ଼ ପଦ୍ମପୁର ଶାସନରେ ଆଶ୍ୱିନ ମାସ କୃଷ୍ଣ ପକ୍ଷ ରଇବାର ଚତୁର୍ଥୀ ଦିନରେ ବେଳ ଦଶଘଡ଼ିଠାରେ ଯେ ପୁସ୍ତକ ସମାପ୍ତଃ ।। ଓଁ ନାରାୟଣ ଶରଣ ମମଃ ।। ଶ୍ରୀ ରାମଚନ୍ଦ୍ର ଓ ଜଗନ୍ନାଥ ରକ୍ଷା କରିବେ ବିପ୍ର ଭରଥ ଚନ୍ଦ୍ରଙ୍କୁ ।। ତହିଂର ଅଧା ମୋର ।। ରାମଚନ୍ଦ୍ରଙ୍କର ୧୪ ଅଙ୍କେ ଯେ ପୁସ୍ତକ ସମାପ୍ତଃ ।।

କାଣ୍ୱ ସଂହିତା (ତାଳପତ୍ର ପୋଥି)

ଓଁ ନମୋ ଯୋଗୀଶ୍ୱରାୟ ।। ଓଁ ଇଷେତ୍ୱୋଽଧ୍ୟାୟସ୍ୟ ।। ଆରଣ୍ୟକ ଋଷି ।। ଅନୁଷ୍ଟୁପ୍ ଛନ୍ଦଃ ।। ପୁରୁଷୋ ଦେବତା ।। ମୋକ୍ଷାର୍ଥେ ବିନିଯୋଗଃ ।।

ଓଁ ଇଷେତ୍ୱୋର୍ଜେ ତ୍ୱା ବାୟବଃସ୍ଥ ଦେବୋବଃ ସବିତା ପ୍ରାର୍ପୟତୁଶ୍ରେ ଷ୍ଠତମାୟ କର୍ମଣେ ।।୧।। ଆପ୍ୟାୟ ଧ୍ୱଂ ।। ମଘ୍ନ୍ୟା ଇନ୍ଦ୍ରାୟ ଭଗଂ ପ୍ରଜାବତିର-ନମୀବାତାୟକ୍ଷ୍ମଃ ବାବସ୍ତେନଇ ଶତ ମାଘ ଶସଃ ।। ଓ ।। ଧ୍ରୁବା ଅସ୍ମିନ୍ ନ୍ଗୋପତୌସ୍ୟାତବହ୍ୱୀଃ ।। ଯଜମାନସ୍ୟ ପଶୂନ୍ପାହିବସେ ପବିତ୍ର ମସି ।।୩।।

× × ×

ତେଜୋଽସି ।। ଶୁକ୍ରମସ୍ୟ ମୃତ ମସିଧାମନାମାସି ।। ପ୍ରିୟଦେବାନ-ମନାଧୃଷ୍ଟିଂ ଦେବୟ ଜନଂ ।। ଯସ୍ତେ ପ୍ରାଣଃ ପଶୁଷ୍ଣୁ ପ୍ରବିଷ୍ଟୋ ଦେବାନାଂ ବିଷ୍ଠା ମନୁଷ୍ୟୋ ବିତଷ୍ଟେ ।। ଆମନ୍ତ୍ରାଂ ସୋମଘୃତ ବାର୍ଦ୍ଧି ଭୂତ୍ୱାଽଗ୍ନିଂଚ୍ଛ-ୟର୍ଜମାନାୟ ବିନ୍ଦ ।।୫୦।। ଓଁ କାଣ୍ୱେ ସଂହିତାୟାଂ ପ୍ରଥମୋଽଧ୍ୟାୟଃ ।।

ଏହିଭଳି କୋଡ଼ିଏଟି ଅଧ୍ୟାୟ କାଣ୍ୱ ସଂହିତାରେ ସଂସ୍କୃତ ଭାଷାରେ ଓଡ଼ିଆ ଲିପିରେ ବର୍ଣ୍ଣିତ ଅଛି । ପରିଚୟ ନିମିତ୍ତ ବିଂଶ ଅଧ୍ୟାୟର ସାମ୍ୟକ୍ ସୂଚନା ନିମ୍ନରେ ଦିଆଯାଇପାରେ ।

ବିଂଶ ଅଧ୍ୟାୟ :—

ଓଁ ବିଶ୍ୱେ ଅଘେତ୍ୟଧାୟସ୍ୟ ॥ ବିଶ୍ୱାମିତ୍ର ଋଷିଃ ॥ ଅମକ ଛନ୍ଦ ॥ ଶ୍ରୀ ସୂର୍ଯ୍ୟୋ ଦେବତା ॥ ଅଭକ୍ଷାଭକ୍ଷଣ କୃତ ପାପ କ୍ଷୟାର୍ଥେ ବିନିଯୋଗଃ ॥ ଓଁ ବାଜସ୍ୟାନୁପ୍ର ବେ ମାତରଂ ମହୀମଦିତିଂ ନାମ ବଚସାକରାମହେ ॥ ଯସ୍ୟ ମିଦଂ ବିଶ୍ୱଂ ଭୁବନ ମାବିବେଶ ତସ୍ୟ ନୋ ଦେବଃ ସବିତା ଧର୍ମ ସାବିଶତ୍ ॥୧॥

× × ×

ଓଁ ଅଶାମତଂ ॥ କାମ ମଗ୍ନେ ତବୋତୀଅଶ୍ୟାରୟିଂ—ରୟିବଃ ॥ ଅଶ୍ୟାମ ବାଜମଭି ବାଜୟନ୍ତୋଽଶ୍ୟାମଘ୍ନ ମ୍ନମ ବିଗଜରନ୍ତେ ॥ ............ ବୟନ୍ତେ ॥ ଅଘଗରି ମାହି କାମ ମୂନ୍ତାନ ହସ୍ତାନମସୋପସଘ ଯଦିଷ୍ଟେନ ମନସାୟକ୍ଷି ଦେବାନ ସ୍ରେଧତାମନ୍ମନା ବିପ୍ରୋ ଅଗ୍ନେ ॥ ଧାସହତ୍ ॥ ଦର୍ଗ୍ନିରିନ୍ଦ୍ରୋ ବ୍ରହ୍ମଦେବୋ ବୃହସ୍ପତିଃ ॥ ସଚେତ ସୋ ବିଶ୍ୱଦେବାୟ ଜ୍ଞୟ ସନ୍ତବଃ ଶୁଭେ ॥ ୧ ଃ ॥ ହଂଯବିଷ୍ଣ ॥ ଦାଶୁଶୋନୁଚପଜାହି ଶୁଣୁଧୀଗିରଃ ॥ ରକ୍ଷତୋକ-ମୁତମ୍ନା ॥ ଓଁ ॥ ଇତି କାଣ୍ୟ ସଂହିତାୟାଂ ବିଂଶତିତମୋଽଧ୍ୟାୟଃ ॥

ଭିମସ୍ୟାପି ରଣେ ଭଙ୍ଗୋ ମୁନେ ରପି ମତି ଭ୍ରମଂ ॥ ଯଦି ଶୁଦ୍ଧ ମଶୁଦ୍ଧଂ ବା ମମଦୋଷୋ ନ ବିଦ୍ୟତେ ॥ ଯଦକ୍ଷର ପରିଭ୍ରଷ୍ଟ ମାତ୍ରାହୀନଂ ତୁ ଯଦ୍ଭବେତ୍ ॥ କ୍ଷନ୍ତୁ ମହିସିମେ ଦେବ କସ୍ୟ ନ ସ୍ଖଳିତଂ ମତିଃ ମାତ୍ରାପଦ ବିସର୍ଗବକ୍ତା ନ୍ଦନାଧିକାକ୍ଷେମ ମ ଦୋଷାଃ ଅନ୍ୟେଽପି ଦୋଷା ମମଦେବ ଯଧ୍ୟା ଯତୋ ହମ ଜ୍ଞୋ ଜନିତ ସ୍ୱୟୈବ ॥ କାର୍ତ୍ତିକସ୍ୟ ଶୀତ ପକ୍ଷେ ପ୍ରତିପ ପଣ୍ଡିତ ବାସରେ ॥ କୃତ୍ତିବାସ ମିଦଂ ଶାର୍ମା ଲିକ୍ଷିହଂମ୍ୟେବଗ୍ରନ୍ଥୟୋଃ ॥ ଶ୍ରୀ ବୀର-କେଶ୍ୱରୀ ଦେବସ୍ୟ ନିପତ୍ୟେ ତ୍ରୟ ମମଙ୍କେନ ଲିକ୍ଷିହଂମିବ ଗ୍ରନ୍ଥୟୋ ॥ ଶ୍ରୀ ରାଧାକାନ୍ତ ସୁନ୍ଦରେ ॥ କୃତ୍ତିବାସ ପଣ୍ଡାଏ ଲିହଂ ମିଦଂ ପୁସ୍ତକଂ ॥

———

## ମନ୍ତ୍ରୋଷଧି (ତାଳପତ୍ର ଲେଖା)

ଶ୍ରୀ ଗଣେଶାୟ ନମଃ ॥ ସମସ୍ତ ଋଷି ଜାଉଥିଲେ ସ୍ୱର୍ଗଭୁବନକୁ ଜାଉଂ ଜାଉଂ ଭେଟିଲେ ପ୍ରେତମାନଙ୍କୁ ॥ ତୁମ୍ଭେ ତେର ପ୍ରେତେ କାହିଂ ଜାଉଅଛ ॥ ପ୍ରେତେ କହିଲେ ମର୍ତ୍ୟକୁ ଜାଉଅଛୁ ॥ ମର୍ତ୍ୟ ଭୁବନେ କି କରିବ ॥ ଜାହାକୁ

ପାଳିକର କରିବ ତାହାର ହାଡ଼ ଖାଇ ।। ମାଂସ ଖାଉ ରକ୍ତ ଖାଉ ।। ଆସିବା ସମଏ ପିଲା ପାଇଂକି କଳସିଏ ଲେଖାଏ ଘେନି ଆସୁ ।। ସପ୍ତରଷି ବୋଇଲେ ।। ଆଉ ମର୍ତ୍ତ୍ୟରେ ନରଲୋକମାନେ ନ ବର୍ତ୍ତିବେ ।। ଆମ୍ଭେ ତୁମ୍ଭକୁଂ ଭସ୍ମ କରିବୁ ।। ସେତେ ବୋଇଲେ କିପାଇଂ ପାଉଂସ କରିବ ।। ତୁମ୍ଭର ନାମ ଜେ ଧରିବ ଜେ ସୁଣିବ ।। ଆମ୍ଭେ ତାଙ୍କର ଗୃହର ସିମା ନ ଜିବ ।। ସପ୍ତରଷି ବୋଇଲେ କାହାର ଆଜ୍ଞା ।। ସେତେ ବୋଇଲେ ଗୋସାଇ ସପ୍ତରଷିଙ୍କର ଆଜ୍ଞା ଶ୍ରୀଶ୍ରୀଶ୍ରୀ।।

ଏହି ଭଳି ନାନାବିଧ ମନ୍ତ୍ର ଅନେକ ଚେରି ମୂଳି ଔଷଧ ମନ୍ତ୍ରୌଷଧି ତାଳପତ୍ର ଖେଳାରେ ବର୍ଣ୍ଣିତ ହୋଇଅଛି ।। ଖେଳାଟିର ପରିଶେଷରେ ହାଡ଼ିଙ୍କର ଏକ ମାଳଶ୍ରୀ ଗୀତ ଏବଂ କେତେକ ସଙ୍ଗୀତ ପଦ୍ୟାବଳୀ ଦୃଷ୍ଟି ଗୋଚର ହୁଏ । ଯଥା :

୧ । ପଲଙ୍କେ ପହୁଡ଼େ ଜଦୁମଣି ।। କୁଳେ ଘେନି କୁଞ୍ଜ ନବ ତରୁଣି ।। ମଦନ ବାଣେ ପ୍ରିଆ ନିମଜିଲେ ।। ପୁଣି ମଦନ ବାର୍ତ୍ତାକୁ ସନ୍ତୋସ କଲେ ।। ରାଧା କୃଷ୍ଣ ଭବା ସୁଣି ବଡ଼ଲଉତ ରର୍ତ୍ତି ଏମ୍ଭତ୍ ପ୍ରାଣି ପୁଣି ସର୍ବେସ୍ବର ଭଞ୍ଜ ନୃପତି ଭଣି ।।

୨ । ପୁତୁଏ ବରସା ।। ପୁଡ଼ୁ ପାପ ଆଶା ।। ପୁଡ଼ୁ ଏ ଯୋବା ବୟଶ ।। ପୁତା ଜୁବାକାଳେ ।। କାହିଂ କାନ୍ତ ବିଦେଶ ।। ପଦ ।। କଉଂଦିନ କାନ୍ତ ବିଦେଶ ଗଲେ ।। କେବଣ ନଟୋରି ଗୋ ପାଦେ ପଡ଼ିଲେ ।। କେବଣ ଚଟୋରି ।। ଲେକ କିଣ ।। ପୁଣ ବିଅର୍ଥେ ଗଲା ମୋ ଯୋବା ବୟସ ।।୧।।

ଜଉଂଦେସେ କାନ୍ତ ରହିଲେ ଜାଇ ।। ସେ ଦେସେ ଖର ବରସା ନାହିଂ ।। ସେ ଦେସେ ନାହିଂ ରସିକ ।। ନାଗର ପୁଣ ରସିକ ।। ଥିଲେ ପଡ଼ନ୍ତା ଏ ଘୋର ବରସା ନିସି ଅନ୍ଧାର ।। କାଉଂ ଆସିବା କର ସହିଛି ବାର ।। ଏ ଘୋର ବରସା ନୁହେଂ ନିବାରି ।। କେତେ ସହିବି ଅବଳା ନାରି ।। ରଜା ଗଡ଼କୁ ଗୋ ନିତି ହିଂ ଡର ।। ଅଗେଂ ପିଡ଼ାକିଲା ମଦନ ଜର ।। ପ୍ରତିମା ଦେଇ ବିନୟ କହିଲେ ।। ପୁଣ ସର୍ବେସର ରଜା ପାଦେ ଭଣିଲେ ।।

—:୦:—

# ଓଡ଼ିଆ ଲିପିରେ ବଙ୍ଗଳା ରଚନା

## ମଥୁରାମଙ୍ଗଳ ସମ୍ପ୍ରଦା (ତାଳପତ୍ର ଖେଜା)

ଶ୍ରୀ ଗଣେସାୟଂ ନମଃ ॥ ଶ୍ରୀ ଶୁଭମସ୍ତୁ ॥ କସ୍ତୁରି ତିଳକଂ ଲଲାଟ ପଟକେ ବକ୍ଷସ୍ଥଳେ କୌସ୍ତୁଭଂ ॥ ନାସାଗ୍ରେ ନବ ମୌକ୍ତିକଂ କରତଳେ ବେଣୁ-କରେ କଙ୍କଂଣଂ ॥ ସର୍ବାଙ୍ଗେ ହରିଚନ୍ଦନଂ ଶୁଲଳିତଂ କଣ୍ଠସ୍ତ ମୁକ୍ତାବଳି ॥ ଗୋପ ସ୍ତ୍ରୀ ପରିବେଷ୍ଟିତଂ ବିଜୟତେ ଶ୍ରୀ ଗୋପାଳ ଚୁଡ଼ାମଣିଃ ॥

× × ×

ମାଧବୋ ମାଧବୋ ବାକ୍ୟଂ ମାଧବୋ ମାଧବୋ ହରିଃ ॥
ସ୍ମରନ୍ତି ମାଧବୋ ନିତ୍ୟଂ ସର୍ବ କାର୍ଯ୍ୟେଷୁ ମାଧବଃ ॥ ଗିତଃ ॥

ହାଂସି ଶୁକଦେବ କହେ ସୁନ ନୃପମନି ॥
ଗୋବିନ୍ଦେର ଲିଲାମୃତ ଭଗବତ ବାନି ॥ ୧ ॥

ନାରଦ ବଚନେ କଂସ ନୃପତି ବିଶାଦେ ॥
ଧନୁଜାତ ରଂଗ ସଭ କରିଲ ଆନନ୍ଦେ ॥ ୨ ॥

ଅକ୍ରୁରେ ହଂକାରି କହେ ବିସ୍ୱାସ ବଚନ ॥
ତୁମି ଜାଅ ବ୍ରଜରଜ ନନ୍ଦେର ଭୁବନ ॥ ୩ ॥

ନନ୍ଦ ଯଶୋଦାରେ କଥା କହିବ ବୁଝାଇ ॥
ମଧୁଦେଶେ ଉଛେବ କରିଛେ ଭୋଜସାଇଂ ॥ ୪ ॥

ଧନୁଜାତ ରଂଗ ସୋଭ ବଡ଼ ଶୋଭବନ ॥
ଦେଖେବେ ତୁମାର ପୁତ୍ର ଗୋପାଳ ସଂଗେନ ॥୫॥

ଦଧି ଦୁଧ ଘୃତ ସର ଲବନି ଧରିୟଂା ॥
ବ୍ରଜବାସି ଜତ ଆଛେ ଆନ ହଂକାରିୟଂା ॥୬॥

ଅତ କହି କଂସ ରଜା କଇଲ ବହୁ-ମାନ ॥
ଅକ୍ରୁରେ ମେଲନି କଇଲ ସାଢ଼ି ଗୁଆ ପାନ ॥୭॥

ଆନନ୍ଦିତେ ରହୁବର ସାଜିଲେ ଅକ୍ରୁରେ ॥
ଦ୍ୱିଜ ଚଣ୍ଡି ଦାସ ବୋଲେ ଆନିଲ ବ୍ରଜପୁରେ ॥୮॥

ଦିନ ଅବସେସେ ଗକୁଲ ନବରେ ଅକ୍ରୁର ମିଳିଲ ଆସି
ଗ୍ରମରି ଧବଳି କାଞ୍ଚନ କାଜଳି ଗୋବଦ୍ଧନ ବ୍ରଜବାସି ।।-।।

ସଂଗେ ଗୋବିନ୍ଦ ଗୋପାଳ ଆଦିକନ୍ଦ ନାପାରିଲ ନେତ୍ର ବାରି ।।
ଘର୍ମ୍ମିଭୂତ ହୋୟଂ। ବିଗ୍ରରେ ଅକ୍ରୁର କୋଖାନେ ଦେଖିବୁ ହରି ।।୨।।

× × ×

ସିରେ ସିଖି ପୁଛ ଶ୍ରୀଅଂଗେ ଶ୍ରୀବଛ ଗ୍ରମ ବାମ ପାଶେ ହରି ।।
ଦେହେ ଦୁଗ୍‍ଧ ଧାର ନିଲ ମେଘେ ତାର କୋଟି କାମେ ବଳି ହାରି ।।୬।।

ସିରେ କର ଦେଇ ରଥରୁ ଓହ୍ଲାଇ ଅକ୍ରୁର ମିଳିଲ ପାଦେ ।।
ଗୋବିନ୍ଦ ପାଦେ ପ୍ରଣମିତେ ସ୍ତୁତିଲ କହେ ଦିଜ ଚଣ୍ଡି ଦାସେ ।।୭।।

ଉପରୋକ୍ତ ମଥୁର ମଂଗଳ ସମ୍ପ୍ରଦା ତାଳପତ୍ର ଖେଜାରେ ଚଣ୍ଡିଦାସଙ୍କର ତେଇଶଟି କବିତା ଦେଖିବାକୁ ମିଳେ । ଶେଷ ଦୁଇଟିର କେତେକ ପଦାବଳୀ ନିମ୍ନରେ ଦିଆଯାଇଅଛି ।

( ୨୨ )

ମାଲର ମରନେ କଂସ କରେ ସସ୍ତ ଧରି ।।
ବ୍ରାଘ ନଖ ଖଂ। ଖଂାଇଲ ଗଉତ ହଂକାରି ।। ୧ ।।

କୋପ ମୁଖେ ଆଖ୍ରାଂ ଦିଲ ଜଅ ଏଇକ୍ଷନି ।।
ସିର ଛେଦ ବାସୁଦେବ ଦେବକି ରୋହିନି ।। ୨ ।।

ନନ୍ଦ ଯୋସୋଦାରେ ମାରି ଗକୁଲ ଜାଇୟଂ। ।।
ଧନ ରତ୍ନ ଯୁର କରି ଆସରେ ଚଳିୟାଂ ।। ୩ ।।

ନଗ୍ରର ବାହାରେ ଗ୍ରମ ନିୟ ନିଲମନି ।।
ସିର ଛେଦ କର ଜାଇ ଗୋପାଳ ଗୋପିନି ।। ୪ ।।

କଂସ ବାନି କୃଷ୍ଣଚନ୍ଦ୍ର ଯେଖାନି ଶୁନିୟାଂ ।।
ଉଠିଲ ଜଗମୋହନ ଆନନ୍ଦିତ ହୋୟାଂ ।। ୫ ।।

ପାଇଜଲ ରଜାଗନ ଅସୁର ମଣ୍ଡଳି ।।
ସ୍ୱର୍ଗେ ଥାକି ଦେବ କନ୍ୟା ଦିଇ ହୁଳହୁଳି ।। ୬ ।।

ଜୟ ଜୟ ଶବଦ ଡାକିଲ ଦେବଗନ ॥
ଅବନି ଆନନ୍ଦ କୈଲ ବ୍ରଜେର ନନ୍ଦନ ॥ ୭ ॥
ଗୋବିନ୍ଦ ଦେଖିଯାଂ କଂସ କରେ ଖଣ୍ଡ ତୋଲି ॥
ଉଠି କରେ ପ୍ରହାରିଲ କେପେ ବନମାଳି ହେ ॥ ୮ ॥
କେଶ ଧରି କାଲଗ୍ରନ୍ଦ କରେ ଆକ୍ରୋସିଲ ॥
ହତ ଗ୍ୟାନେ ଉର୍ଦ୍ଧ୍ୱ ମୁଖେ ଗୋବିନ୍ଦ ଗ୍ରହିଂଲ ହେ ॥ ୯ ॥
ଶ୍ରୀମୁଖ ଦେଖିୟେଂ ଚକ୍ଷୁ ପଥେ ଗେଲ ପ୍ରାନ ॥
ମୁକୁଟ ଝାର୍କିଲ ପ୍ରଭୁ କରିଲ ଉଡୀନ ହେ ॥୧୦॥
ସଭତଲେ ମୃତୁପିଣ୍ଡ ଓଟାରି ଆନନ୍ଦେ ॥
ଦତ୍ୟ ପରେ ନୃତ୍ୟ କରେ ସିସୁ ଜହାଂଲ ଗ୍ରନ୍ଦ ହେ ॥୧୧॥
ଶ୍ରୀରମ ଗୋପାଲଗନ ବେଢ଼ି ଚଉପାସେ ॥
ସେ କାନୁ କୃଷ୍ଣ ଚରନେ କହେ ଚଣ୍ଡି ଦାସେ ହେ ॥୧୨॥

( ୨୩ )

ଯେକ ରନ୍ଧ୍ରେ ରାଧା ଶ୍ୟାମ ବଜାଇଲ ବେନୁ ॥
ଭୁଜେ ଭୁଜେ ଛନ୍ଦନ ବନ୍ଧନେ ଦୁୟ ତନୁ ହେ ॥୧॥
ଏକ ଏକ ଦୁୟ ଦୁୟ କଟିତେ ବେଢ଼ାୟେ ॥
ସରନେର ଦସଗ୍ରନ୍ଦ ଧରନି ମଣ୍ଡିୟେ ॥୨॥
ରହିର ଚତୁର ଗ୍ରନ୍ଦ ବଂସିପରେ ଲୟେ ॥
ସ୍ୟାମେର ଚତୁର ଗ୍ରନ୍ଦ ରାଧା ରାଧା ବୋଲେ ॥୩॥
ଜଖନି ସୁନିଲ ରହି ଆଶନିର ନାମ ॥
ଡାକିଏଂ ମୁରଲି ଗାନେ ହ୍ରିଦେ କୈଲମାନ ॥୪॥
ଦେଖିୟାଂ ଆନନ୍ଦ ସ୍ୟାମ ଶ୍ରୀମତି ସମ୍ଭାଷ ॥
ମୂରଲି ପଦେ ସରନ ଜାଏ ଚଣ୍ଡି ଦାସ ହେ ॥୫॥

ଇତି ଶ୍ରୀ ଚଣ୍ଡି ଦାସ ବିରଚିତେ ମଧୁ ମଂଗଳ ସମ୍ପ୍ରଦା ସଦୀ ଜଏ ସମ୍ପୂର୍ଣ୍ଣ ॥ ଶୁଦ୍ଧ ଅଶୁଦ୍ଧ ପୁରେଇ ଗାଇବ ॥ ଶ୍ରୀ ରାଧାକାନ୍ତ ରକ୍ଷା କରିବେ ଅଧମ ସିବ ମୈତ୍ରକୁ ॥

———

## ଅଷ୍ଟତାର (ତାଳପତ୍ର ଖେଳା)

ଅଷ୍ଟତାର ତାଳପତ୍ର ଖେଳାଟିର ଶେଷରୁ କେତେକ ପତ୍ର ନାହିଁ । ଅବଶିଷ୍ଟ ଅଣତିରିଶ ଗୋଟି ପତ୍ରରୁ ଅଧିକାଂଶ ପତ୍ରର କେତେକ ଅଂଶ ନଷ୍ଟ ହୋଇ ଯାଇଅଛି । ସୁତରାଂ ଦୁଇ ତିନୋଟି ପତ୍ରରେ ଥିବା ପୂର୍ଣ୍ଣାଂଗ ଗୀତଗୁଡ଼ିକୁ ପରିଚୟ ରୂପେ ଗ୍ରହଣ କରାଯାଇ ପାରେ ।

ଅଷ୍ଟ ତାର :— ରାଧା ସ୍ୱାବିଭୂସିତା ବ୍ରଜପଯା ବ୍ରହ୍ମଂତତଂ ଶଶତୀ ।।

ପତ୍ର—୧ ପ୍ରସ୍ନେହେତ ତ ଗୃହୋ ବିହିଂ ତାନ୍ତି ପାକ ରଚଂ ନାବ ସେବାଶନି ।।
ବିଧଶେଂ ବାପ୍ତଂ ଧେନୁ ସଦନଂ ନିବୃତା ଗୋ ଦୁହନଂ ।।
ଶୁପ୍ନାତଂ କୃତ ଭୋଜନଂ ସହଚରେ ସ୍ତାଞ୍ଚା ତଥା ଶ୍ରଏ ।।

ଗୀତ :—ଶ୍ରୀରିରମଞ୍ଜରି ଆମ୍ଭେ ଅନୁରାଧଂ ମାଗିଂଆଁ ।।
ପ୍ରାତକାଳ ନିଜ କହିଂ ଭବନା କରିଛୁଁ ।।୧।।

× × ×

ଗୀତ :— ବିଳମ୍ବ ଜାନିଆଁ ରାଧାରେ ।। ଜଟିଲ ଆଇ ସେ ଖରେ
ବୋଲେ ଅତ ବେରି କେନ କଲ ।।୧।।
କହେ କୁନ୍ଦଲତା ଏ ତଲ ଗ୍ରିଆଂ ବ୍ରାହ୍ମଂନ ପୁତ୍ରୀ ।।
ବସ୍ଥାଛିଲ ବନେର ଭିତରେ ।।୨।।
ବ୍ରହ୍ମଗିରି ବେଶ କରି ତବେ ଅନାଇଂଲ ହୁରି ।।
ଜଟିଲ ପ୍ରନାମି କହେ ଭସ ।।୩।।

× × ×

ତେବେ ବିଷ୍ଟୁ ବିଷ୍ଟୁ କରି ସ୍ତିରି ଶ୍ୱର୍ଶ ନାହିଂ କରି ।।
କୁସ ଆନ୍ୟା ଛୁଆଂଇଥ ତାରେ ।।୧୦।।
ତଥାପି ସତୀ ତୁମାର ବଳିଆ ଧଇଲ କର ।।
ଛାଡ଼ାନାରେ ନାରେ କମ୍ପେ ତାଏ ।।୧୧।।
ରାଈ ରସେ ଜର ଜର କହିଲ ଜତ ଉତ୍ତର ।।
ଦୂତୀ ନାମେ ବ୍ରହ୍ମଂଗ୍ୱର ପାଏ ।।୧୨।।

ଘଧାକରେ କୃଷ୍ଣକର ।। କି ଜାନେ ଏ କନ୍ୟାବର ।।
ହେମମର ବ୍ରତଲତା ବେନି ।। ମଣ୍ଡାୟାଂ ମେଲନି ହୈଲ ନିଜ ଗୃହେ
ଚଲ୍ୟାଗେଲ ।। କଶୋର ଦାସ ମଧ୍ୟାନ୍ତିତେ ବନି ।। ମଧ୍ୟାନ୍ତି ନିଇ
ସରିଲ ।।

ଗୀତ

ଗୋଦୁହନେ ଚଲେ ହରି ।। ଶ୍ରୀହସ୍ତେ ଛନ୍ଦେ ବାଛରୀ ।।
ମୁରଲୀ ରଖିଲ କଟି ମାଝେ ।।୧।।
ଖିର ବିନ୍ଦୁ ଦୋଭ ଅଙ୍ଗେ ।। ଜେନେହ ତାର ନିଲ ମେଘେ ।।
ମୁକତେ କି ନିଲ ମେଘେ ସାଜେ ।।୨।।
ସକଲି ଦୋହନ ସ୍ୱନ ।। ଉଛଲିଲ ତ୍ରିଭୁବନ ।।
ସିଗି ସିଗି ଶିରି ଶିରି ହୁୟାଂ ।।୩।।
ଓରେ ଓରେ ଘୂରିବାରି ।। ବନେ ଗଗନେ ପୂରି ।।
କେ ଅବା ଲଗାଇଲ ତୁରିତାଆଂ ।।୪।।
ସ୍ନେହଭରେ କେନ ବାଛା ।। ସାମ ଅଙ୍ଗ ଚଟାଇଛା ।।
ଦୁଗ୍ଧାନାଖାଇଂୟା କୃଷ୍ଣ କେସେ ଗୃହେ ।।୫।।
ଷାୟା ବଲଇ ଆଦେସ ।। ଛାଡ଼ାଆଂ ଜନନୀ ପାସ ।
କତବାଛା କ୍ରିଷ୍ଣେରେ ବେଢ଼ିଏ ।।୬।।
ଦୁଗଧଭର ଲୟାଂ ସେଙ୍କେ ।। ପ୍ରବେସିଲ ନିଜାସନେ ।।
ବେହରନ ହରେ ସଖା ମିଶି ।।୭।।
ବସିଲେ ପାଲିଙ୍କିରେ ।। ତନ୍ତୋଲତେ। ଗାନକରେ ।।
କିଶୋର ଦାସ ସନ୍ତ୍ରେଏତେ ଭଣି ।।୮।।୮।।୧୦

ଗୀତ : – ଶ୍ରୀଗୁରୁ ପାଦାର ବିନ୍ଦଧୁଲ ପ୍ରସାଦେ ।। ସାୟଂକାଲ କ୍ରିଆକର୍ମ
କହିଲୁ ଆନନ୍ଦେ ।।୧।।
ସବେ ଧରେ କରତାଲି ମଧ୍ୟେ ସ୍ୟମଗଏ ।।
ଗଜଗତୀ କରେ କ୍ଷନେ କ୍ଷନେ ନାଚି ଜାଏ ।।

କର ବେରି ଗଂସିଂତେ ହିଂଆରେ ଠ୍ୟରି କର ॥
ସୁବେଳେରେ ବୋଲେ କିବା ମୁରଲି ଅକ୍ଷର ॥

ଏହିମତୀ ନାନାରଙ୍ଗେ ଗୃହେ ପ୍ରବେଶିଲ ॥
ସିଂଘା ଧ୍ୱନି ଶୁଣି ସବ ଅଙ୍ଗ ନେବେ ତଲ ॥

ମଣ୍ଡୋଆଇ ଲତ ଦେବ ବନ୍ଦାପନା କରି ॥
କହେତ କିଶୋର ଦାସ ସବେ ବୋଲ ହରି ॥

— : ୦ : —

## ବଲ୍ଲଣି

ସ୍ୱର୍ଗତ ଲୋଚନ ଅମାତ, ରାମଚନ୍ଦ୍ର ଅମାତ, ଶମ୍ଭୁ ଅମାତ, ଖଗେଶ୍ୱର ଅମାତ ଓ ମଦନମୋହନ ଅମାତ ପୁରୁଷାନୁକ୍ରମେ ବଲଣିର ବାହିଦାର ଥିଲେ । ସ୍ୱର୍ଗତ ମଦନମୋହନ ଅମାତଙ୍କ ପୁତ୍ରମାନଙ୍କ ମଧ୍ୟରେ ଶ୍ରୀଦେବାନନ୍ଦ ଅମାତ ବଡ଼ । ସେ ବଂଶାନୁକ୍ରମିକ ପନ୍ଥାନୁଯାୟୀ ଘରର ମୁଖ୍ୟ ପରିଚାଳକ ଅଟନ୍ତି । ଭାଇମାନଙ୍କ ସହିତ ଏକ ଅନ୍ନରେ ବାସକରି ଅଛନ୍ତି । ଅତୀତରେ ଦେବାନନ୍ଦ ଅମାତ ଲୋକସଭାର ସଦସ୍ୟ ଥିଲେ । ଏହିବର୍ଷ ୧୯୮୯ ନିର୍ବାଚନରେ ଲୋକସଭାର ସଭ୍ୟରୂପେ ସୁନ୍ଦରଗଡ଼ରୁ ନିର୍ବାଚିତ ହୋଇଅଛନ୍ତି । ଏହାଙ୍କ ଗୃହରେ ଓଡ଼ିଆ ଭାଷାରେ ଲିଖିତ ଅନେକ ଦୁର୍ଲଭ ତାଳପତ୍ର ପୋଥିଗୁଡ଼ିକ ଅବହେଳା ବଶତଃ କାଳକ୍ରମେ ନଷ୍ଟହୋଇ ଯାଇଅଛି ।

ବଲ୍ଲଣି ବାହିଦାର ସ୍ୱର୍ଗତ ଲୋଚନ ଅମାତ ବୃନ୍ଦାବନ ଧାମରୁ ନିଜ କୁଳ ପୁରୋହିତ (ଟିମ୍‌କୋ ତ୍ରିପାଠୀ ବଂଶ) ଦ୍ୱାରା ରାଧାକୃଷ୍ଣ ବିଗ୍ରହଙ୍କୁ ଅଣାଇ ତାଙ୍କର ସେବା କରୁଥିଲେ । ପ୍ରତିବର୍ଷ କାର୍ତ୍ତିକ ମାସ ଶୁକ୍ଳପକ୍ଷ ଦଶମୀଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ରାଧାକୃଷ୍ଣ ମଣ୍ଡପରେ (ରାସ ମଣ୍ଡପ) ଶରତ୍ ରାସ କରାଇଥିଲେ । ଲୋଚନ ଅମାତଙ୍କ ଅମଳରୁ ଉକ୍ତ ରାସୋତ୍ସବ କ୍ରମାନୁଯାୟୀ ଆଜି ପର୍ଯ୍ୟନ୍ତ ଏହାଙ୍କ ବଂଶଧରମାନଙ୍କ ତତ୍ତ୍ୱାବଧାନରେ ପାଳିତ ହୋଇଆସୁଅଛି । ୧୯୮୭ ମସିହା କାର୍ତ୍ତିକ ପୂର୍ଣ୍ଣମୀ ଶରଦ ରାସ ଉତ୍ସବ ଲେଖକ ଦେବାନନ୍ଦ ବାବୁଙ୍କ ଗହଣରେ ଉପଭୋଗ କରିଅଛି ।

## ସେମେର୍ତ୍ତା

ସ୍ୱର୍ଗତ ଭୁଲୁ ନାୟକ; କୃଷ୍ଣଚନ୍ଦ୍ର ନାୟକଙ୍କ ସେମେର୍ତ୍ତା ବାହ୍ୟଦାରଥିଲେ । କୃଷ୍ଣଚନ୍ଦ୍ର ନାୟକଙ୍କ ଅମଳରେ ବାହ୍ୟସତ୍ୱ ଲୋପ ହେଲା । ଏହାଙ୍କ ଜୀବଦ୍ଦଶାରେ ଗୃହରେ ଥିବା ତାଳପତ୍ର ପୋଥିଗୁଡ଼ିକ ନଷ୍ଟ ହୋଇଯାଇଅଛି । ଭୁଲୁ ନାୟକଙ୍କ ପୂର୍ବପୁରୀଙ୍କ କୃତ ସେମେର୍ତ୍ତା ଗସେହବ ପ୍ରତିବର୍ଷ ମାର୍ଗଶିର ଗୋକୁଳାଷ୍ଟମୀରେ ପାଳିତ ହେଉଅଛି । ଲେଖକ ସେମେର୍ତ୍ତା ଗହାସ (ଗସଲୀଳା) ପ୍ରାୟତଃ କୋଡ଼ିଏ ବର୍ଷତଳେ ଉପଭୋଗ କରିଥିଲା ।

## ଟାଇଂଘର

ଟାଇଂଘର ନିବାସୀ ଶ୍ରୀ ତ୍ରିନାଥ ପଣ୍ଡାଙ୍କ ଗୃହରେ ଏହାଙ୍କ ପୂର୍ବଜଙ୍କ ପ୍ରଚଳିତ ଅନେକ ତାଳପତ୍ର ପୋଥି ଅଦ୍ୟାବଧି ଗଚ୍ଛିତ ଅଛି । ସମୟ ଅଭାବରୁ ଲେଖକ ଏଗୁଡ଼ିକର ପରିଚୟ ଦେଇପାରୁନାହିଁ ।

## ଚନ୍ଦ୍ରପୁର

ଧନେଶ୍ୱର ସାମନ୍ତଙ୍କ ପୁତ୍ର ଅକ୍ଷବର ସାମନ୍ତ ବାମଣ୍ଡାରୁ ଆସି ନାଗଗର (ନାଗ୍ରା) ବିଶ୍ରା ନିକଟସ୍ଥ ଚନ୍ଦ୍ରପୁର ଗ୍ରାମରେ ବାସକଲେ । ଅକ୍ଷବର ସାମନ୍ତଙ୍କ ପୁତ୍ର ବ୍ରଜ ସାମନ୍ତ, ଲକ୍ଷ୍ମଣ ସାମନ୍ତ । ବ୍ରଜଙ୍କ ପୁତ୍ର ବନମାଳୀ ଏବଂ ଲକ୍ଷ୍ମଣଙ୍କ ପୁତ୍ର ବିଶ୍ୱନାଥ ଉଭୟେ ଜୀବୀତ ଅଛନ୍ତି । ଏମାନଙ୍କ ଗୃହରେ ଥିବା ପ୍ରାଚୀନ ତାଳପତ୍ର ପୋଥିଗୁଡ଼ିକ ବ୍ରଜ ଏବଂ ଲକ୍ଷ୍ମଣ ସାମନ୍ତଙ୍କ ଅମଳରେ ନଦୀରେ ଭସାଇ ଦିଆଗଲା । ବର୍ତ୍ତମାନ ଚନ୍ଦ୍ରପୁର ଗ୍ରାମର ଶ୍ରୀ ଆନନ୍ଦ ପଟ୍ଟନାୟକଙ୍କ ଘରେ ଓଡ଼ିଆ ଲିପିରେ ଲେଖାଥିବା ଭଗବତ ଗୀତା ତାଳପତ୍ର ପୋଥି ଅଛି । ଲେଖକ ଉକ୍ତ ପୋଥିଟି ଦେଖିବା ସୁଯୋଗ ପାଇନାହିଁ ।

## ପଦ୍ମପୁର

ନାଗର (ନାଗ୍ରା ଇଷ୍ଟେଟ୍) ରାଜ୍ୟର ଇଷ୍ଟଦେବୀ ଉଗ୍ରେଶ୍ୱରୀଙ୍କର ମୁଖ୍ୟ ପୂଜକ କଲେ ପଦ୍ମପୁରର କାଳେବଂଶ ଅଟନ୍ତି । ଏମାନେ ଜାତିରେ ଭୂୟାଁ ଅଟନ୍ତି । ପୂର୍ବପୁରୀଙ୍କ ଅନ୍ତେ ସ୍ୱର୍ଗତ କମ୍ଭୁ କାଳେ ସୁଦର୍ଶନ କାଳେ ବଂଶାନୁଯାୟୀ ଉଗ୍ରେଶ୍ୱରୀଙ୍କ ସେବାକରିଥିଲେ । ଏମାନଙ୍କର ବଂଶଧରମାନେ

"ମା"ଙ୍କର ସେବା କରୁଅଛନ୍ତି । କାଳେ ଘରେ ଅଦ୍ୟାବଧି ତୁଳ କିମ୍ବା ତିନୋଟି ପ୍ରାଚୀନ ତାଳପତ୍ର ପୋଥିଅଛି । ଲେଖକ ଏଗୁଡ଼ିକୁ ପଢ଼ିବା ସୁଯୋଗ ପାଇପାରି ନାହିଁ ।

## ଭଲୁଲତା

ଲେଖକ ଇନ୍ଦରପୁରର ନିକଟସ୍ଥ ଭଲୁଲତା ଗ୍ରାମ ନିବାସୀ ଶ୍ରୀ ସତ୍ୟନାରାୟଣ ମିଶ୍ରଙ୍କ ପଡ଼ିଶା ଶ୍ରୀ ପୂର୍ଣ୍ଣଚନ୍ଦ୍ର ମିଶ୍ରଙ୍କ ଗୃହରେ ଥିବା ଅନେକ ତାଳପତ୍ର ପୋଥି ପ୍ରାୟତଃ ଛଅ ବର୍ଷତଳେ ଦେଖିଥିଲେ । ପଢ଼ିବା ସୁଯୋଗ ଲାଭ କରି ନାହିଁ । ଇନ୍ଦରପୁରର ବିଞ୍ଝିଆମାନଙ୍କ ଗୃହରେ ଏକ ତାଳପତ୍ର ପୋଥି ବର୍ତ୍ତମାନ ପର୍ଯ୍ୟନ୍ତ ପଢାଯିବା ଗାଥା ଉକ୍ତ ଗ୍ରାମର ଫକୀରନ ଦଳନ୍ଦଠାରୁ ଲେଖକ ଶୁଣିଅଛି ।

## ଗୋପ ପାଲ୍ଲୀ

ସ୍ୱର୍ଗତ ଗଂଗା ନାୟକ, ଇଶ୍ୱର ନାୟକ, ମହେନ୍ଦ୍ର ନାୟକ, ରାମଚନ୍ଦ୍ର ନାୟକ, ପୁରୁଷାନୁକ୍ରମେ ବେଦବ୍ୟାସ ନିକଟସ୍ଥ ଗୋପପାଲ୍ଲୀ ଗ୍ରାମର ଗଞ୍ଜୁଆନା ସତ୍ୱ ଭୋଗକରି ରହିଥିଲେ । ରାମଚନ୍ଦ୍ର ନାୟକଙ୍କ ଅମଳରେ ଏହାଙ୍କର ଗୋପପାଲ୍ଲୀ ଗଞ୍ଜୁଆନା ସତ୍ୱ ଲୋପପାଇଲା । ଏହାଙ୍କ ପୁତ୍ର ଶ୍ରୀ କିଶୋର ଚନ୍ଦ୍ର ନାୟକ ଗୋପପାଲ୍ଲୀରେ ବାସ କରୁଅଛନ୍ତି । ଜନଶ୍ରୁତିରେ ଶ୍ରୀ କିଶୋର ଚନ୍ଦ୍ର ନାୟକ ଗଞ୍ଜୁ ନାମରେ ସୁପରିଚିତ । ✓ ଗଂଗା ନାୟକଙ୍କ ପୂର୍ବପୁରୁଷମାନେ ଯଥାକ୍ରମେ ବାଘଲତା, ପସର ହାତିବାରି ଏବଂ ବାଲିଯୋଡ଼ିରୁ ସ୍ଥାନାନ୍ତରିତ ହୋଇ ଶେଷରେ ଗୋପପାଲ୍ଲୀରେ ବାସକଲେ ।

ଶ୍ରୀ କିଶୋର ଚନ୍ଦ୍ର ନାୟକ ଜାତିରେ ଭୂୟାଁ (କ୍ଷତ୍ରିୟ) ଅଟନ୍ତି । ଅଧୁନା ତଫସିଲ ଭୁକ୍ତ ଜନଜାତିରେ ପରିଚିତ ହେଉଅଛନ୍ତି ଏହାଙ୍କ ଗୃହର ଇଷ୍ଟଦେବୀ ମଙ୍ଗଳାଠାକୁରାଣୀ । ପର୍ବପର୍ବାଣୀ ମାଧ୍ୟମରେ ଚୈତ୍ରମାସ ମଂଗଳବାରଗୁଡ଼ିକର ମଂଗଳା ପୂଜା; ଉକ୍ତ ବଂଶର ମୁଖ୍ୟ ପର୍ବରୂପେ ଅତୀତରୁ ଆଜି ପର୍ଯ୍ୟନ୍ତ ପାଳିତ ହୋଇ ଆସୁଅଛି ।

ଚୈତ୍ରମାସ ଆଦ୍ୟ ମଂଗଳବାର ଦିନ ମଂଗଳାଙ୍କର ଘଟ ଘରେ ବସାଯାଏ । ବିଧିବିଧାନ ଅନୁଯାୟୀ ବ୍ରାହ୍ମଣଙ୍କ ଦ୍ୱାରା ପ୍ରତି ମଂଗଳବାର ଦିନ

ପୂଜା ହୁଏ । ଚୈତ୍ର ମାସ ଶେଷ ମଙ୍ଗଳବାର ଦିନ ମଙ୍ଗଳା ପୂଜାରେ ଛାଗଳବଳୀ ଦିଆଯାଏ । ପୂଜା ଶେଷରେ ଘଟ ବିସର୍ଜନ କରି ମଙ୍ଗଳା ପର୍ବ ଉଦ୍‌ଯାପିତ ହୁଏ । ମାର୍ଗଶୀର ମାସରେ ଲକ୍ଷ୍ମୀ ପୂଜା ପ୍ରଚଳନ ଏହାଙ୍କ ଘରେ ଅଛି ।

ଶ୍ରୀ କିଶୋର ଚନ୍ଦ୍ର ନାୟକଙ୍କ କହିବା ଅନୁଯାୟୀ ଏହାଙ୍କ ଘରେ ଚାରି ଅବା ପାଞ୍ଚ ଖଣ୍ଡି ପ୍ରାଚୀନ ଓଡ଼ିଆ ତାଳପତ୍ର ପୋଥିର ପ୍ରଚଳନ ଥିଲା । ଏହାଙ୍କ ବାପା ରାମଚନ୍ଦ୍ର ନାୟକ କୌଣସି କାରଣ ବଶତଃ ପୋଥିଗୁଡ଼ିକ ନଦୀରେ ଭସାଇ ଦେଲେ । ବର୍ତ୍ତମାନ ଏହାଙ୍କ ପାଖରେ କୌଣସି ତାଳପତ୍ର ପୋଥି ନାହିଁ । ଲେଖକ କିଶୋର ଚନ୍ଦ୍ର ନାୟକଙ୍କ ବୃଦ୍ଧା ମାତାଙ୍କ ନିକଟରୁ ମଧ୍ୟ ଉପରୋକ୍ତ ମନ୍ତବ୍ୟ ଶୁଣିଅଛି ।

## ଜବାଘାଟ

ଜବାଘାଟର ଗଞ୍ଜୁ କ୍ରମାନୁଯାୟୀ ସ୍ୱର୍ଗତ ମାନ୍ଧାତା ପଣ୍ଡା, ସ୍ୱର୍ଗତ ରାଧାବଲ୍ଲଭ ପଣ୍ଡାଥିଲେ । ରାଧାବଲ୍ଲଭ ପଣ୍ଡାଙ୍କର ଦୁଇପୁତ୍ର । ବଡ଼ ଶ୍ରୀ ଶିବ ନାରାୟଣ ପଣ୍ଡା । ସାନ ଶ୍ରୀ ଆଖଣ୍ଡଳମଣି ପଣ୍ଡା । ଲେଖକ ଉଭୟଙ୍କୁ ସାକ୍ଷାତ କରି ଏମାନଙ୍କ ଗୃହରେ ଥିବା ଦୁଇଖଣ୍ଡି ତାଳପତ୍ର ପୋଥି ଦେଖିବା ସୁଯୋଗ ଲାଭ କରିଅଛି ।

## ତୁଳାମନ୍ତ୍ର ଲେଖନ (ତାଳପତ୍ର ଲେଖା)

ଆରମ୍ଭ :—ଅଥ ତୁଳାମନ୍ତ ଲେଖନ ମାହ ।। ଶ୍ରୀ ଗଣେଶାୟ ନମଃ ।। ଅବିଘ୍ନ ମସ୍ତୁ ।। ଓଁ ଇଶେତ୍ୱୋର୍ଯ୍ୟେତ୍ୱା ବାୟବସ୍ଥଃ ଦେବୋବଃ ସବିତା ପ୍ରାର୍ପୟତୁ ଶ୍ରେଷ୍ଠତମାୟ କର୍ମଣେ ।।

× × ×

ଶେଷ :—ଓଁ ଆସନ ମନ୍ତ୍ରସ୍ୟ ।। ବୃହସ୍ପତ୍ୟେର୍ଙ୍ଗିରେଥଧନର୍ଦ୍ଧିର ବରସ୍ୟ ।। ୯୩ ।। ଓଁ ସାଖାୟନସଗୋତ୍ରସ୍ୟ ।। ଦେବ ଅଗ୍ନି ଇତି ବଶିଷ୍ଠ ପ୍ରବରସ୍ୟ କପିଞ୍ଜଳସଗୋତ୍ରସ୍ୟ ।। ବିଶ୍ୱାମିତ୍ରିକପିଞ୍ଜ୍ୟ ପ୍ରବରସ୍ୟ ।।

ଶ୍ରୀ ରାଧାବଲ୍ଲଭ ପଣ୍ଡା ।। ଯବାଘାଟ ।। ତା ୯ । ୧୧ ୩୫ ।।

## କଥାଣି ମାଳିକା (ତାଳପତ୍ର ପୋଥି)

କଥାଣି ମାଳିକାର ଲିଖନକାର ସ୍ୱର୍ଗତ ରାଧାବଲ୍ଲଭ ପଣ୍ଡା ଚଉଦଗୋଟି ବ୍ରତ କଥାକୁ ନିଜ ଲିଖିତ ତାଳପତ୍ର ପୋଥିକୁ ଉଦ୍ଧାର କରି, ଉଲ୍ଲେଖ କରି ଅଛନ୍ତି । ବ୍ରତକଥା ଗୁଡ଼ିକର ପରିଚୟ ପୂର୍ବରୁ ଦିଆଯାଇଥିବାରୁ ଏଠାରେ ଏଠାରେ ପୁନଃ ପରିଚୟ ନଦେଇ କେବଳ ନାମଗୁଡିକ ନିମ୍ନରେ ଦିଆଯାଇଅଛି ॥

କଥାଣି ମାଳିକାର ଲିଖନକାର ସ୍ୱର୍ଗତ ରାଧାବଲ୍ଲଭ ପଣ୍ଡା ଚଉଦ ଗୋଟି ବ୍ରତ କଥାକୁ ନିଜ ଲିଖିତ ତାଳପତ୍ର ପୋଥିକୁ ଉଦ୍ଧାର କରି ଉଲ୍ଲେଖ କରିଅଛନ୍ତି । ବ୍ରତ କଥାଗୁଡିକର ପରିଚୟ ପୂର୍ବରୁ ଏଠାରେ ପୁନଃ ପରିଚୟ ନ ଦେଇ କେବଳ ନାମଗୁଡ଼ିକ ନିମ୍ନରେ ଦିଆ ଯାଉଅଛି ॥

ଆରମ୍ଭ :—ଶ୍ରୀ ଗଣେଶାୟ ନମଃ ॥ ଶ୍ରୀ ଗଣେଶ ବ୍ରତକଥା ଲେଖନ ମାହ × × × ଇତି ଶ୍ରୀ ସ୍କନ୍ଧ ପୁରାଣେ ଶ୍ରୀ ବିଧି ସିଦ୍ଧ ବିନାୟକ ବ୍ରତ କଥା ଲେଖନ । ଏହାପରେ କ୍ରମାନୁଯାୟୀ ନାଗୁଲୀ ବ୍ରତକଥା; ଶ୍ରୀ ମଙ୍ଗଳା ସ୍ତୁତି ଲେଖନ ମାହ; ଶ୍ରୀ ଚଣ୍ଡିକା ପୁରାଣେ ମଙ୍ଗଳବାର କଥା; ମାଳଶ୍ରୀ; ଶ୍ରୀ ତାରିଣୀ ବ୍ରତକଥା; ନିଶାମଙ୍ଗଳବାର କଥା ଲିଖ୍ୟତେ; ଜିମ୍ମୁତ ବାହାନ ବ୍ରତ କଥା ଲେଖନ; ଅନନ୍ତ ବ୍ରତକଥା ଲେଖନ; ଧବଳେଶ୍ୱର ବ୍ରତକଥା ଲେଖନ; ଅଥ କୁକୁଟି ବ୍ରତ କଥା ଲେଖନ; ସୁଦଶା ବ୍ରତକଥା ଲେଖନ; ତ୍ରିଜ ବ୍ରତ ଲେଖନ ମାହ ଇତ୍ୟାଦି ଲେଖାଯିବାପରେ ପରିଶେଷରେ ଶିବୁ ଭକ୍ଷିତଂ ହରି ତାଳିକା ବ୍ରତ ସମ୍ପୂର୍ଣ୍ଣମ ॥ ଶିବ ସେବକ ଶ୍ରୀ ରାଧା ବଲ୍ଲଭ ପଣ୍ଡା ଦେବଶର୍ମା ॥ କବାଘାଟ ॥ ତା ୬।୭।୩୫ ।।

## କନ୍ଦରକେଲା

ହାତୀବାରି ସନ୍ନିକଟ କନ୍ଦରକେଲା ଗ୍ରାମରେ ସ୍ୱର୍ଗତ ବିଶ୍ୱନାଥ ପତି ଜଣେ ଜ୍ୟୋତିଷ ଶାସ୍ତ୍ର ବିଶାରଦ ଥିଲେ । ସେ ଗାଙ୍ଗପୁର ରଜାଙ୍କର ପାଟ ଜ୍ୟୋତିଷ ଥିଲେ । କବିରାଜ ବିଦ୍ୟାରେ ଏହାଙ୍କର ଉତ୍ତମ ଜ୍ଞାନ ଥିଲା । ଏହାଙ୍କର ପରବର୍ତ୍ତୀ ବଂଶଧର ବଂଶାନୁଯାୟୀ ପୁରପତି; ବ୍ରଜମୋହନ ପତି ଥିଲେ । ବିଶ୍ୱନାଥ ପତିଙ୍କର ଗୌରବ ଜ୍ୟୋତିଷ ଏବଂ କବିରାଜ ବିଦ୍ୟାର ପ୍ରଭାବ ନାତି ବ୍ରଜମୋହନଙ୍କ ପର୍ଯ୍ୟନ୍ତ ପଡ଼ିଥିଲା । ବ୍ରଜମୋହନ ପତିଙ୍କ ଅନ୍ତେ ଏହାଙ୍କ

ପୁତ୍ର ଦୁର୍ଗାମାଧବ ପତି ପୂର୍ବସୂରୀଙ୍କ ବିଦ୍ୟା ଆହରଣ କରି ନପାରି, ସେ ଗୁଡ଼ିକର ସଂରକ୍ଷକ ହୋଇଅଛନ୍ତି ।

## ହାତୀବାରି

ହାତୀବାରିର ସ୍ୱର୍ଗତ ଭଗୀରଥି ପଣ୍ଡା ଜଣେ ପ୍ରଖ୍ୟାତ ତାଳପତ୍ର ପୋଥି ଲିଖନକାର ରୂପେ ପରିଚିତଥିଲେ । ଭଗୀରଥି ପଣ୍ଡା ତାଙ୍କ ଜୀବଦ୍ଦଶାରେ ଅଷ୍ଟାଦଶ ପୁରଣଗୁଡ଼ିକ ସଂଗ୍ରହ କରି ସେଗୁଡ଼ିକୁ ନୂତନ ତାଳପତ୍ର ପୋଥିରେ ପ୍ରକାଶ କରିଥିଲେ ।

ସ୍ୱର୍ଗତ ଭଗୀରଥି ପଣ୍ଡାଙ୍କର ଦୁଇପୁତ୍ର ଥିଲେ । ବଡ଼ ସ୍ୱର୍ଗତ ଶ୍ରୀଧର, ସାନ ସ୍ୱର୍ଗସ ଦୀନବନ୍ଧୁ ପଣ୍ଡା । ଶ୍ରୀଧର ପୁରଣ ପଣ୍ଡା ଏବଂ ଦୀନବନ୍ଧୁ ଜ୍ୟୋତିଷ ଥିଲେ । ଲେଖକ ଶ୍ରୀଧର ପଣ୍ଡାଙ୍କୁ ୧୯୬୯ ମସିହାରେ ଦେଖିଥିଲି । ଶ୍ରୀଧର ପୁତ୍ର ଶ୍ରୀ ସତ୍ୟନାରାୟଣ ପଣ୍ଡା ଜରେଇ-କେଲରେ ଶିକ୍ଷକତା କରୁଅଛନ୍ତି ।

ଶ୍ରୀ ଶୁଭେନ୍ଦ୍ର ମୋହନ ସିଂହ ଶ୍ରୀଧର ପଣ୍ଡାଙ୍କ ଠାରୁ ଭଗୀରଥି ପଣ୍ଡାଙ୍କ ସ୍ୱହସ୍ତ ଲିଖିତ ମହାଭରତ ତାଳପତ୍ର ପୋଥିଗୁଡ଼ିକ ସଂଗ୍ରହ କରି ଓଡ଼ିଶା ମ୍ୟୁଜିୟମ୍‌ରେ ସଂରକ୍ଷିତ କରାଇଥିବା ଗାଥା ହାତୀବାରି ନିବାସି ଶ୍ରୀ ଶ୍ରୀବସ୍ତ ପତ୍ରୀ କୁହନ୍ତି ।

ଶ୍ରୀ ଶ୍ରୀବସ୍ତ ପତ୍ରୀଙ୍କ ପିତା ସ୍ୱର୍ଗତ ଭକ୍ତ ପତ୍ରୀ ପୁରଣ ପଣ୍ଡା ରୂପେ ପରିଚିତ ଥିଲେ । ଶ୍ରୀଧର ପଣ୍ଡା ଏବଂ ଭକ୍ତ ପତ୍ରୀ ନାଗର ରାଗପୁରରେ ପୁରଣ ପ୍ରଚାରକ ଖ୍ୟାତି ରଖିଥିଲେ । ଶ୍ରୀବସ୍ତ ପତ୍ରୀଙ୍କ ଗୃହରେ ଶ୍ରୀ ଚଣ୍ଡୀ ପୁରଣ ପୂଜା ପଦ୍ଧତି ବିଭିନ୍ନ ପର୍ବର କଥାଣୀମାଳା ସୁରକ୍ଷିତ ଅଛି ।

—: ୦ :—

# ତୃତୀୟ ପରିଚ୍ଛେଦ

## ନାଗସ୍ୱର ଅମ୍ଳାନ ବଣ ମାଡଳୀ

## କବି ଶ୍ରୀ ପୀତାମ୍ବର ପଣ୍ଡା

ଜୀବନୀ:—

ଢେଙ୍କାନାଳର କୁନ୍ଦନପୁର ନିବାସୀ କାଶ୍ୟପ ଉଗାତ୍ରଧାରୀ ବ୍ରାହ୍ମଣ ଘନଶ୍ୟାମ ପଣ୍ଡା ଭ୍ରାତୃ ବିବାଦ କାରଣ, ବଶତଃ, ପ୍ରିୟ ଜନ୍ମଭୂମି ପରିତ୍ୟାଗ

କରି ବିହାର ଅନ୍ତର୍ଗତ ବରସୋଲିଆ ଗ୍ରାମରେ ବାସ କରନ୍ତି । ଏହାଙ୍କର ସ୍ତ୍ରୀଙ୍କର ନାମ ମନ୍ତୁଆ ଦେବୀ ।

ବରସୋଲିଆରେ ନବ ଦମ୍ପତିଙ୍କ କୋଳରେ ପ୍ରଥମେ ଦୁଇ କନ୍ୟା ପରେ ଦୁଇ ପୁତ୍ର ଭୂମିଷ୍ଠ ହୁଅନ୍ତି । ପିଲମାନଙ୍କ ମଧ୍ୟରେ ରୁକ୍ମିଣୀ ପୋଢ଼ୁଆଁ, ସାବିତ୍ରୀ ଦ୍ୱିତୀୟା, ପିତାମ୍ବର ତୃତୀୟ ଓ ଗୋପିନାଥ ଚତୁର୍ଥ ସ୍ଥାନ ଗ୍ରହଣ କରନ୍ତି ।

ଶ୍ୟାମଘନ ପଣ୍ଡା ନିଜର କୌଳିକ ପୁରୋହିତ କର୍ମ କରି ବରସୋଲିଆରେ ଘରବାଡ଼ି ଏବଂ ଚାଷ ଜମିକୁ ମିଶାଇ ସାଢ଼େ ତିନି ଏକର ଭୂସମ୍ପତ୍ତି ଅର୍ଜନ କରନ୍ତି । ଏଥିରେ ପରିବାରଟି ଏକ ପ୍ରକାର ଭଲରେ ଚଳି ଯାଉଥାଏ । ବଡ଼ଝିଅ ରୁକ୍ମିଣୀର ବିବାହ ବରସୋଲିଆର ଆଗ୍ନେୟ ପରିବାରରେ ସମ୍ପନ୍ନ କରନ୍ତି । ଉପଯୁକ୍ତ ସମୟରେ ରୁକ୍ମିଣୀକୁ ତାର ଶ୍ୱଶୁରାଳୟକୁ ପଠାଇ ଦିଅନ୍ତି । ଅନ୍ୟ ତିନି ସନ୍ତାନଙ୍କ ଲାଳନ ପାଳନରେ ବ୍ୟସ୍ତଥିବାବେଳେ ଅସମୟରେ ଶ୍ୟାମଘନଙ୍କର ସ୍ୱର୍ଗବାସ ହୁଏ । ମୃତ୍ୟୁବେଳକୁ ସାବିତ୍ରୀର ବୟସ ସାତ ଅବା ଆଠ ବର୍ଷ । ପୀତାମ୍ବରଙ୍କର ଦୁଇବର୍ଷ ଛଅ ମାସ । ଗୋପୀନାଥଙ୍କୁ ମାତ୍ର ଛଅ ମାସ ବୟସ ହୋଇଥାଏ । ପତି ବିଚ୍ଛେଦର ଦାରୁଣ ଦୁଃଖକୁ ଅନ୍ତରରେ ରଖି ନିରାଶ୍ରୟ ଅବସ୍ଥାରେ ମନ୍ତୁଆ ଦେବୀ ସନ୍ତାନମାନଙ୍କୁ ବଞ୍ଚାଇ ରଖିବାପାଇଁ ବହୁ ଦୁଃଖ ନିର୍ଯ୍ୟାତନା ଭୋଗ କରନ୍ତି ।

କିଛି କାଳ ପରେ ସାବିତ୍ରୀ କାଲେପିହିରିଆ ପତି ବଂଶରେ ବିବାହ ହୋଇ ଶ୍ୱଶୁରାଳୟକୁ ଯାଏ । ପିତାମ୍ବର ବରସୋଲିଆ ନିମ୍ନ ପ୍ରାଥମିକ ହିନ୍ଦି ବିଦ୍ୟାଳୟରେ ପଢ଼ା ଆରମ୍ଭ କରନ୍ତି । ତୃତୀୟ ଶ୍ରେଣୀ ପଢ଼ା ଶେଷ କରନ୍ତି ।

ପୀତାମ୍ବର କଦର କେଲା ଆସନ୍ତି । କଦରକେଲାରେ ମୁଗଲ ଗୋତ୍ରୀ ବିଶ୍ୱନାଥ ପତି ଏବଂ ପାରାଶର ଗୋତ୍ରୀ ସନାତନ ଦ୍ୱିବେଦୀ ଏମାନଙ୍କ ତତ୍ତ୍ୱାବଧାନରେ ଓଡ଼ିଆ ଶିଖି ଓଡ଼ିଆରେ ଉଚ୍ଚ ପ୍ରାଥମିକ ପଞ୍ଚମ ଶ୍ରେଣୀ ଉତ୍ତୀର୍ଣ୍ଣ ହୁଅନ୍ତି । ଏହାଙ୍କର ସୁନ୍ଦର ହସ୍ତାକ୍ଷର ଦେଖି ସମସ୍ତେ ଖୁସି ହୁଅନ୍ତି । ବିଶ୍ୱନାଥ ଏବଂ ସନାତନ ଉଭୟଙ୍କ ଚେଷ୍ଟାରେ ପୀତାମ୍ବର ପ୍ରାୟତଃ ଚଉଦ ବର୍ଷ ବୟସରୁ କଦରକେଲା ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକ ଜୀବନ ଆରମ୍ଭ କରନ୍ତି । କଦରକେଲାର ଯୋରଡ଼ା, ଯୋରଡ଼ାରୁ କୁଆଁର ମୁଣ୍ଡା ବଦଳି ହୁଅନ୍ତି । ଏଠାରେ

ଧରଣୀଧର ଶିକ୍ଷକଙ୍କ ଉପଦେଶ ପାଳନ କରି ଉଜଳପୁର ମିଡ଼ିଲଭର୍ଣ୍ଣାକୁଲର ବିଦ୍ୟାଳୟରେ ପଢ଼ି ସପ୍ତମଶ୍ରେଣୀ ଉତ୍ତୀର୍ଣ୍ଣ ହୁଅନ୍ତି । ଏହାପରେ ମିଡ଼ିଲ ଭର୍ଣ୍ଣାକୁଲର ଏଲିମେଣ୍ଟାରୀ ଟ୍ରେନିଙ୍ଗ୍ ସମାପ୍ତ କରି ବଳଣିରେ ଛଅ ମାସ ଶିକ୍ଷକତା କରନ୍ତି । ସେଠାରୁ ତର୍କୋଇ ଉଚ୍ଚପ୍ରାଥମିକ ବିଦ୍ୟାଳୟରେ ହେଡ୍-ପଣ୍ଡିତ ଦାୟିତ୍ୱ ଗ୍ରହଣ କରନ୍ତି ।

ଇତି ମଧ୍ୟରେ ପୀତାମ୍ବର ପଣ୍ଡାଙ୍କ ବିବାହ ଜବାଘାଟର ସାଧୁଚରଣ ଆଚାର୍ଯ୍ୟଙ୍କ କନ୍ୟା କୁମାରୀ ସେବତୀଙ୍କ ସହିତ ସମ୍ପନ୍ନ ହୋଇ ସାରିଥାଏ । ସେବତୀ ଶ୍ୱଶୁରାଳୟ ବରହୋଳିଆରେ ଶାଶୁ ମଣୁଆ ଦେବୀଙ୍କ ସେବାରେ ତିନିବର୍ଷ ଅତିବାହିତ କରି ତର୍କୋଇ ଆସନ୍ତି । ଦୁଃଖ ସୁଖର ସମ୍ମିଶ୍ରିତ ସ୍ରୋତରେ ଏଣ୍ଟା ଦମ୍ପତିଙ୍କର ସାଢ଼େ ଛଅ ବର୍ଷ ତର୍କୋଇରେ କଟିଯାଏ । ସେବତୀ ସ୍ୱାମୀଙ୍କ ସେବାରେ ନିଜକୁ ଉତ୍ସର୍ଗ କରି ତାଙ୍କର ଆଧ୍ୟାତ୍ମିକ ଚେତନାର ବିକାଶ କରନ୍ତି । ପୀତାମ୍ବର ସଦାନ୍ତର ସହିତ ହରିହରଙ୍କ ଶ୍ରୀଚରଣ ସେବାରେ ସତତ ନିମଗ୍ନ ରହି ଛାତ୍ରମାନଙ୍କୁ ପୁତ୍ରବତ୍ ଶିକ୍ଷା ପ୍ରଦାନ କରନ୍ତି । ତର୍କୋଇ ରହଣୀକାଳ ମଧ୍ୟରେ ଦମ୍ପତିଙ୍କ କୋଳରେ ଏକମାତ୍ର ପୁତ୍ର ଅନନ୍ତ ନାରାୟଣ ଏବଂ କନ୍ୟା ଉଷାବତି ଜନ୍ମନିଅନ୍ତି ।

କିଛି କାଳ ପରେ ତର୍କୋଇରୁ ପିତାମ୍ବରଙ୍କର ବିଶ୍ରାକୁ ବଦଳି ହୁଏ । ବିଶ୍ରାରେ ଆଠବର୍ଷ ଶିକ୍ଷକତା କରିବା ଅବସରରେ ତତ୍କାଳୀନ ସ୍କୁଲ୍ ଇନ୍‌ସପେକ୍ଟର ବନମାଳି ସାହୁଙ୍କ ପ୍ରଚେଷ୍ଟାରେ ପିତାମ୍ବର ବାବୁ ବଲାଙ୍ଗିର ସ୍କୁଲ ଇନିସ୍‌ପେକ୍ଟର ଅଫିସରେ ଏ: ଏସ: ଆଇ ପାଇଁ ଇଣ୍ଟରଭ୍ୟୁଦେଇ ଏ.ଏସ୍.ଆଇ ହୁଅନ୍ତି । କ୍ରମାନୁଯାୟୀ ଲେଫିପଡ଼ା, ତଲସର, ହେମଗିରି ଭଷ୍ଟା ଥାନା ଅଞ୍ଚଳ ଓ ରାୟବଗାରେ ଥିବା ବିଦ୍ୟାଳୟ ଗୁଡିକର ସହକାରୀ ବିଦ୍ୟାଳୟ ପରିଦର୍ଶକ କର୍ତ୍ତବ୍ୟ ସମ୍ପାଦନ କରି ଉଜଳପୁର ମୁଖ୍ୟ କାର୍ଯ୍ୟାଳୟରେ ଯୋଗ ଦିଅନ୍ତି । ସେଠାରୁ ଗୁଣ୍ଡିଆ ଶେଷରେ ବାଙ୍ଗ କାର୍ଯ୍ୟାଳୟରେ ନିଜର କର୍ତ୍ତବ୍ୟ ଶେଷ କରି ଚାକିରୀରୁ ୧୯୬୮ ମସିହାରେ ଅବସର ନିଅନ୍ତି । ଏହାର ଅନେକ ପୂର୍ବରୁ ମାତା ମଣୁଆ ଦେବୀ ଇହଧାମ ତ୍ୟାଗ କରନ୍ତି ।

ଚାକିରୀ କାଳ ଭିତରେ ପୁତ୍ର ଅନନ୍ତ ନାରାୟଣ ମାଟ୍ରିକ ପଢ଼ା ଶେଷ କରି ବିଶ୍ରା ହାଇସ୍କୁଲରେ ସାଇନ୍ସ୍ ଟିଚର୍ ହୁଅନ୍ତି । କିଛି କାଳ ପରେ

ଘଉରକେଲା ଇସ୍ପାତ କାରଖାନାର ପ୍ରଶାସକ ବିଭାଗରେ ସିନିଅର ଆସିଷ୍ଟାଣ୍ଟରୂପେ ଯୋଗ ଦିଅନ୍ତି । ଅନନ୍ତ ନାରାୟଣର ବିବାହ ଛେଣ୍ଡ ଗ୍ରାମ ନିବାସୀ ପଞ୍ଚାନନ ପାଢ଼ୀଙ୍କ କନ୍ୟା ସରୋଜିନୀଙ୍କ ସହିତ ସମ୍ପନ୍ନ ହୁଏ । କନ୍ୟା ଉଷାବତିଙ୍କୁ ପୂର୍ଣ୍ଣଚନ୍ଦ୍ର ଦ୍ୱିବେଦୀଙ୍କ ହସ୍ତରେ ପ୍ରଦାନ କରନ୍ତି । ପୀତାମ୍ବର ପରିବାର ବର୍ଗଙ୍କ ସହିତ ଗୁରୁ ଜୟଶଙ୍କର ବ୍ରହ୍ମଚାରୀ ମହାରାଜଙ୍କଠାରୁ ଦୀକ୍ଷା ଗ୍ରହଣ କରି ଭଗବତ୍ ଆରାଧନାରେ ଲିପ୍ତ ରହନ୍ତି ।

ପୁତ୍ର ଅନନ୍ତନାରାୟଣ ଏବଂ ପୁତ୍ରବଧୂ ସରୋଜିନୀଙ୍କ କୋଳରେ ଦୁଇପୁତ୍ର ଉମାକାନ୍ତ ରମାକାନ୍ତ, ଦୁଇକନ୍ୟା ଗାୟତ୍ରୀ ଗୁରୁପ୍ରିୟା ଜନ୍ମ ନିଅନ୍ତି । ପୀତାମ୍ବର ବାବୁ ସପରିବାର ଇସ୍ପାତ ନଗରୀ ସ୍ଥିତ ଅଠର ନମ୍ବର ସେକ୍ଟର କ୍ୱାଟର ନମ୍ବର ବି/୧୨୦ରେ ରୁହନ୍ତି । ଅସମୟରେ ଏକମାତ୍ର ସୁପୁତ୍ର ଅନନ୍ତ ନାରାୟଣଙ୍କର ୧୯୭୨ ମସିହା ଜାନୁଆରୀ ପନ୍ଦର ତାରିଖରେ ଇହଲୀଳା ସାଙ୍ଗ ହୁଏ । କାରଖାନାର ଇସ୍ପାତ୍ ଜେନେରାଲ ହସ୍ପିଟାଲ୍‌ରେ ପୁତ୍ରବଧୂ ସରୋଜିନୀ ପଣ୍ଡାଙ୍କୁ ଚାକିରୀ ମିଳେ ଶ୍ୱଶୁର ଶାଶୁ ଓ ପିଲାମାନଙ୍କ ସହିତ ସରୋଜିନୀ ସ୍ୱାମୀଙ୍କ କ୍ୱାଟରରେ ରୁହନ୍ତି ।

ପୁତ୍ର ବିଛେଦ ଦାରୁଣ ଦୁଃଖରେ ପୀତାମ୍ବର ଭାଙ୍ଗି ପଡ଼ନ୍ତି । ମନରେ ବୈରାଗ୍ୟ ଜାତ ହୁଏ । ପରିବାରରୁ ଦୂରରେ ରହି ହରିହରଙ୍କ ଆରାଧନାରେ ସତତ ନିମଗ୍ନ ରହନ୍ତି । ଆବଶ୍ୟକ ଅନୁଯାୟୀ ସ୍ତ୍ରୀ ବୋହୂ ନାତୀ ନାତୁଣୀ ସମସ୍ତେ ବୃଦ୍ଧଙ୍କର ସେବା କରି ଆସୁଅଛନ୍ତି । ଲେଖକ ପୀତାମ୍ବର ପଣ୍ଡାଙ୍କୁ ପ୍ରାୟତଃ ସାତ ଆଠ ବର୍ଷ ତଳେ ପ୍ରଥମ କରି ଦେଖାକରେ । ତାଙ୍କର କ୍ଷୀଣକାୟ ଗୌର ମୁଖରେ ଶ୍ୱେତ ଶ୍ମଶ୍ରୁ କପାଳରେ ଦିବ୍ୟ ଜ୍ୟୋତି ଦେଖି ମୁଣ୍ଡ ଭକ୍ତିରେ ନଇଁଯାଏ । ଆବଶକୀୟ ଆଳାପ ଶେଷକରି ଲେଖକ ତାଙ୍କଠାରୁ ବିଦାୟ ନିଏ ।

କବି ପତ୍ନୀ ସେବତୀ ଦେବୀଙ୍କ ତତ୍ତ୍ୱାବଧାନରେ ସରୋଜିନୀଙ୍କ ସଂସାର ଚାଲେ । ସେବତୀ ଗୃହ ଝଞ୍ଜାଳରେ ଲିପ୍ତରହି ଅବସର ବେଳେ ଭଗବତ ଚିନ୍ତା ଏବଂ ନାନାଦି ପାଠରେ ସମୟ ଅତିବାହିତ କରନ୍ତି । ଗୃହର ପ୍ରତ୍ୟେକ ସନ୍ଧ୍ୟା ଗୁରୁ ଏବଂ ଇଷ୍ଟଦେବଙ୍କ ସ୍ତବ ପାଠରେ ମୁଖରିତ ହୁଏ । ସାମୂହିକ ପ୍ରାର୍ଥନାର ମଧୁର ଛନ୍ଦ ଲହରୀ ଲେଖକ ଉପଭୋଗ କରିଅଛି ।

ସମୟ ଗଡ଼ିଗ୍ଲେ । କବି ପିତାମ୍ବର ପଣ୍ଡାଙ୍କ ରଚିତ ଅମୃତ ସରଣୀ ନାମକ ଏକ କ୍ଷୁଦ୍ର କବିତା ସଞ୍ଚୟନ ଲେଖକର ଦୃଷ୍ଟିଗୋଚର ହୁଏ । ନାଗର ପାଣ୍ଡୁ ଲିପିରେ କବିଙ୍କୁ ସ୍ଥାନ ଦେବାର ଅଭିଳାଷକୁ ଏଡ଼ି ନପାରି ଛବାଘାଟ ନିବାସୀ ଶ୍ରୀ ଶ୍ରୀବତ୍ସ ପଣ୍ଡାଙ୍କ ଗୃହରେ ତା ୧୮-୯-୧୯୮୮ ରିଖ ରବିବାର ପୂର୍ବାହ୍ନରେ ସାକ୍ଷାତ କରେ । ଦର୍ଶନରେ ପରମ ପ୍ରୀତ ହୁଏ । କବି ଶ୍ରୀ ପୀତାମ୍ବର ପଣ୍ଡାଙ୍କ ମୌଖିକ ସମ୍ମତି ପାଇ ଲେଖକ କବିଙ୍କ ଉପରୋକ୍ତ ଜୀବନୀ ତାଙ୍କର ପରାମର୍ଶ ଅନୁଯାୟୀ ଲେଖିଅଛି । ନିମ୍ନରେ ଶ୍ରୀ ପୀତାମ୍ବର ପଣ୍ଡାଙ୍କ କବିତ୍ୱ ଏବଂ ତାଙ୍କ ରଚିତ ରଚନାରୁ ଅଳ୍ପ କେତୋଟି ଉଦାହରଣ ପାଠକଙ୍କ ଦୃଷ୍ଟିଗୋଚର ପାଇଁ ପ୍ରକାଶ କରଯାଇଅଛି ।

ପିତାମ୍ବର ବୈରାଗ୍ୟ ଜାତ ପରଠାରୁ ବେଦୋକ୍ତ ଗୃହସ୍ଥାଶ୍ରମ ବିଧି ବିଧାନରେ ହରିହରଙ୍କ ଶ୍ରୀଚରଣ କମଳସେବାରେ ଆଶ୍ରୟ ନିଅନ୍ତି । ପ୍ରଭୁଙ୍କ ଅହେତୁକ କୃପାରୁ ଏହାଙ୍କ ଭକ୍ତି ଭାବନା କବିତା ରୂପେ ସ୍ଫୁରିତ ହୁଏ । କବି ପିତାମ୍ବର ପଣ୍ଡାଙ୍କ କବିତ୍ୱ ଭଗବତ୍ ଦିବ୍ୟ ଭାବରେ ବିମଣ୍ଡିତ ହୋଇ ପାଠକ ହୃଦୟରେ ଅପାର ଆନନ୍ଦ ସୃଷ୍ଟି କରେ । ପ୍ରାଚୀନ ପନ୍ଥୀ ମହାନ୍ ସାଧକଙ୍କର ପଦାଙ୍କ ଅନୁସରଣ କରି କବି ସ୍ୱ-ରଚିତ "ଅମୃତ ସରଣୀ" ପ୍ରକାଶ କରି ଆଶୀର୍ବାଦ ସ୍ୱରୂପ ସ୍ୱର୍ଗତ ପୁତ୍ର ଅନନ୍ତଚରଣଙ୍କୁ ଉତ୍ସର୍ଗ କରିଅଛନ୍ତି । "ସ୍ୱାମିନୀ ସୀତା ପେଦସେବା " ମାତା ମରୁଆ ଦେବୀଙ୍କ କରକମଳରେ ଏବଂ "ପାର୍ବତୀ ବିବାହ" କାବ୍ୟ ଦେଶ ଜାତିର ହସ୍ତରେ ଉତ୍ସର୍ଗ କରିଅଛନ୍ତି । ପାର୍ବତୀ ବିବାହ କାବ୍ୟ ରଚନା ପରଠାରୁ କବିଙ୍କର ଲେଖନୀ ପ୍ରାୟତଃ ଶିଥିଳ ହୋଇଯାଇଅଛି । କବି ସର୍ବଦା ଧ୍ୟାନ, ଜପ, ବିଭୁବନ୍ଦନା, ଗୀତ ଓ ପୁରାଣ ପାଠରେ ସମୟ ଅତିବାହିତ କରୁଅଛନ୍ତି ।

କବି ଶ୍ରୀ ପିତାମ୍ବର ପଣ୍ଡା ୧୯୦୮ ମସିହା ଜୁନ୍ ଏକୋଇଶ ତାରିଖରେ ବିହାରସ୍ଥ ବରସୋଲିଆ ଗ୍ରାମରେ ଜନ୍ମ ହୋଇ ବର୍ତ୍ତମାନ ଛବାଘାଟରେ ବୟାଅଶୀ ବର୍ଷରେ ପଦାର୍ପଣ କରିଅଛନ୍ତି । ଇତି ମଧ୍ୟରେ କବି ପତ୍ନୀ ସେବତୀ ଦେବୀଙ୍କର ୧୯୮୯ ମସିହା ଅକ୍ଟୋବର ତେର ତାରିଖ ଶୁକ୍ରବାର ଦିନ ସ୍ୱର୍ଗବାସ ହୋଇଯାଇଅଛି । ଶ୍ରୀ ଶ୍ରୀବତ୍ସ ପଣ୍ଡାଙ୍କ ପରିବାର କବିଙ୍କ ସେବାରେ ଉତ୍ସର୍ଗୀକୃତ ହୋଇଥିବାର ଦେଖି ଲେଖକ ସେମାନଙ୍କୁ କୃତଜ୍ଞତା ଅର୍ପଣ କରିବା ସହିତ ସେମାନଙ୍କର ମଙ୍ଗଳ କାମନା କରୁଅଛି ।

## କବିଙ୍କ ରଚନାବଳୀ :-

କବି ଶ୍ରୀ ପିତାମ୍ବର ପଣ୍ଡାଙ୍କ ରଚିତ ଅମୃତ ସରଣୀ କବିତା ସଙ୍କଳନ; ଯାମିନୀ ସୀତା ଖଣ୍ଡକାବ୍ୟ ଓ ପାର୍ବତୀ ବିବାହ କାବ୍ୟ ଆଦିର ଆଲୋଚନା ନକରି ତାଙ୍କ ରଚନାର କେତେକ ଉଦାହରଣ ପାଠକଙ୍କ ଅବଗତ ନିମନ୍ତେ ଉଲ୍ଲେଖ କରଯାଇପାରେ ।

### ଅମୃତ ସରଣୀ କବିତା ସଞ୍ଚୟନ (ପ୍ରକାଶିତ)

ଓଁ ନମୋ ହରିହରାୟ
ଉତ୍ସର୍ଗ ପତ୍ର
ଲେଖାର ଉଦ୍ଦେଶ୍ୟ

ଆରମ୍ଭ :— ଓଁ ନମୋ ହରିହରାୟ
ଦ୍ୱୈତା ଦ୍ୱୈତ ସ୍ୱରୂପାୟ ନିର୍ଗୁଣାୟ ଗୁଣ ମୂର୍ତ୍ତନେ ।
ଆଲିଙ୍ଗ ଲିଙ୍ଗ ରୂପାୟ ନମସ୍ତେ ପରମାତ୍ମନେ ।।
ଓଁ ନମୋଽସ୍ତ୍ୱନନ୍ତାୟ ସହସ୍ର ମୂର୍ତ୍ତୟେ
ସହସ୍ର ପାଦାକ୍ଷି ଶିରୋରୁବ ହବେ ।।
ସହସ୍ର ନାମ୍ନେ ପୁରୁଷାୟ ଶାଶ୍ୱତେ
ସହସ୍ର କୋଟି ଯୁଗ ଧାରିଣେ ନମଃ ।।

ଏହାପରେ କବି ଶ୍ରୀ ଗଣେଶ, ଶ୍ରୀ ନାରାୟଣ, ଶ୍ରୀ ସଦାଶିବ, ଜଗଦ୍ଧାତ୍ରୀ ଦୁର୍ଗା, ଶ୍ରୀ ସୂର୍ଯ୍ୟନାରାୟଣ ଓ ଦ୍ୱୈତା ଦ୍ୱୈତ ଭବେ ବିଭୁଙ୍କ ବନ୍ଦନା ଆଦି ଦେବତା-ମାନଙ୍କୁ ଚଉଦ ଅକ୍ଷର ବୃତ୍ତରେ ତେପନ ପଦରେ ବନ୍ଦନା କରି ଅଛନ୍ତି ।

ଶ୍ରୀ ଗଣେଶ ବନ୍ଦନା
ଜୟ ଜୟ ଗଣନାଥ ଗଉରୀ ନନ୍ଦନ ।
ବିଘ୍ନ ବିନାଶକ ସର୍ବ ଶୁଭର ସଦନ ।।୧।।
ଜୟ ପ୍ରଭୁ ଗଜାନନ ଋଦ୍ଧି ସିଦ୍ଧିକାନ୍ତ ।
ଅଗ୍ରପୂଜ୍ୟ ଥୋରହସ୍ତ ଅଯୋନି ସମ୍ଭୂତ ।।୨।।
× × ×

ଶ୍ରୀ ନାରାୟଣଙ୍କ ବନ୍ଦନା

ଜୟ ଜୟ ଜଗନ୍ନାଥ ବ୍ରହ୍ମ ସନାତନ ।
ଜୟ ଜୟ ଜଗଦିଶ ଅଖିଳ କାରଣ ।୯।

× × ×

ଶ୍ରୀ ସଦାଶିବଙ୍କ ବନ୍ଦନା

କୁନ୍ଦେନ୍ଦୁ ଶଙ୍ଖ ଧବଳ ନମୋ ସଦାଶିବ ।
ଯୋଗୀନ୍ଦ୍ର ମୁନୀନ୍ଦ୍ର ସେବ୍ୟ ପ୍ରଭୁ ଉମାଧବ ।୧୬।

× × ×

ଜରା ଜର୍ଜରିତ କଲି ବୁଦ୍ଧି ବଳ ହତ ।
ଝଟତି ଉଦ୍ଧରି ଧର ପ୍ରଭୁ ବିଶ୍ୱନାଥ ।୨୧।

ଜଗଦ୍ଧାତ୍ରୀ ଦୁର୍ଗାଙ୍କ ବନ୍ଦନା

ନମଇଁ ପାର୍ବତୀ ମାଗୋ ଜଗତ ଜନନୀ ।
ଆଦିଶକ୍ତି ଦୟାମୟୀ ଦୁଃଖ ବିନାଶନୀ ।୨୨।

× × ×

ସର୍ବାଭୀଷ୍ଟ ଦାୟିନୀ ମୁଁ ବଡ଼ ଆତଙ୍କିତ ।
ମାଆ ତୋ କୃପାରୁ ମୋତେ ନକର ବଞ୍ଚିତ ।୨୬।

ଶ୍ରୀ ସୂର୍ଯ୍ୟ ନାରାୟଣଙ୍କ ବନ୍ଦନା

ନମୋ ନମୋ ଦିବାକର ଜଗଜ୍ଜନ ସ୍ୱାମୀ ।
ନମୋ ନମୋ ଦିବାକର ସର୍ବ ଅନ୍ତର୍ଯ୍ୟାମୀ ।।୨୮।।

ଦ୍ୱୈତା ଦ୍ୱୈତ ଭବେ ବିଭୁଙ୍କ ବନ୍ଦନା

ଜୟ ଗଣେଶ୍ୱର ନାରାୟଣ ସଦାଶିବ ।
ଜୟ ମା ପାର୍ବତୀ ଜୟ ଛାୟାଦେବୀ ଧବ ।୨୯।

ଏକଇ ଈଶ୍ୱର ପଞ୍ଚରୂପ ପ୍ରକାଶିଣ ।
ହୋଇଅଛ ସଦା ପ୍ରଭୁ ସୃଷ୍ଟିର କାରଣ ।୩୦।

ନମୋ ନମୋ ନିରାକାର ସାକାର ମୂରତି ।
ଅକ୍ଷୟ ଅବ୍ୟୟ ତୁମ୍ଭେ ପରଂବ୍ରହ୍ମ ଜ୍ୟୋତି ।୩୧।

× × ×

ତବ ଦୟା ବଳୁ ନାଥ ବହୁଦିନ ପରେ ।
ଶିବ ଗୀତା ପ୍ରାପ୍ତ ହେଲି ଶ୍ରୀବ୍ୟାସ ଗୁମ୍ଫାରେ ।୪୮।

× × ×

ଅନ୍ତର୍ଯ୍ୟାମୀ ନାଥ ଅନ୍ତର୍ଗତ ଦୁଃଖ ହର ।
ତୋ ପଦ୍ମ ପାଦ ଶରଣ ଦୀନ ପିତାମ୍ବର ।୫୩।

ଲେଖାର ଉଦ୍ଦେଶ୍ୟରେ କବି ଅମୃତ ସରଣୀର ନାମକରଣ ସମ୍ପର୍କରେ ଲେଖିଅଛନ୍ତି "ମୋକ୍ଷହିଁ ଅମୃତ । କେବଳ ଶିବ ଗୀତାର ତ୍ରୟୋଦଶ ଅଧ୍ୟାୟଟିର ସଂଯତ ପାଠରେ ତାହା ପାଇବା ସୁନିଶ୍ଚିତ । ଏହା ଅମୃତତ୍ତ୍ୱ ଲାଭର ସହଜ ସରଳ ଓ ସୁଗମ ପନ୍ଥା ବୋଲି ଏକ କ୍ଷୁଦ୍ର ପୁସ୍ତକଟିର ନାମ ଅମୃତ ସରଣୀ ରଖାଯାଇଅଛି ।" ଶିବ ଗୀତାର ତ୍ରୟୋଦଶ ଅଧ୍ୟାୟର ମୋକ୍ଷାଧ୍ୟାୟକୁ ନିଜ ଭାଷାରେ ବର୍ଣ୍ଣନା କରିବାକୁ ଯାଇ ଦୁଇଟି ଭାଗରେ ଯଥା ପୂର୍ବାଭାଷ ଏବଂ ମୋକ୍ଷାଧ୍ୟାୟ ନାମରେ ରଚନା କରିଅଛନ୍ତି ।

## ପୂର୍ବାଭାଷ

ନୈମିଷ୍ୟାରଣ୍ୟରେ ସୁତ ପୁରାଣ କହନ୍ତି ।
ମୁନିଜନେ ଏକଧ୍ୟାନେ ଶ୍ରବଣ କରନ୍ତି ।୧।

ପଞ୍ଚବଟୀ ବନୁ ସୀତା ହରିଲା ରାବଣ ।
ତାଙ୍କ ବିଚ୍ଛେଦେ ଶ୍ରୀରାମ ହେଲେ ହତଜ୍ଞାନ ।୨।

× × ×

ଅଗସ୍ତି କହିଲେ ତେବେ ଶିବ ସେବା କର ।
ତାଙ୍କ ପ୍ରସାଦେ ପାଇବ ପଶୁପତ ଶର ।।

ବିରଜା ଦୀକ୍ଷା ଦେଇଣ ମୁନି ଗ୍ଲଲିଗଲେ ।
ସେହିଦିନୁ ରାମଚନ୍ଦ୍ର ଦୀକ୍ଷାରେ ରହିଲେ ।।

× × ×

ପାଶୁପତ ଅସ୍ତ୍ର ଦେଇ ଜ୍ଞାନେ ପ୍ରବୋଧିଲେ ।
ଦ୍ୱାଦଶ ଅଧ୍ୟାୟ ଶେଷ ଉପାସନାଦିରେ ॥
ମୁକ୍ତିର ଲକ୍ଷଣ ତ୍ରୟୋଦଶ ଅଧ୍ୟାୟରେ ।
ଶିବ କହିଛନ୍ତି ରାମ ଅତୀବ ସ୍ନେହରେ ॥

× × ×

ନମୋ ନମୋ ହରିହର ଦୀନଜନ ବନ୍ଧୁ ।
ପୀତାମ୍ବରଙ୍କୁ ଉଦ୍ଧର କୃପାଜଳ ସିନ୍ଧୁ ।୧୮।

## ମୋକ୍ଷାଧ୍ୟାୟ

ରାମ ପଚାରନ୍ତି ପ୍ରଭୁ ହେ କୃପା ସାଗର ।
ମୁକ୍ତି ସ୍ୱରୂପ ଲକ୍ଷଣ କେମନ୍ତ ପ୍ରକାର ।୨।
ମୋଠାରେ ପ୍ରସନ୍ନ ହୋଇ କରନ୍ତୁ ବର୍ଣ୍ଣନ ।
ତରିଯିବେ ସଂସାରରୁ ଶୁଣିବାର ଜନ ।୨।
ସଦାଶିବ କହୁଛନ୍ତି ମହାବାହୁ ଶୁଣ ।
ମୁକ୍ତିର ପଞ୍ଚ ଲକ୍ଷଣ ପ୍ରକାଶୁଛି ପୁଣ ।୩।
ସାଲୋକ୍ୟ ସାରୂପ୍ୟ ସାର୍ଷ୍ଟ୍ୟ ସାଯୁଜ୍ୟ କୈବଲ୍ୟ
ମୁକ୍ତିର ଏ ପଞ୍ଚ ଭେଦ ଦଶରଥ ବାଳ ।୪।

× × ×

ହେ ରାମ ଏ ଅଧ୍ୟାଟି ଯେ ନିତ୍ୟ ପାଠକରେ ।
ଅବାମନ ଦେଇ ଶୁଣେ ଏକାନ୍ତ ଭକ୍ତିରେ ।୩୬।
ଅନାୟାସେ ଦେହ ବନ୍ଧନରୁ ମୁକ୍ତ ହୁଏ ।
ଏଥିରେ କୌଣସି ମତେ ନାହିଁଟି ସଂଶୟେ ।୩୭।
ସଯତ ଚିତ୍ତରେ ନିତ୍ୟ ପାଠକର ଏହା ।
ଅନାୟାସେ ମୁକ୍ତ ତୁମ୍ଭେ ହେବ ରଘୁନାହା ।୩୮।

× × ×

ପତିତ ପାବନ ବାନା ବହିଛ ଗୋସାଇଁ ।
ପତିତ ପିତାମ୍ବରକୁ ବେଗେ କର ଚାହିଁ ॥

ମୋକ୍ଷାଧ୍ୟାୟ ପରେ ଚଉଦ ଅକ୍ଷରି ବୃତ୍ତେ, ବଙ୍ଗଳାଶ୍ରୀ, ଗ୍ରେଷି, ବିଶ୍ୱଜୀବନ ହେ ତୁମ୍ଭଙ୍କୁ କରୁଣା ସିନ୍ଧୁ ବୃତ୍ତରେ ସୁଗେଟି ପ୍ରାର୍ଥନା ରଚନା କରି ଅଛନ୍ତି । ପରିଶେଷରେ ଶଙ୍କରାଚାର୍ଯ୍ୟ ବିରଚିତ ମୋହ ମୁଦ୍‌ଗର ସଂସ୍କୃତ ଶ୍ଳୋକ ନିଜ ମାତୃଭାଷା ଓଡ଼ିଆ, ରାମକେରୀ-ବୃତ୍ତରେ ପଦ୍ୟାନୁବାଦିତ କରିଅଛନ୍ତି ।

ରାମକେରୀ—ବୃତ୍ତ

ରେ ମୂଢ଼; ଧନ ଅରଜନ ଆଶାକୁ ବେଗେ କର ବର୍ଜନ ।
ଭାଗ୍ୟେ ଯା ମିଳୁଛି ତହିଁରେ କର ସନ୍ତୋଷ ମନ ।୧।

× × ×

ଭୁଞ୍ଜିଇ ନରକ ନିଗୁଢ଼ ଆତ୍ମଜ୍ଞାନ ବିହୀନ ।
ଷୋଡ଼ଶ ଶ୍ଳୋକେ ସମାପତ ଶଙ୍କରଙ୍କ ବଚନ ।୩୦।
ଏଥେ ଯା ବିବେକ ନୋହିବ ଅଧିକ କେ କହିବ
ପୀତାମ୍ବର ଦୀନେ ଯଥାର୍ଥ ପଥେ ନିଅ ମାଧବ ।୩୧।

---

## ମୋର ସ୍ୱାମିନୀ ସୀତା

କବି ଶ୍ରୀ ପୀତାମ୍ବର ପଣ୍ଡା ମୋର ସ୍ୱାମିନୀ ସୀତା ନାମକ କ୍ଷୁଦ୍ର ଖଣ୍ଡକାବ୍ୟ ରଚନା କରି ଅଛନ୍ତି । ଉକ୍ତ ଖଣ୍ଡକାବ୍ୟର ଆଲୋଚନା ନକରି କେବଳ କେତେକ ଉଦାହରଣ ସହିତ ଏହି ଅପ୍ରକାଶିତ ପାଣ୍ଡୁଲିପିର ପରିଚୟ ଦିଆଯାଇ ପାରେ ।

କବି ଶ୍ରୀ ପୀତାମ୍ବର ପଣ୍ଡାଙ୍କ "ଉତ୍ସର୍ଗ ପତ୍ର ଏବଂ ଲେଖିଲି କାହିଁକି ମନ୍ତବ୍ୟ ଦୁଇଟିର କବିଙ୍କର ମାତୃଚିନ୍ତନ ଓ ମୋର ସ୍ୱାମିନୀ ସୀତାର ଉଦ୍ଦେଶ୍ୟ ସ୍ପଷ୍ଟ ଅନୁମିତ ହୁଏ ।

### "ଉତ୍ସର୍ଗ ପତ୍ର"

"ମା !

ତୁମର ୪ଟି ସନ୍ତାନ ମଧ୍ୟରୁ ଜ୍ୟେଷ୍ଠ ଭଗ୍ନୀ ଶ୍ୱଶୁରାଳୟକୁ ଯାଇ-ସାରିଥିଲେ । ବାକି ତିନୋଟି ସନ୍ତାନ ମଧ୍ୟରୁ ୧ମ କନ୍ୟା ପ୍ରାୟ ୭/୮ ବର୍ଷ

୨ୟ ମୁଁ ବ୨' ୬ ମାସ; ତୃତୀୟ ପୁତ୍ର ମାତ୍ର ୬ ମାସ । ବାପା ପୁଣି ଭତ୍ତୃ ବିବାଦ ନେଇ ଜନ୍ମସ୍ଥାନ ଢେଙ୍କାନାଳ ଛାଡ଼ି ବିହାରସ୍ଥ ବରସୋଲିଆ ନାମକ ଗ୍ରାମରେ ରହୁଥିଲେ । ସେ ଅସମୟରେ ସ୍ୱର୍ଗାରୋହଣ କରି ଭାର ସ୍ୱରୂପ ତୁମ ଦାୟିତ୍ୱରେ ଆମ୍ଭମାନଙ୍କୁ ଛାଡ଼ିଦେଇଗଲେ । ତୁମେ ଥିଲ ଯୁବତୀ । ଘରକୋଣର ବଧୂ । ସେତେବେଳେ ଆହା ବୋଲି ସାହା ହେବାକୁ କେହି ନଥିଲେ । ତୁମେ ଏକାବେଳେ ଅସହାୟ । ତଥାପି ଆମ୍ଭମାନଙ୍କୁ ବଞ୍ଚାଇ ରଖିବା ପାଇଁ ଲଜ ସରମକୁ ଜଳାଞ୍ଜଳି ଦେଇ ଅଣ୍ଟାଭିଡ଼ି ପଦାକୁ ବାହାରି ପଡ଼ିଲ । ଦୂର ବନକୁ ଯାଇ ମୁଣ୍ଡରେ ଜାଳକାଠ ବୋହି ଆଣିଛ । ଧାନକାଟି ଭୁଜା ଭଜି ପିଠକରି ବିକିଛ । କିଂ କର୍ତ୍ତବ୍ୟ ଅବସ୍ଥାରେ ଆପୁ ଗଞ୍ଜାଇ ବିକି ଧରା ପଡ଼ିଛ । ଆମର ପରି ପୋଷଣ ପାଇଁ ଯେତେ କଷ୍ଟ ସହିଛ ଲେଖିବସିଲେ ପୋଥିଟିଏ ହେବ । ଦିନେ ଦିନେ ବାପାଙ୍କୁ ମନେପକାଇ ଯେପରି କାନ୍ଦିଛ, ପେଜ ତୋରାଣିରେ ନିଜ ଆତ୍ମା ସନ୍ତୋଷ କରି ଆମକୁ ସୁଖାଦ୍ୟ ଖୁଆଇ ଯେପରି ପାଳିଛ ସେ ସବୁ ମନେପଡ଼ି ଆଜି ସୁଦ୍ଧା ଜୀବନ କର୍ତ୍ତି ହୋଇ ଯାଉଛି । ଛାତି ଫାଟିଯାଉଛି । ମାତ୍ର ତୁମେ ଆମ ପାଇଁ ଏତେ କଷ୍ଟ ସହି ଆମଠାରୁ ପାଇଲ କ'ଣ ?

ମୁଁ ତୁମଠାରୁ ସର୍ବାଧିକ ସ୍ନେହ ପାଇଥିଲେ ବି ତୁମର କ'ଣ କଲି । ମୋ ପରି ଅଧମାଧମ ଅଯୋଗ୍ୟ ସନ୍ତାନ ଜଗତରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ତଥାପି ବିଭୁ କୃପାରୁ ଆଜି ଲକ୍ଷ୍ମଣଙ୍କ ଭାତୃଭକ୍ତି ପକ୍ଷାନ୍ତରେ ପ୍ରଭୁଭକ୍ତିର ପରକାଷ୍ଠ ସ୍ୱରୂପ ଏ କ୍ଷୁଦ୍ର ପୁସ୍ତକଟି ତୁମର ସ୍ୱର୍ଗତ ଆତ୍ମାର ଶାନ୍ତି ବିଧାନ ପାଇଁ ତୁମ କର କମଳରେ ଅର୍ପଣ କଲି ।" । ଇତି ।

ତୁମର ଅଧମ ପୁତ୍ର

ତା ୧୫।୭।୧୯୭୬ ଇଂ } ଶ୍ରୀ ପୀତାମ୍ବର ପଣ୍ଡା

## ଲେଖିଲି କାହିଁକି ?

"ପ୍ରଭୁଙ୍କ ଇଚ୍ଛାରେ ୪୪ ବର୍ଷ କଲ୍ୟାଣର ୧୨ ଅଙ୍କଟି ଅକସ୍ମାତ୍ ମୋର କରଗତ ହେଲା । ତହିଁରେ ଥିବା ହୃଦୟ ସ୍ପର୍ଶୀ କେତୋଟି ନିବନ୍ଧ ମଧ୍ୟରୁ ଲେଖକ ଶ୍ରୀ ବ୍ରଜେଶଜୀ ଭଟନଗର ଏମ୍.ଏ.ଙ୍କ "ସ୍ୱାମୀନ୍ ସାୟାଙ୍କୁ ହମାରୀ" ଲେଖାଟି ମୋର ଏତେ ହୃଦୟ ସ୍ପର୍ଶୀ ହେଲା ଯେ ତାକୁ ମୁଁ ବାର ବାର ପଢ଼ି ମଧ୍ୟ ତୃପ୍ତି ଲାଭ କରି ପାରିଲି ନାହିଁ । ନିବନ୍ଧଟି ହିନ୍ଦିଭାଷାରେ ଗଦ୍ୟାକାରରେ ପ୍ରାୟ ୪୨ ପୃଷ୍ଠାରେ ପ୍ରଭୁଭକ୍ତ ଓ ଭକ୍ତ ଭକ୍ତିର ପରାକାଷ୍ଠାରେ ଲିଖିତ ।

ମୁଁ ହିନ୍ଦି ବଙ୍ଗଳା ଓ ଓଡ଼ିଆ ରାମାୟଣ ପଢ଼ିଛି । କିନ୍ତୁ କେଉଁଠି ହେଲେତ ଏତାଦୃଶ ମନମୁଗ୍ଧକାରୀ ବିଷୟ ବସ୍ତୁର ଉପଲବ୍ଧି କରିପାରି ନାହିଁ । ଏ ଲେଖାର ଭାବରାଶି ମୋର ପକ୍ଷରେ ସମ୍ପୂର୍ଣ୍ଣ ନୂଆଁ ପ୍ରେମ ଭକ୍ତି ମାର୍ଗର କଥା । ତେଣୁ ମୋତେ ବଡ଼ ରସଯୁକ୍ତ ସ୍ୱାଦିଷ୍ଟ ଓ ଚିତା କର୍ଷକ ହେଲା ।

ସ୍ୱର୍ଗୀୟ ମହାତ୍ମା ତୁଳସୀ ଦାସଙ୍କ ରଚିତ ହିନ୍ଦି ରାମାୟଣ ଅବଶ୍ୟ ପ୍ରେମ ଭକ୍ତି ରସରେ ଜଗତରେ ଅତୁଳନୀୟ । ତଥାପି ଲେଖକଙ୍କ ଏ ଛୋଟିଆ ଲେଖାଟି ମୋର ମନକୁ ଏତେ ଆକର୍ଷଣ କଲା ଯେ ମୁଁ ଏ ଲେଖାର ରସ ରାଶି ରାଶି ମଜା ଲୁଟି ଲୁଟି ବି ତୃପ୍ତି ଲାଭ କରି ପାରିଲି ନାହିଁ । ପ୍ରଭୁଙ୍କ ଇଙ୍ଗିତ ହଠାତ୍ ମୋତେ ପ୍ରେରଣା ଦେଲା ଯେ ମୁଁ ଏକା ଏଥିର ସ୍ୱାଦ ଚାଖୁଥିଲେ କ'ଣ ହେବ—ଯଦ ମୋର ସମସ୍ତ ଭାଇ ଭଉଣୀ ଏହାକୁ ପାଠ କରି ଉପକୃତ ହୋଇ ପାରନ୍ତେ ଏବଂ ପ୍ରେମ ଭକ୍ତିର ମୂଲ୍ୟ ବୁଝି ବିଭୁ ପଦାର ବିନ୍ଦ ମକରନ୍ଦ ପାନ କରି ଏ ସୁଖ ଏ ଆନନ୍ଦ ଉପଭୋଗ କରିପାରନ୍ତେ ତେବେ ତାଙ୍କର ଉପାସନା ଦ୍ୱାରା ନିଜ ନିଜର ଜୀବନକୁ ଧନ୍ୟ କରନ୍ତେ ।

ପ୍ରଭୁଙ୍କ ଇଚ୍ଛା ଯାହା ତାହାହିଁ ହେଲା । ତାରି ଇଚ୍ଛାରେ ନିବନ୍ଧଟି ଗଦ୍ୟାକାରରେ ନ ଲେଖି ସମସ୍ତେ ବୁଝି ରସ ଆସ୍ୱାଦନ କରିବା ଭଳି ସରଳ ଛାନ୍ଦ ବନ୍ଧରେ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ଭାବେ ଲେଖିବା ପାଇଁ ଯଥାସାଧ୍ୟ ଚେଷ୍ଟା କରିଛି ।

ମୋର ଯୋଗ୍ୟତା ଯାହା ସମସ୍ତେ ଜାଣନ୍ତି । ଜଣେ ମି:ଭ:ଇ:ଟି:ର ଶକ୍ତି କେତେ ? ତେଣୁ ଏଥିରେ ଯେ ଭରଣ ଭରଣ ଦୋଷ ତ୍ରୁଟି ନ ରହିଛି ତାହା ମନା କରି ହେବ କିପରି ?

ଭବିଲି ଏ ସବୁ ଦୋଷ ତ୍ରୁଟିରେ ଯାଏ ଆସେ କେତେ ! କେବଳ ଭକ୍ତି ତଦଦ୍‌ଗତ ମାନସ ପାଠକ ପାଠିକା ଲେଖାର ଭବ ଗ୍ରହଣ କରି ଏଥିରେ ଅନୁପ୍ରାଣିତ ହେଲେ ମୋର ସମସ୍ତ ଶ୍ରମ ସଫଳ ହେଲା ବୋଲି ମୁଁ ମନେ କରିବି ।"

ବିନୀତ

**ଶ୍ରୀ ପିତାମ୍ବର ପଣ୍ଡା**

## —:ବିଷୟ ବସ୍ତୁ:—

"ଏଥିର ବିଷୟ ବସ୍ତୁ ହେଉଛି ସୌମିତ୍ରି ପ୍ରତ୍ୟହ ପ୍ରଭତରୁ ଶ୍ରୀରମଚନ୍ଦ୍ରଙ୍କ ପଦାର୍ଚ୍ଚନା କରୁଥିଲେ । ବିବାହ ପରେ ମିଥିଳାରୁ ପ୍ରତ୍ୟାବର୍ତ୍ତନ କରିବାର ଦ୍ୱିତୀୟ ଦିନ ସେ ପ୍ରଭୁଙ୍କର ପାଦପୂଜା କରିବାର ସୁବିଧା ନପାଇ ଅତ୍ୟନ୍ତ କ୍ଷୁବ୍ଧ ହେଲେ । ତାଙ୍କର ଭକ୍ତି ତଦ୍‌ଗତ ହୃଦୟରେ ଏ ବିଷୟଟି ଏତେ ବାଧା ଦେଲା ଯେ ସେ ସେଦିନ ଅହୋରାତ୍ର ନିର୍ଜ୍ଜେ ଅନଶନରେ କାଳଯାପନ କଲେ । ସେଥିପାଇଁ ଉର୍ମିଳାକୁ ବି ଉପବାସ କରିବାକୁ ପଡ଼ିଲା ।

ଉପବନରେ ତାଙ୍କର ବ୍ୟବହାରରୁ ରମଚନ୍ଦ୍ର ସବୁ ବିଷୟ ଜାଣିପାରି ସୀତାଙ୍କ ସହିତ ବଡ଼ କଷ୍ଟ ଅନୁଭବ କଲେ । ଅନ୍ୟଦିନ ଲକ୍ଷ୍ମଣଙ୍କୁ ପଦାର୍ଚ୍ଚନା ପାଇଁ ସ୍ୱାଧୀନତା ମିଳିଲା ।

ସ୍ଥୁଳତଃ ଲକ୍ଷ୍ମଣଙ୍କର ରମଚନ୍ଦ୍ରଙ୍କ ପାଦପୂଜା ନେଇ ଏ ବିଷୟଟି ଉଲ୍ଲିଖିତ ହୋଇଛି ।"

# ମୋର ସ୍ୱାମିନୀ ସୀତା

### ମଙ୍ଗଳା ଚରଣଂ

ଶ୍ରୀରମ ରମ ରଘୁ ନନ୍ଦନ ରମରମ ।
ଶ୍ରୀରମ ରମ ଭରତାଗ୍ରଜ ରମ ରମ ॥
ଶ୍ରୀରମ ରମ ରଣ କର୍କଶ ରମ ରମ ।
ଶ୍ରୀରମ ରମ ଶରଣଂ ଭଜ ରମ ରମ ॥

ଦକ୍ଷିଣେ ଲକ୍ଷ୍ମଣୋ ଧନ୍ୱି ବାମେ ତୋ ଜନକାତ୍ମଜା ।
ପୁରସ୍ତେ ମାରୁତି ର୍ଯସ୍ୟ ତ୍ୱଂ ନମାମି ରଘୂତ୍ତମ ॥

## ପ୍ରଥମ ଛାନ୍ଦ

(ରାଗ—ଦେଶାକ୍ଷି)

ଅରୁଣ ଚନ୍ଦ୍ରଙ୍କ ସର      ଶ୍ରବଣେ ଲକ୍ଷ୍ମଣ ବୀର
ଶଯ୍ୟା ତ୍ୟାଗକରିଣ ଉଠିଲେ ବହନ

ସନ୍ଧ୍ୟା ବନ୍ଦନୁ ନିବୃତ୍ତ      ରଘୁନାଥେ ଦତ୍ତଚିତ
ପଦ ପ୍ରକ୍ଷାଳନେ ଯେ କରିଲେ ଗମନ
ଜଳଝରୀ ଧରି ହସ୍ତରେ
କନକ ଭବନେ ବିଜେ      ଅତି ତ୍ୱରରେ ।୧।

× × ×

ଦ୍ୱାର ଫିଟିବା ସୂଚନା      ଦେବ ଗୋ କରି କରୁଣା
କହି ବସିଲେ ଉଦ୍ୟାନ   ଶିଳା ଉପରେ
ଦାସୀ ପୁନଃ ପ୍ରଣମିଲ      ବେଗେ କାର୍ଯ୍ୟାନ୍ତରେ ଗଲ
ଲକ୍ଷ୍ମଣ ବିଷାଦ ଯୁକ୍ତ ହେଲେ ଅନ୍ତରେ
କି ଭବେ ମୁଁ ଥିଲିଟି ଆସି
କି ଘଟିଲ ମର୍ମ ବ୍ୟଥା ନୁହେଁ ପ୍ରକାଶି ।୧୧।

ପୀତାମ୍ବର ଦିବାନିଶି      ଭବନା କରଇ ବସି
ବାଲ୍ୟ ଯୌବନ ଶେଷରେ ଆସିଲ ଜରା
କହୁଁ କହୁଁ ଗଲ ଦିନ      ସୁଖେ ଦୁଃଖେ ମୁହ୍ୟମାନ
କାଳ ବିକାଳ ପ୍ରାଣ ନେବାକୁ ତ୍ୱରା
ହେଲେଣିଟି ରକ୍ଷା କାହିଁରେ
ଅକ୍ଷିତ ରକ୍ଷକ ପ୍ରଭୁ ଉଦ୍ଧର ବାରେ ।୧୨।

କବି ଶ୍ରୀ ପୀତାମ୍ବର ପଣ୍ଡା "ମୋର ସ୍ୱାମିନୀ ସୀତା" ଖଣ୍ଡ କାବ୍ୟରୁ ଦ୍ୱିତୀୟ ଛାନ୍ଦ-ନଳିନୀ ଗୌଡ଼ା, ତୃତୀୟ ଛାନ୍ଦ-ବଙ୍ଗଳାଶ୍ରୀ, ଚତୁର୍ଥ ଛାନ୍ଦ-

କଳହଂସ କେଦାର, ପଞ୍ଚମ ଛାନ୍ଦ-ବସନ୍ତ ବରାଡ଼ୀ, ଷଷ୍ଠ ଛାନ୍ଦ-ଶଙ୍କର ଭରଣ, ସପ୍ତମ ଛାନ୍ଦ–ରସକୁଲ୍ୟା, ଅଷ୍ଟମ ଛାନ୍ଦ-ବଙ୍ଗଳାଶ୍ରୀ, ନବମ ଛାନ୍ଦ-ରାମକେରୀ ଓ ଦଶମ ଛାନ୍ଦ-ଶ୍ରେଣି ଆଦି ରାଗ ଗୁଡ଼ିକରେ ସରସ ସୁନ୍ଦର ହୃଦୟ ସ୍ପର୍ଶୀ ଭାବେ ଚିତ୍ରଣ କରି ଅଛନ୍ତି । ନିମ୍ନୋକ୍ତ ପଦ୍ୟାଂଶ ଗୁଡ଼ିକରୁ କବିଙ୍କ ଭାବ ଆହରଣ କରଯାଇ ପାରେ ।

ଅଯୋଧ୍ୟାରେ ଗୃହେ ଗୃହେ ଗୀତ ମାଙ୍ଗଳିକ ।
ନାନାବିଧ ହେଉଥିଲା ନୃତ୍ୟ ପ୍ରଭୃତିକ ଯେ ।୧।

କନକ ଭବନ ସିଂହ ଦ୍ୱାରରେ ଗାୟକ ।
ଭୈରବେ ପ୍ରଭାତି ଗାନ। ଶ୍ରୁତି ସୁରୋଚକ ଯେ ।୨।

(୨ୟ ଛାନ୍ଦ ରାଗ ନଳିନୀ ଗୌଡ଼ା)

× × ×

ଯୋଗଜ୍ଞାନ ବିଜ୍ଞାନ ବଡ଼ କଠିନ ।
ପ୍ରେମ ଭକ୍ତିରେ ବଶ ଶ୍ରୀ ଭଗବାନ ଯେ ।୧।

× × ×

ନାମ ଭଜନୁ ଜନ୍ମ ହୁଅଇ ଭକ୍ତି ।
ତହିଁରୁ ପ୍ରେମ ପ୍ରେମୁଁ ପ୍ରଭୁ ମିଳନ୍ତି ଯେ ।୩।

× × ×

ଏପରି ପ୍ରଭୁଭକ୍ତ ପଦାରବିନ୍ଦ ।
ସର୍ବଦା ପୀତାମ୍ବର ସାନନ୍ଦେ ବନ୍ଦେ ଯେ ।୨୭।

(୪ର୍ଥ ଛାନ୍ଦ ରାଗ––କଳହଂସ କେଦାର)

× × ×

ରାମ ଭକ୍ତିହୀନ ଶତ ପୁତ୍ର ଥାଇ
କି'ବା ଲଭ ପିତା ମାତାର ।
ରାମ ଭକ୍ତ ଏକ ପୁତ୍ର ହୋଇଥିଲେ
କରଇ ସେ କୁଳ ଉଦ୍ଧାର ।
ହେ ପ୍ରଭୁ ! ତୁମ୍ଭେ ଯେ ପତିତପାବନ;
ଅତି ପତିତ ଦୀନ ପୀତାମ୍ବରକୁ ଶ୍ରୀପଦ୍ମ-ପାଦେ ଦିଅ ସ୍ଥାନ ।୧୫

(୫ମ ଛାନ୍ଦ ରାଗ-ବସନ୍ତ ବରାଡ଼ୀ)

× × ×

ଏକେତ ସୁନ୍ଦର ପ୍ରମୋଦ ବନ
ତୁଲ୍ୟ ନ ହେବ ନନ୍ଦନ-କାନନ ।
ଫଳ ପୁଷ୍ପେ ସଦା ହୋଇ ଶୋଭିତ
ଦର୍ଶନେ ହରଇ ଦର୍ଶକ ଚିତ ଯେ;
ଅବିନେ ବହେ ବସନ୍ତ ଯେ;
ହଳଦୀ ବସନ୍ତ ପିକ ଶାରି ଶୁଆ ସଦା କରୁଥାନ୍ତି ନୃତ୍ୟଯେ ।୧

+ + +

ଭଗ୍ୟଶାଳୀ-ବୃକ୍ଷ ନୁହେଁ କେବେହେଁ
କିବା ଲତା ଭଗ୍ୟ ଶାଳିନୀ ନୁହେଁ
ଭଗ୍ୟଶାଳୀ ଅଟେ ସେହି ପଥିକ
ଯେହୁ ଆଶ୍ରୟ ନେଇଣ ଦୁହିଁଙ୍କ ଯେ
ଛାୟା ଫୁଲ ଫଳ ଭୋଗେ ଯେ
କହୁଁ କହୁଁ ତାଙ୍କ କଣ୍ଠ ଅବରୁଦ୍ଧ ନେତ୍ରୁଁ ଅଶ୍ରୁଜଳ ବହେଯେ
୧୬।

(୭ମ ଛାନ୍ଦ ରାଗ—ରସକୁଲ୍ୟା)

× × ×

କ୍ରମେ ଶୀତ ଅନ୍ତେ ଆସିଲ, ମଧୁମୟ ବସନ୍ତ ।
ଶୀତ ବେଗ ଦେଖ କମିଲ, ସୁଖୀ ହେଲ ଜଗତ ।୧।
ଏକାଳେ ଦେକ୍ଷିଣୁ ବହିଲ, ଧୀର ମଳୟାନିଳ ।
ପ୍ରଫୁଲ୍ଲିତ ହୋଇ ଉଠିଲେ, ବିଶ୍ୱ ଜୀବ ସକଳ ।୨।
ପାଦପେ ଅତ୍ୟନ୍ତ ଶୋଭିତ ନବ ପଲ୍ଲବ ଧରି
ରକ୍ଷ ଜୀବ ଜନ୍ତୁ ଲଭିଲେ, ସ୍ନିଗ୍ଧ ରୂପ ମାଧୁରୀ ।୩।

(୯ମ ଛାନ୍ଦ ରାଗ—ରାମକେରୀ)

× × ×

ସୀତାଙ୍କ ପ୍ରିୟ ବଚନ ଶୁଣି କୁମାର ଲକ୍ଷ୍ମଣ
ଶ୍ରୀମୁଖେ ହର୍ଷର ରେଖା ଉଠିଲା ଫୁଟି ।

ଝରି ଜଳରେ ତକ୍ଷଣ ପଦାର ବିନ୍ଦ ଅର୍ଚ୍ଚନ
ସାରି ଶ୍ରୀ ପଦ୍ମ ପାଦରେ ସାଷ୍ଟାଙ୍ଗେ ଲୋଟି ।

ବିନୟରେ କରି ପ୍ରାର୍ଥନା;
ନିଷ୍କପଟ ପ୍ରେମ ଭକ୍ତି କଲେ ଯାଚନା ।୮।

ସର୍ବ ଦେବ ଦେବୀ ବନ୍ଦ୍ୟ ସୀତା ରାମ ପଦ୍ମପାଦ
ମୋ ହୃଦରେ ସଦା ବାସ କରୁ ନିଷ୍ଠେ ।

ମୋ ମାନସ ହୋଇ ଭୃଙ୍ଗ ଶ୍ରୀପଦବ୍ଜ ମକରନ୍ଦ
କରୁଥାଉ ପାନ ପ୍ରଭୁ ଦିବା ନିଶିରେ ।

ମୁହିଁ ତବ ଭୃତ୍ୟାନୁ ଭୃତ୍ୟ;
ହୋଇ ଏ ଜୀବନେ ଭବେ ହୁଏ କୃତାର୍ଥ ।୯।

× × ×

କହେ ଦୀନ ପୀତାମ୍ବର ବଡ଼ ସୌଭଗ୍ୟ ମୋହର
ମଧୁର ମଧୁର ଏହୁ ରାମ ଚରିତ ।

ଗାଇ ଶେଷ କଲି ଆଜି ଉକତି ସାଗରେ ମଜ୍ଜି
ଏହା ଲେଖିବାକୁ ଥିଲା ପ୍ରଭୁ ଇଙ୍ଗିତ ।

ଜୟ ଜୟ ଜଗଜ୍ଜୀବନ;
ଜୟ ମା ଜାନକୀ ଜୟ ରଘୁନନ୍ଦନ ।୧୧।

ଓଁ ତତ୍‌ସତ୍ (ଦଶମ ଛାନ୍ଦ ରାଗ-ଶ୍ରେଣି)

ଭୀମ ସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମ
ଯଦି ଶୁଦ୍ଧ ମଶୁଦ୍ଧ ବା ମମଦୋଷ ନ ବିଦ୍ୟତେ ।

—o—

ଓଁ

# ପାର୍ବତୀ ବିବାହ

## ଶ୍ରୀ ପୀତାମ୍ବର ପଣ୍ଡାଙ୍କ କର୍ତ୍ତୃକ ପଦ୍ୟାନୁବାଦିତ

କବି ଶ୍ରୀ ପୀତାମ୍ବର ପଣ୍ଡା ସଂସ୍କୃତର ବୃହତ୍ ଶିବ ପୁରାଣରୁ ପାର୍ବତୀ ଖଣ୍ଡ ସଂକ୍ଷିପ୍ତ ଚରିତକୁ ଉତ୍କଳୀୟ ଭାଷାରେ ପଦ୍ୟାନୁବାଦ କରିଅଛନ୍ତି । ଓଡ଼ିଆ ପୁରାଣ ରଚୟିତାମାନଙ୍କ ପଦାଙ୍କ ଅନୁସରଣ କରି କବି ପାର୍ବତୀ ବିବାହ କାବ୍ୟ ଚଉଦ ଅକ୍ଷରୀ ବୃତ୍ତରେ ରଚନା କରି, ଉତ୍କଳ ଭାରତୀ ଭଣ୍ଡାରକୁ ସମୃଦ୍ଧ କରି ଅଛନ୍ତି ।

ପାର୍ବତୀ ବିବାହ ପାଣ୍ଡୁଲିପିର ସମୁଦାୟ ପୃଷ୍ଠା ସଂଖ୍ୟା ୩୧୭ ପୃଷ୍ଠା । ସୂଚୀ ପତ୍ରରୁ "ପାର୍ବତୀ ବିବାହ" କାବ୍ୟର ସୋପାନ ଗୁଡ଼ିକର ନାମାନୁକରଣରୁ କାବ୍ୟିକ ଗଠନ ଶୈଳୀ ଅନୁମେୟ କରାଯାଇପାରେ ।

ପ୍ରଥମରେ ମାତୃସ୍ତବ । ଦ୍ୱିତୀୟରେ ବ୍ରହ୍ମାସ୍ତବ । ତୃତୀୟରେଗ୍ରନ୍ଥାରମ୍ଭ ଗ୍ରନ୍ଥାରମ୍ଭରୁ କ୍ରମାନ୍ୱୟରେ ଅଭିନାତ୍ମା ହରିହର । ହିମବାନଙ୍କ ପରିଚୟ ଓ ମେନାଙ୍କ ସହିତ ବିବାହ ତଥା ମେନକା ଆଦି ତିନି ଭଉଣୀଙ୍କ ଶାପ ପ୍ରସଙ୍ଗ । ଦେବଗଣଙ୍କର ହିମାଳୟପୁରକୁ ଗମନ, ତାଙ୍କୁ ଉମାରାଧନର ବିଧି ବତାଇ ଭଗବତୀଙ୍କ ସ୍ତୁତି ଉଦ୍ଦେଶ୍ୟରେ ଏକ ପବିତ୍ର ସ୍ଥାନକୁ ଯିବା । ଦେବୀଙ୍କ ପ୍ରତି ଦେବ ସ୍ତୁତି । ଦେବୀଙ୍କର ଆବିର୍ଭାବ ଏବଂ ଅବତାର ନେବା ବିଷୟରେ ସ୍ୱୀକୃତି ପ୍ରଦାନ କରି ଅନ୍ତର୍ଦ୍ଧାନ ହେବା । ମେନା ଓ ହିମବାନଙ୍କର ତପସ୍ୟା ତଥା ଦେବୀଙ୍କର ପ୍ରସନ୍ନତା । ମେନାଙ୍କ ସ୍ତୁତି ଓ ଅଭିଷ୍ଟ ବର ପ୍ରାପ୍ତ । ଦେବୀଙ୍କର ମେନାଙ୍କ ଗର୍ଭକୁ ଆଗମନ, ଗର୍ଭସ୍ଥା ଦେବୀଙ୍କୁ ଦେବତାଙ୍କ ସ୍ତବ, ଦେବୀଙ୍କର ଆବିର୍ଭାବ ଓ ମେନାଙ୍କ ସହିତ କଥୋପକଥନ । ପାର୍ବତୀଙ୍କ ନାମ କରଣ, ବିଦ୍ୟାଧ୍ୟୟନ, ନାରଦଙ୍କ ଭବିଷ୍ୟତ କଥନ କଥା ଶିବଙ୍କୁ ବିଭାଦେବାପାଇଁ ଉପଦେଶ । ମେନା ହିମବାନଙ୍କ କଥୋପକଥନ, ପାର୍ବତୀ ହିମବାନଙ୍କ ସ୍ୱପ୍ନ ଦର୍ଶନ ତଥା ଶିବଙ୍କ ଠାରୁ ମଙ୍ଗଳ ଗ୍ରହର ଉତ୍ପତ୍ତି । ଶିବଙ୍କର ଗଙ୍ଗାବତରଣ, ତୀର୍ଥକୁ ତପସ୍ୟା ପାଇଁ ଆଗମନ ହିମାଳୟ ଦ୍ୱାରା ସ୍ୱାଗତ ଏବଂ ତପସ୍ୟାର

ବାଧାବିଘ୍ନ ଦୂରୀକରଣର ବ୍ୟବସ୍ଥା । ହିମବାନଙ୍କ ପାର୍ବତୀଙ୍କୁ ସେବାରେ ରଖିବା ପାଇଁ ଆଜ୍ଞା ମାଗିବା ଏବଂ ଶିବଙ୍କର ଅସ୍ୱୀକୃତି । ପାର୍ବତୀ ଏବଂ ଶିବଙ୍କ ଦାର୍ଶନିକ ସମ୍ବାଦ ଏବଂ ଶିବଙ୍କ ନିଜ ସେବାପାଇଁ ପାର୍ବତୀଙ୍କୁ ଅନୁମତି ପ୍ରଦାନ । ତାରକାସୁର-ସନ୍ତପ୍ତ ଦେବତାଙ୍କର ବ୍ରହ୍ମାଙ୍କୁ ନିଜ କଷ୍ଟ ଜଣାଇବା ଏବଂ ବ୍ରହ୍ମାଙ୍କର ଶିବ ପାର୍ବତୀ ବିବାହ ପାଇଁ ଉଦ୍ୟୋଗୀ ହେବାକୁ ଉପଦେଶ । ଇନ୍ଦ୍ର ଓ କନ୍ଦର୍ପର କଥୋପକଥନ ତଥା କାମର ଶିବ ମୋହନ ପାଇଁ ପ୍ରସ୍ଥାନ । ରୁଦ୍ରଙ୍କର ନେତ୍ରାଗ୍ନିରେ କାମଦେବର ଭସ୍ମ, ରତି ବିଳାପ, ଦେବଙ୍କର ପ୍ରାର୍ଥନାରେ ରତିଙ୍କୁ ବର ଦେଇ ଶିବଙ୍କର ଅନ୍ତର୍ଦ୍ଧାନ । ବ୍ରହ୍ମାଙ୍କର ଶିବକ୍ରୋଧାଗ୍ନିକୁ ବଡ଼ବାନଳ ନାମଦେଇ ସମୁଦ୍ରରେ ସ୍ଥାପନ; ଶିବ ବିରହରେ ପାର୍ବତୀଙ୍କ ଦୁଃଖ ଏବଂ ତପସ୍ୟା ପାଇଁ ନାରଦଙ୍କ ଉପଦେଶ ପାର୍ବତୀଙ୍କ ତପସ୍ୟା । ପାର୍ବତୀଙ୍କ ଉଗ୍ରତପସ୍ୟା, ତହିଁରେ ତ୍ରିପୁର ସନ୍ତପ୍ତ ହେତୁ ବ୍ରହ୍ମା ବିଷ୍ଣୁ ସହ ସର୍ବଦେବଙ୍କର ଶିବଙ୍କ ପାଖକୁ ଗମନ । ଦେବଗଣଙ୍କର ପାର୍ବତୀଙ୍କ ସହ ବିବାହ କରିବା ପାଇଁ ପ୍ରାର୍ଥନା, ଶିବଙ୍କର ଅସ୍ୱୀକାର ତଥା ପୁନଃ ପ୍ରାର୍ଥନାରେ ସ୍ୱୀକୃତି ପ୍ରଦାନ । ଶିବାଜ୍ଞାରେ ସପ୍ତର୍ଷିଙ୍କର ପାର୍ବତୀଙ୍କନିକଟକୁ ପ୍ରସ୍ଥାନ ଏବଂ ଶିବଙ୍କ ପ୍ରତି ଅନୁରାଗର ପରୀକ୍ଷା । ଶିବ ଜଟିଳ ତପସ୍ୱୀ ରୂପରେ ପାର୍ବତୀଙ୍କ ଆଶ୍ରମକୁ ଯିବା ପାର୍ବତୀଙ୍କୁ ତପସ୍ୟାର କାରଣ ପଗ୍ଚରିବା-ବିଜୟାର ଉତ୍ତର ପ୍ରଦାନ—ତଥା ଜଟିଳ ତପସ୍ୱୀଙ୍କର ଶିବ ନିନ୍ଦା । ପାର୍ବତୀଙ୍କର ଶିବ ମହତ୍ତ୍ୱର ପ୍ରତିପାଦନ, ଶିବ ନିନ୍ଦା ଶୁଣି ଜଟିଳ ବ୍ରାହ୍ମଣଙ୍କ ପ୍ରତି ରଗାନ୍ୱିତ ହେବା ଓ ଶିବଙ୍କ ପ୍ରତ୍ୟକ୍ଷ ଦର୍ଶନ । ଶିବ ପାର୍ବତୀଙ୍କ କଥୋପକଥନ । ପିତୃ ଗୃହରେ ପାର୍ବତୀଙ୍କର ସତ୍କାର ଏବଂ ମହାଦେବଙ୍କର ନଟ ଲୀଳାର ଚମତ୍କାର । ଦେବ ପ୍ରାର୍ଥନାନୁସାରେ ଶିବଙ୍କ ବୈଷ୍ଣବ ରୂପରେ ହିମାଳୟ ଗୃହକୁ ଯାଇ ଶିବଙ୍କର ନିନ୍ଦା କରିବା । ମେନାର କୋପ, ଭବନରେ ପ୍ରବେଶ, ଅରୁନ୍ଧତି ଓ ସପ୍ତର୍ଷିଙ୍କ ପାର୍ବତୀଙ୍କୁ ଶିବଙ୍କୁ ଦେବାପାଇଁ ଉପଦେଶ । ସପ୍ତର୍ଷିଙ୍କ ବହୁ ଉପଦେଶ ପରେ ମେନା ଓ ହିମବାନଙ୍କ ପାର୍ବତୀଙ୍କୁ ଶିବଙ୍କୁ ବିବାହ ଦେବାପାଇଁ ଅନୁମତି ପ୍ରଦାନ । ହିମବାନଙ୍କର ଶିବଙ୍କ ପାଖକୁ ଲଗ୍ନ ପତ୍ରିକା ପଠାଇବା, ବିବାହ ପାଇଁ ପ୍ରସ୍ତୁତି ଓ ନଗରର ସାଜସଜ୍ଜା । ଶିବଙ୍କର ନାରଦଙ୍କ ଦ୍ୱାରା ଦେବଗଣଙ୍କୁ ନିମନ୍ତ୍ରଣ; ସମସ୍ତଙ୍କ ଆଗମନ, ମଙ୍ଗଳାଚରଣ କରି ବରଯାତ୍ରୀଙ୍କର କୈଳାସପୁରରୁ ପ୍ରସ୍ଥାନ । ବର ସହିତ ବରଯାତ୍ରୀଙ୍କର

ହିମାଳୟ ଯାତ୍ରା । ହିମବାନଙ୍କ ଦ୍ୱାରା ବରଯାତ୍ରୀଙ୍କର ସ୍ୱାଗତ ତଥା ଅଭିନନ୍ଦନ ଏବଂ ନାରଦଙ୍କ ଦ୍ୱାରା ମେନାଙ୍କୁ ବରଯାତ୍ରୀଙ୍କର ପରିଚୟ ପ୍ରଦାନ । ମେନାର ବିଳାପ ଓ ଶିବଙ୍କୁ କନ୍ୟା ନ ଦେବାକୁ ଯିଦି ଓ ସମସ୍ତଙ୍କ ମେନାଙ୍କୁ ବୁଝାଇବା । ଶ୍ରୀ ଶିବଙ୍କର ପରମ ସୁନ୍ଦର ଦିବ୍ୟ ରୂପ ଧାରଣ । ମେନା ଦ୍ୱାରା ଶିବଙ୍କର ବନ୍ଦାପନା, ପୁରନାରୀଙ୍କର ଶିବ ରୂପର ପ୍ରଶଂସା, ପାର୍ବତୀଙ୍କ ଅମ୍ବିକା ପୂଜା, ତାଙ୍କ ସୌନ୍ଦର୍ଯ୍ୟରେ ସର୍ବଦେବଙ୍କର ପ୍ରସନ୍ନତା । ବିବାହ ପାଇଁ ବର ଓ ବର-ଯାତ୍ରୀଙ୍କର ହିମାଳୟ ପୁରକୁ ଆଗମନ ତଥା ବରବଧୂ ଦ୍ୱାରା ପରସ୍ପରର ପୂଜନ । ଶିବ ପାର୍ବତୀଙ୍କର ବିବାହାରମ୍ଭ, ହିମାଳୟଙ୍କ ଦ୍ୱାରା ଶିବଙ୍କ ଗୋତ୍ର ବିଷୟକ ପ୍ରଶ୍ନ ଏବଂ ନାରଦଙ୍କ ଉତ୍ତର, କନ୍ୟାଦାନ ପରେ ଶିବ ଶିବାଙ୍କ ଅଭିଷେକ । ବିବାହର ଉପସଂହାର, ଦକ୍ଷିଣା ବିତରଣ, ସ୍ତ୍ରୀଙ୍କ ଦ୍ୱାରା ଲୋକାଚାର ପାଳନ, କାମର ଜୀବନ ପ୍ରାପ୍ତ, ବରବଧୂ ପରସ୍ପରକୁ ମିଷ୍ଟାନ ଭୋଜନକରାଇବା ପରେ ଶିବଙ୍କର ବରଯାତ୍ରୀ ଆବାସକୁ ପ୍ରତ୍ୟାଗମନ । ରାତ୍ରିରେ ସୁସଜ୍ଜିତ ସୁନ୍ଦର ବାସଗୃହରେ ଶୟନ କରି ପ୍ରାତଃ କାଳରେ ଶିବଙ୍କ ପ୍ରତ୍ୟାଗମନ । ଚତୁର୍ଥୀ କର୍ମ, ବରଯାତ୍ରୀଙ୍କର ବିଦାୟ, ମେନାର କନ୍ୟା ସମର୍ପଣ, ବରଯାତ୍ରୀ ହିମନଗର ତ୍ୟାଗକରି ବାହାର ଉପରବନରେ ପାର୍ବତୀଙ୍କ ଅପେକ୍ଷାରେ ରହିବା । ମେନାଙ୍କ ଇଙ୍ଗିତରେ ଏକ ବ୍ରାହ୍ମଣ ପତ୍ନୀଙ୍କ ପତିବ୍ରତା ଧର୍ମର ଉପଦେଶ । ବରଯାତ୍ରୀଙ୍କର କୈଳାଶାଭିମୁଖରେ ପ୍ରସ୍ଥାନ ଓ ଦେବଗଣଙ୍କର ବିଦାୟ । ପାର୍ବତୀ ଖଣ୍ଡ ଶ୍ରବଣର ମହାତ୍ମ୍ୟ ଇତ୍ୟାଦି ନାମାନୁକରଣ ମାଧ୍ୟମରେ କବି ଶ୍ରୀ ପିତାମ୍ବର ପଣ୍ଡା ତାଙ୍କର ରମଣୀୟ ରସୋତିର୍ଣ୍ଣ "ପାର୍ବତୀ ବିବାହ" କାବ୍ୟ ରଚନା କରି ଅଛନ୍ତି ।

ଶ୍ରୀ ପୀତାମ୍ବର ପଣ୍ଡାଙ୍କ କର୍ତ୍ତୃକ ପଦ୍ୟାନୁବାଦିତ । ପାର୍ବତୀ ବିବାହ କାବ୍ୟରୁ କେତେକ ପଙ୍କ୍ତି ନିମ୍ନରେ ଉଦ୍ଧାର କରାଯାଇଅଛି ।

## ୧—ମାତୃସ୍ତବ

ଜୟ ମାତ ଭଗବତୀ ଦୁର୍ଗା ହୈମବତୀ
ଜୟ ମା ଜଗଜ୍ଜନନୀ ଜୟ ଆଦିଶକ୍ତି ।୧।
ତୁମ୍ଭେ ଲକ୍ଷ୍ମୀ ସରସ୍ୱତୀ ଗାୟତ୍ରୀ ସାବିତ୍ରୀ
ସର୍ବ ହିତେ ତୁମ୍ଭେ ସର୍ବଂସହା ବସୁମତୀ ।୨।

ପଗ ଅପଗ ପ୍ରକୃତି ଚରାଚର ବ୍ୟାପ୍ତୀ
ସୃଷ୍ଟି ସ୍ଥିତ୍ୟନ୍ତ କାରଣୀ ଅବ୍ୟକ୍ତା ଅନନ୍ତା ।୩।
ତୁମ୍ଭେ ସ୍ୱହା ସ୍ୱଧା ତୁମ୍ଭେ ବିଦ୍ୟା ବୁଦ୍ଧି ଶକ୍ତି
ଇଚ୍ଛା କ୍ରିୟା-ଦୟା-ସ୍ମୃତି ଧୃତି-କୀର୍ତ୍ତି ।୪।
କ୍ଷୁତ୍ ପିପାସା ଆଦି ରୂପେ ପ୍ରାଣୀଙ୍କ ଦେହରେ
ନିତ୍ୟ ବିରାଜିତ ମାତଃ ବିଶ୍ୱଚରାଚରରେ ।୫।
ନିର୍ଗୁଣ ବ୍ରହ୍ମ ତୁମ୍ଭର ସାନିଧ୍ୟ ବଳରେ
ସର୍ବଗୁଣ ଯୁକ୍ତ ହୋଇ ଦିବ୍ୟ ଦେହଧରେ ।୬।
ତୁମ୍ଭେ ମାତଃ ଜ୍ଞାନବଳ ତେଜ ଅଇଶ୍ୱର୍ଯ୍ୟ
ଅନବଦ୍ୟ ଗୁଣ ଧର୍ମ୍ମ ସୌନ୍ଦର୍ଯ୍ୟ ଔଦାର୍ଯ୍ୟ ।୭।
ବସ୍ତୁତଃ ଚିଦ୍ରୂପା ଅନ୍ତରଙ୍ଗ ବ୍ରହ୍ମଶକ୍ତି
ଶିବ ଶିବ ଅଟ ତୁମ୍ଭେ ଏକଇ ମୂରତି ।୮।
ପ୍ରାରବ୍ଧେ ପରିଗ୍ଳାନିତ ଜଙ୍ଗମ ସ୍ଥାବର
ଧର୍ମ୍ମା ଧର୍ମ୍ମ ସୁଖ ଦୁଃଖେ ନିୟୋଜିତ କର ।।

× × ×

ବିଶ୍ୱହିତେ ତୁ ପରମ ପିତାଙ୍କ ସଙ୍ଗରେ
ଅଲକ୍ଷିତେ ପରିବ୍ୟାପ୍ତ ଥାଉ ଚରାଚରେ ।।
ତୁହି ସବୁ ଦେଖୁ ତୋତେ କେହି ନ ଦେଖଇ
ତୁ ଅଟୁ ସର୍ବଜ୍ଞା ତୋତେ ନଜାଣନ୍ତି କେହି ।।
ତଥାପି ମୁଁ ମାଆ ମାଆ ଡ଼ାକୁ ଅଛି ଯେତେ
କିପାଁ ନ ଶୁଣୁଛୁ ବାରେ କହନି ଗୋ ମୋତେ ।।

× × ×

ଅନ୍ତର୍ଯ୍ୟାମିନୀ ଜନନୀ ନ ଜାଣୁକି କଥା
ଦୁଃଖ ତାପ ଅନୁତାପେ ନ ମାର ସର୍ବଥା ।।
ସଦା ମୁଁ ଅଟଇ ମାତ ତବ ଅନୁଗତ
ଶୀଘ୍ର ଭେଟାଅ ଗୋ ମୋତେ ନେଇ ବିଶ୍ୱନାଥ ।।
ତବ ଶ୍ରୀଚରଣେ ମୁହିଁ ସର୍ବଦା ଶରଣ
ଅଧମ ପୀତାମ୍ବରକୁ (ତୋ) କୃପାକର ଦାନ ।।

## ବ୍ରହ୍ମ ସ୍ତବ

ନମସ୍ତେ ସଚ୍ଚିଦାନନ୍ଦ ବ୍ରହ୍ମପରମେଶ୍ୱର
ସର୍ବଦା ସର୍ବଥା ପୂର୍ଣ୍ଣ ଜୟ ସର୍ବେଶ୍ୱର ॥
ନମୋ ସର୍ବଗତ ସର୍ବରୂପ
ଦେଶ-କାଳ-ମୟ କାଳାତୀତ ବିଶ୍ୱବ୍ୟାପ୍ତ ॥
ନମୋ ନମସ୍ତେ ନିର୍ଗୁଣ ନିତ୍ୟ ନିରାକାର
ନମୋ ନମୋ ସଗୁଣ ସାକାର ବିଶ୍ୱେଶ୍ୱର ॥
ସ୍ୱରୂପତଃ ତୁମ୍ଭେ ଏକ ଅଦ୍ୱୈତ ନିଶ୍ଚିତ
ଅନାଦି କାଳୁ ବିବିଧ ରୂପରେ ସମ୍ଭୂତ ॥
ସର୍ବଶକ୍ତି ଯୁକ୍ତ ଲୀଳାମୟ ଲୀଳାଧର
ତେଣୁ ବିବିଧ ରୂପରେ ପ୍ରକାଶ ତୋହର

× × ×

ସର୍ବ ଦେବୋ-ଦ୍ଭବ ସର୍ବ ଗୁଣର ଆଶ୍ରୟ
ଠୁଳ ଶୂନ୍ୟ ପରଂବ୍ରହ୍ମ ସର୍ବ ଦେବମୟ ॥
ତୁମ୍ଭ ଅଙ୍ଗ କାନ୍ତି କୋଟି ସୂର୍ଯ୍ୟର ସମାନ
ଅଜ୍ଞାନାନ୍ଧକାର ପରେ ତୁମ୍ଭେ ବିଦ୍ୟମାନ ॥
ତୁମ୍ଭେ ପରମାତ୍ମା ତୁମ୍ଭ ପରେ ସୂକ୍ଷ୍ମ ସ୍ଥୂଳ
ଆଉ କିଛି ନାହିଁ ଭବେ ତୁମ୍ଭେ ଆଦିମୂଳ ॥
ସମସ୍ତ ପ୍ରାଣୀଙ୍କ ହୃଦ ରୂପକ ଗୁହାରେ
ନିବାସ କରିଛ ପ୍ରଭୁ ବିଶ୍ୱ ଚରାଚରେ ॥

× × ×

ନେତ୍ର ନାହିଁ ଦେଖୁଅଛ ସକଳ ସଂସାର
କର୍ଣ୍ଣ ନାହିଁ ଶୁଣୁଅଛ ବିଶ୍ୱ ସମାଚାର ॥
ଅବୟବ ଶୂନ୍ୟ ତୁମ୍ଭେ ହେଲେ ହେଁ ସତତ
ତୁମ୍ଭରତ ଅବୟବ ଏ ବିଶ୍ୱ ଜଗତ ॥

× × ×

ଶରଣ ପଶିଲି ପ୍ରଭୁ ପତିତ ପାବନ
ପତିତେ ଉଦ୍ଧରି ଧର କୃପାକରି ଦାନ ॥

× × ×

ଜାଣେ ନାହିଁ ମନ୍ତ୍ର ଯନ୍ତ୍ର ପୂଜା ଆରାଧନା
ସମର୍ଥବା କାହିଁ ମୁହିଁ କରିବି ସାଧନା ॥
କାଳ କବଳିତ ପ୍ରାଣ ହୁଏ କଲେବର
ଅହେତୁକି କୃପାଳୁ ତୁ ମୋ ଜୀବ ସମ୍ବଳ ॥
ଦୟାକର ଦୟାନିଧି ଦୟାଳୁ ଠାକୁର
ତବ ଚରଣେ ଶରଣ ଦୀନ ପୀତାମ୍ବର ॥

## ଗ୍ରନ୍ଥାରମ୍ଭ

ଜୟ ଜୟ ଗଣେଶ୍ୱର ବିଘ୍ନବିନାଶକ
ଜୟ ଜୟ ଗଣେଶ୍ୱର ସୁବୁଦ୍ଧି ଦାୟକ ॥
ଜୟ ଜୟ ଜ୍ଞାନ ମୂର୍ତ୍ତି ଦେବୀ ସରସ୍ୱତୀ
ଜୟ ଜୟ କୃପାମୟୀ ମାତଃ ଭଗବତୀ ॥
ଜୟ ଜୟ ହରିହର ବିଶ୍ୱ-ଶକ୍ତିଧର
ତୁମ୍ଭର ମହିମା ପ୍ରଭୁ ଅପାର୍କ ଅପାର ॥
ତୁମ୍ଭ କୃପାବଳେ ପଙ୍ଗୁ ଗିରିନ୍ଦ୍ର ଲଙ୍ଘଇ
କିଞ୍ଚିତ ଦୟାରେ ମୂକ ବାଗ୍ମୀ ହୁଅଇ ॥
ସେହି କୃପା କଣାର ମୁଁ ହୋଇଣ ଆଶ୍ରିତ
ଲେଖିବି ଶିବ ପୁରାଣୁ ପାର୍ବତୀ ଚରିତ ॥
ସଂସ୍କୃତେ ଶିବ ପୁରାଣ ଅତ୍ୟନ୍ତ ବୃହତ
ହୋଇଅଛି ଏହା ସପ୍ତ ଖଣ୍ଡରେ ବିଭକ୍ତ ॥
ପ୍ରଥମ ସଂହିତା ନାମ ଅଟେ ବିଦ୍ୟେଶ୍ୱର
ଦ୍ୱିତୀୟେ ରୁଦ୍ର ତୃତୀୟ ନାମ ଶତରୁଦ୍ର ॥
ଚତୁର୍ଥରେ କୋଟି ରୁଦ୍ର ସଂହିତା ବୋଲଏ
ପଞ୍ଚମେ ଉମା ଷଷ୍ଠରେ କଇଳାସ ହୁଏ ॥
ସପ୍ତମରେ ବାୟବୀୟ ସଂହିତା ଅଟଇ
ରୁଦ୍ର ବାୟୁ ସଂହିତା ଯେ ପୂର୍ଣ୍ଣ ଭାଗ ହୋଇ ॥
ରୁଦ୍ର ସଂହିତାଟି ସୃଷ୍ଟି ସତୀ ଯେ ପାର୍ବତୀ
କୁମାର ଯୁଦ୍ଧ ଖଣ୍ଡରେ ହୋଇଛି ବିବୃତି ॥

ବାୟବୀୟ ସହିତ୍ୟଟି ପୁଣି ଉଗ ହୋଇ
ପୂର୍ବ ଉତ୍ତର ଖଣ୍ଡରେ ବିଭକ୍ତ ଅଟଇ ॥
ଏଥିରୁ ପାର୍ବତୀ ଖଣ୍ଡ ସଂକ୍ଷିପ୍ତ ଚରିତ
ବର୍ଣ୍ଣନା କରିବି ସୁଜ୍ଞେ ଶୁଣ ଦେଇଚିତ ॥

× × ×

ଜନ ହିତେ ଏହା ମୁହିଁ କରିବି ଲେଖନ
ଦୟାକରି ଦୀନବନ୍ଧୁ ଶକ୍ତିକର ଦାନ
ଅଜ୍ଞାନାନ୍ଧକାର ନାଶି ଦିଅ ଦିବ୍ୟଜ୍ଞାନ
ସଦଭକ୍ତେ ତୁମ୍ଭ ଚରିତ କରିବି ବର୍ଣ୍ଣନ
ସର୍ବେଶ୍ୱର ତୁମ୍ଭେ ମୋର ଜୀବନ ଆଧାର
ତୁମ୍ଭ ଶ୍ରୀପଦ ଆଶ୍ରିତ ଦୀନ ପୀତାମ୍ବର ॥

## ଅଭିନ୍ନାତ୍ମା ହରିହର

ହରିହର ଏକ ଆତ୍ମା ଜଗତେ ପ୍ରସିଦ୍ଧ
ଲୀଳା ଘେନି ରୂପର ଯେ ହୋଇଛି ବିଭେଦ ॥

× × ×

ଶିବ ଧ୍ୟେୟ ବିଷ୍ଣୁ, ବିଷ୍ଣୁ ଧ୍ୟେୟ ତ୍ରିଲୋଚନ
ତିଳାର୍ଦ୍ଧ ମାତ୍ର ଅନ୍ତର ନାହିଁ କଦାଚନ ॥
ଶିବ ଭକ୍ତ ହୋଇ ଯେହୁ ବିଷ୍ଣୁଙ୍କୁ ନିନ୍ଦଇ
ତା ସମସ୍ତ ଧର୍ମ୍ମ କର୍ମ୍ମ ଯାଏ ଭସ୍ମ ହୋଇ ॥

× × ×

ଆହେ ହରିହର ତୁମ୍ଭ ଯୁଗଳ ଚରଣ
ଆଶ୍ରିତ ପୀତାମ୍ବରକୁ ଦିଅ ଦିବ୍ୟଜ୍ଞାନ ॥

## ହିମବାନଙ୍କ ପରିଚୟ ଓ ମେନାଙ୍କ ସହିତ ବିବାହ

ଜ୍ୟୋତିର୍ମୟ ବ୍ରହ୍ମପୁରେ ମହର୍ଷି ସଙ୍ଘରେ
ବିରାଜିତ ପରମେଷ୍ଠୀ ପ୍ରଫୁଲ୍ଲ ଅନ୍ତରେ ॥
ସମୟ ସୁଯୋଗ ଦେଖି ଦେବର୍ଷି ନାରଦ
ସବିନୟେ ପଚାରିଲେ ପାର୍ବତୀ ସମ୍ବାଦ ॥

× × ×

ଉତ୍ତର ଦିଗେ ପର୍ବତ ଗନ୍ଧେ ହିମବାନ
ଅତ୍ୟନ୍ତ ସମୃଦ୍ଧିଶାଳୀ ମହାତେଜୀୟାନ ॥
ତାଙ୍କର ଦୁଇଟି ରୂପ ପ୍ରସିଦ୍ଧ ଅଟଇ
ଏକ ସ୍ଥାବର ଅନ୍ୟଟି ଜଙ୍ଗମ ବୋଲଇ ॥

× × ×

ସ୍ୱୀକୃତି ଦେବା ସଙ୍ଗରେ ବିଧି ବିଧାନରେ
ମେନା ବିଭକଲେ ହିମାଳୟଙ୍କ ସଙ୍ଗରେ ॥
ପରମ ମଙ୍ଗଳମୟ ବିବାହ ଉତ୍ସବ
ସମ୍ପାଦିତ ହେଲା ତହିଁ ଥିଲେ ସର୍ବ ଦେବ ॥
ହିମାଳୟର ଏ ଶୁଭ ପ୍ରସଙ୍ଗ ସୁଖଦ
ଆଦ୍ୟନ୍ତ କହିଲି ତୃପ୍ତ ହେଲ କି ନାରଦ ॥

× × ×

ସନକାଦି ସିଦ୍ଧଗଣେ କରି ନମସ୍କାର
ଏ ଆଖ୍ୟାନ ପୂର୍ଣ୍ଣକଲା ଦୀନ ପୀତାମ୍ବର ॥

କବି "ପାର୍ବତୀ ବିବାହ" କାବ୍ୟକୁ କାବ୍ୟ ଆଖ୍ୟା ନଦେଇ ଗ୍ରନ୍ଥ ଆଖ୍ୟା ଦେଇଅଛନ୍ତି । ସୂଚୀ ପତ୍ରରେ ଦିଆଯାଇଥିବା ବିଷୟଗୁଡ଼ିକୁ କ୍ରମାନୁଯାୟୀ ବର୍ଣ୍ଣନା କରି ସାରି, ଶିବ ପାର୍ବତୀଙ୍କୁ କୈଳାସପୁରକୁ ପ୍ରତ୍ୟାବର୍ତ୍ତନ କରାଇ କବି ଗାଇଅଛନ୍ତି :—

ତାପରେ ଶିବ ପାର୍ବତୀ ଆନନ୍ଦ ମନରେ
କୈଳାଶେ ରହି ଦାମ୍ପତ୍ୟ ଜୀବନ ସୁଖରେ ॥
ସାତିଶୟ ପ୍ରେମେ ଦୁହେଁ ହୋଇ ବଶୀଭୂତ
ଲୀଳା ବିହାରେ ଆନନ୍ଦେ ରହିଲେ ସତତ ॥
ଜଗତର ପିତା ମାତା ଜଗତ ଜୀବନ
ତାଙ୍କ ଦାମ୍ପତ୍ୟ ଲୀଳା କି ଲେଖିବ ନନ୍ଦନ !

× × ×

ଜୟ ଜୟ ସଦାଶିବ ଜୟ ମା ପାର୍ବତୀ
ସର୍ବ ସଙ୍କଟୁ ଉଦ୍ଧର ଦେଇଣ ସୁମତି ॥

ତବ ଆଶ୍ରିତ ସଦା ମୁଁ ଅଟଇ ହେ ନାଥ
ଶୀଘ୍ର ପୀତାମ୍ବରକୁ ହେ କରିବା କୃତାର୍ଥ ।।

—: ० :—

## ପାର୍ବ୍ବତୀ ଖଣ୍ଡ ଶ୍ରବଣର ମହାତ୍ମ୍ୟ

ହେ ନାରଦ ଏହିପରି ଶିବା ଶିବଙ୍କର
ପରମ ମଙ୍ଗଳମୟ ଶ୍ରୁତି-ରସ-ସାର ।।
ଯାହା ହୋଇଥିଲ ତାହା କଲି ମୁଁ ବର୍ଣ୍ଣନ
ଏ ସମ୍ବାଦ କରଇ ଯେ ପଠନ ଶ୍ରବଣ ।।

× × ×

ଶିବ ତ ଅଟନ୍ତି ସର୍ବ-ଦେବ ଦେବେଶ୍ୱର
ଜ୍ଞାନାନନ୍ଦ ଜ୍ଞାନ ବୀଜ ଜ୍ଞାନର ଆଧାର
ସର୍ବ ଯୋଗର ନିଦାନ ଅଟନ୍ତିଟି ସେହି
ତାଙ୍କ କୃପା ବିନା କେବେ ଯୋଗ ସିଦ୍ଧ ନୋହି
ତାଙ୍କ କୃପା ବିନା ଧର୍ମ୍ମ କର୍ମ୍ମ ଭକ୍ତି ଜ୍ଞାନ
ବିଜ୍ଞାନ ବୈରାଗ୍ୟ ପ୍ରାପ୍ତି ନୁହଇଟି ଜାଣ

× × ×

ଶିବଙ୍କୁ ଯେ ଭଜେ ବିଷ୍ଣୁ ଭଜିଲ ସମାନ
ବିଷ୍ଣୁଙ୍କ ଭଜିଲେ ଶିବ ହୁଅନ୍ତି ପ୍ରସନ୍ନ ।।

× × ×

ଜୟ ଜୟ ହରିହର ଭବାନୀ ଶଙ୍କର
ଜୟ ଜୟ ହରିହର ଉମା ମହେଶ୍ୱର ।।

× × ×

ହେ ପ୍ରଭୁ ମୁଁ ଅତି ଦୀନ-ହୀନ ଅକିଞ୍ଚନ
ସଦା ଅପରାଧି ମୋର ମନ ଅଟେ ଘୃଣ୍ୟ ।।
ବହୁ ଆଶ୍ରୟ କରିଛିଁ ଅଭୟ ପୟର
ତୁମ୍ଭେ ପର ଅଟ ପ୍ରଭୁ କରୁଣା ସାଗର ।।

କୃପାକର ଦୀନବନ୍ଧୁ ଦୁର୍ଗତି ନାଶନ
ଦୀନ ପୀତାମ୍ବର ସଦା ଶ୍ରୀପଦେ ଶରଣ ।।

ସଦା ଜୟେ ସମ୍ପୂର୍ଣ୍ଣଂ

ଗତ ତା ୧୪-୯-୧୯୯୧ ରିଖ ଦିନ କେନ୍ଦୁଝର କବି ଶ୍ରୀଯୁକ୍ତ ପୀତାମ୍ବର ପଣ୍ଡାଙ୍କୁ ତାଙ୍କର ପୁତ୍ର ବଧୂଙ୍କ କମ୍ପାନୀ ଗୃହରେ ସାକ୍ଷାତ କରିବାକୁ ଯାଇଥିଲି । ତା ୧୬-୯-୧୯୯୧ ସୋମବାର ରାତ୍ରି ସାଢ଼େ ଦଶ ଘଟିକାରେ କବି ପୀତାମ୍ବର ପଣ୍ଡାଙ୍କର ଦେହାନ୍ତ ହୋଇଯାଇଅଛି । ପୂର୍ବରୁ ବିଗତ ବର୍ଷ କବିଙ୍କର ସ୍ତ୍ରୀ ସେବତୀଙ୍କର ସ୍ୱର୍ଗବାସ ହୋଇଅଛି । ପରମେଶ୍ୱର କବି ଦମ୍ପତିଙ୍କୁ ଶାନ୍ତି ପ୍ରଦାନ କରନ୍ତୁ ।

—:O:—

## ନାଗରର ବଣମଲ୍ଲୀ କବି ଶ୍ରୀ ଅର୍ଜ୍ଜୁନ ରାଜ୍

## ଜୀବନୀ–

ମହାକାଳର ଆବର୍ତ୍ତନରେ ଉତ୍‌ଥାନ ପତନ ନିତ୍ୟ ନୂତନ ରୂପ ନିଏ । ସ୍ରଷ୍ଟାର ସୃଷ୍ଟି-ସ୍ଥିତି-ସଂହାର ସତ-ରଜ-ତମ ବିଭବ ଏଥିରେ ବିକଶିତ ହୁଏ । ଏହି ଚିରନ୍ତନ ରୀତିରେ ରାଜପୁର ନାଗରର ପ୍ରାଚୀନ ଐତିହ୍ୟ; ଅଧୁନା ସୁନ୍ଦରଗଡ଼ ନାମ ବହନ କରି ଅତୀତ ଗୌରବ ସୂର୍ଯ୍ୟକୁ ଆଧୁନିକତାର କଳା-ଘନରେ ଢାଙ୍କି ରଖିଅଛି । ଉକ୍ତ ଆବରଣକୁ ଭେଦକରି ଦାରୁବ୍ରହ୍ମର ଉପାସକ କବି ଶ୍ରୀ ଅର୍ଜ୍ଜୁନ ରାଜ୍ (ଭୂୟାଁ) ବଂଶରେ କଲେଇପୋଷ ଗ୍ରାମରେ ପିତା ବଟୋରାଜ୍ ମାତା ସୂର୍ଯ୍ୟକାନ୍ତିଙ୍କ କୋଳମଣ୍ଡନ କରି ଉଣେଇଶ ଶହ ଏଗାର ମସିହା ଫାଲ୍‌ଗୁନ ଶୁକ୍ଳପକ୍ଷ ଦଶମୀ ଗୁରୁବାର ଦିନ ଭୂମିଷ୍ଠ ହୁଅନ୍ତି ।

ପିତା, ପିତାମହ ଏବଂ ବୃଦ୍ଧ ପ୍ରପିତାମହଙ୍କ ଆଶୀର୍ବାଦରୁ କବି ଶ୍ରୀ ଅର୍ଜ୍ଜୁନ ରାଜ୍‌ଙ୍କ ଜୀବନ କୁସୁମ ବଣମଲ୍ଲୀ ସଦୃଶ ନାଗର ବନରେ ପ୍ରସ୍ଫୁଟିତ ହୋଇ ନାଗର ସହିତ ଉତ୍କଳକୁ ସୁବାସିତ କରୁଅଛି । ବଂଶାବଳୀର ସଂକ୍ଷିପ୍ତ ବିବରଣୀ ସହିତ କବିଙ୍କ ପରିଚୟ ନିମ୍ନରେ ଦିଆଯାଇଅଛି ।

# କବି ଶ୍ରୀ ଅର୍ଜୁନ ରାଜଙ୍କ ବଂଶାବଳୀର ତାଲିକା

✓ ତର୍କିଆ ରାଜ

✓ ଉଦ୍ଧବ ରାଜ ✓ ଜଳନ୍ଧର ରାଜ ✓ ଚକ୍ରଧର ରାଜ ✓ ବିଦ୍ୟାଧର ରାଜ

(ଉଦ୍ଧବ ରାଜ:) ✓ ଅଭିରାଜ ✓ ମନୋରଥ ରାଜ

(ଅଭିରାଜ:) ✓ଖଗେଶ୍ୱର ରାଜ — ଏକମାତ୍ର ଅପୁତ୍ରିକ–ଝିଅ ତାର୍କିଘ

(ମନୋରଥ ରାଜ:) ✓କୃଷ୍ଣ ରାଜ — ନିଃସନ୍ତାନ; ✓ ବିଶ୍ୱନାଥ ରାଜ — ଅପୁତ୍ରିକ ଏକମାତ୍ର ଝିଅ ନିରଶ; ✓ ବଟୋ ରାଜ

(ବଟୋ ରାଜ:) ଶ୍ରୀ ଅର୍ଜୁନ ରାଜ ଶ୍ରୀ ଅବଧୂତ ରାଜ ଶ୍ରୀ ଚକ୍ରଧର ରାଜ ଶ୍ରୀ ଦାଶରଥି ରାଜ

(ଶ୍ରୀ ଅର୍ଜୁନ ରାଜ:) ଶ୍ରୀ ବୁଦ୍ଧଦେବ ରାଜ ଶ୍ରୀ ଦଇତାରୀ ରାଜ ଶ୍ରୀ ହିମାଂଶୁ ରାଜ } ଚାରି ପୁତ୍ର ଏବଂ ତିନି କନ୍ୟା ।

(ଶ୍ରୀ ଦଇତାରୀ ରାଜ:) ତିନି ପୁତ୍ର ଏବଂ ଏକ କନ୍ୟା–କୁମାରୀ ଜୟନ୍ତୀ ରାଜ

ଯଥା:—କମଳା, ଅମ୍ବିକା, ଚନ୍ଦ୍ରାବତୀ ।

ତର୍କିଆ ରାଜଙ୍କ ଠାରୁ ଅଭିରାଜଙ୍କ ପର୍ଯ୍ୟନ୍ତ ରାଙ୍ଗପୁର ରାଜ୍ୟରେ ବଲଣ୍ଡା ଗାଈପାଲୀ ଅଞ୍ଚଳକୁ ଗଞ୍ଜୁଆନା ସୂତ୍ରରେ ଭୋଗ କରି ପ୍ରତ୍ୟେକ ସେମାନଙ୍କ ଭ୍ରାତୃମାନଙ୍କ ସହିତ ସପରିବାର ଏକ ଅନ୍ତରେ ପ୍ରତିପାଳିତ ହୋଇ ସୁଖ ଶାନ୍ତିରେ ବାସ କରି ଆସନ୍ତି । ବଂଶର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ରାଜବଂଶ ରାଙ୍ଗପୁର ନଗରରେ କ୍ରମଶଃ ବ୍ୟାପ୍ତ ହୁଅନ୍ତି ।

ଅଭିରାଜଙ୍କର ଏକମାତ୍ର ପୁତ୍ର ଖଗେଶ୍ୱର ଏବଂ ମନୋରଥଙ୍କର ତିନି ପୁତ୍ର କୃଷ୍ଣ, ବିଶ୍ୱନାଥ ଓ ବଟୋ ଜନ୍ମ ହୁଅନ୍ତି । ପିଲମାନେ ସାବାଳକ ହେବାର ଅଳ୍ପକାଳ ପରେ ମନୋରଥ ସ୍ୱର୍ଗାରୋହଣ କରନ୍ତି । ଅଭିରାଜ ପରିବାରର ସମସ୍ତ ଦାୟିତ୍ୱ ବହନ କରି ସମୟକ୍ରମେ ଇହଲୀଳା ସାଙ୍ଗ କରନ୍ତି ।

ଖଗେଶ୍ୱର ଗଜ, କୃଷ୍ଣଗଜ, ବିଶ୍ୱନାଥ ଗଜ ଓ ବଟୋଗଜ ଏକତ୍ର ବାସକରନ୍ତି । ଖଗେଶ୍ୱର ପାଞ୍ଚପାଲ୍ଲୀ ଭୂସମ୍ପତ୍ତିର ରକ୍ଷଣାବେକ୍ଷଣ ; କୃଷ୍ଣ କୃଷିକାର୍ଯ୍ୟ ଦେଖନ୍ତି । ବିଶ୍ୱନାଥ ଓ ବଟୋ ଉଭୟେ ଭାଇମାନଙ୍କୁ ଆବଶ୍ୟକ ଅନୁଯାୟୀ ଗୃହକର୍ମରେ ସାହାଯ୍ୟ କରନ୍ତି ।

ହରିହର ବଳଣ୍ଡା ପାଇକ ଆଖଡ଼ାରେ ସାମୟିକ ପାଇକ ବିଦ୍ୟା ଶିଖନ୍ତି । ବିଶ୍ୱନାଥ ଏକାଧାରରେ ଓଡ଼ିଆ, ବଙ୍ଗଳା, ହିନ୍ଦୀ ଓ ଇଂରାଜୀ ଭାଷା-ଗୁଡ଼ିକରେ ଲେଖିବା ପଢ଼ିବା ଏବଂ କଥାବାର୍ତ୍ତା କରିବାରେ ସୁପରିଚିତ ହୁଅନ୍ତି । ବଟୋ କେବଳ ଓଡିଆ ଭାଷାରେ ଲେଖା ପଢ଼ା କରନ୍ତି । ମାଇଖମ୍ଭ ଛାଟିବାରେ (ମୋଲ ବନ୍ଧ ବିଦ୍ୟାରେ ଖ୍ୟାତି ରଖନ୍ତି ।

ପରିବାରର ପୁତ୍ର କନ୍ୟାଙ୍କ ମଧ୍ୟରେ ନିରଞ୍ଜ ପୋଢ଼ୁଆଁ ଡାଳିମ୍ବ ଦ୍ୱିତୀୟ । ଅର୍ଜ୍ଜୁନ ତୃତୀୟ ସ୍ଥାନ ଅଧିକାର କରନ୍ତି । ଏମାନଙ୍କ ମଧ୍ୟରେ ଡାଳିମ୍ବକୁ ଛାଡ଼ି ଅନ୍ୟ ସମସ୍ତେ ଓଡ଼ିଆ ଭାଷାରେ ଲେଖା ପଢ଼ା ଶିଖନ୍ତି । ପାଞ୍ଚପାଲ୍ଲୀର ଅନ୍ୟ କେତେକ ସାଙ୍ଗ ସାଥିଙ୍କ ମେଳରେ ପିଲମାନେ ହସ ଖେଳ ଓ ପଢ଼ାରେ ସମୟ ଅତିବାହିତ କରନ୍ତି । ଓଡ଼ିଆ ଭାଷାରେ ରଚିତ ରାମାୟଣ, ମହାଭାରତ, ବ୍ରହ୍ମାଣ୍ଡ ଭୂଗୋଳ, ଦାଢ଼୍ୟତା ଭକ୍ତି, ବିରାଟ ଗୀତା, ଭାଗବତ, ଲକ୍ଷ୍ମୀପୁରାଣ, ଜୀମୁତ ବାହାନ, ସୁଦଶା ବ୍ରତକଥା, ତୁଳାଭିଣା, ଗୁଣସାଗର, ବୈଦ୍ୟଶାସ୍ତ୍ର, ଖୋଷାକଟା, ଗ୍ରଣକ୍ୟ ସାର ସଂଗ୍ରହ, ବେଣ୍ଟପୋଥି, ମ.ଳଶ୍ରୀ, ନାମରତ୍ନ ଗୀତା ଇତ୍ୟାଦି ଅନେକ ତାଳପତ୍ର ପୋଥି ଗଜପରିବାରର ଭଣ୍ଡାର ଘରେ ଗଛିତ ହୋଇ ମହାନ୍ ଉତ୍କଳୀୟ ସଂସ୍କୃତିର ଯଶଗାନ ବ୍ରାହ୍ମଣ ଏବଂ ବୈଷ୍ଣବମାନଙ୍କ ଦ୍ୱାରା ଗ୍ରଳିଥାଏ । ଏତଦ୍ ବ୍ୟତୀତ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ, ଗୋପାଳକୃଷ୍ଣ, ଦୀନକୃଷ୍ଣ, ଅଚ୍ୟୁତାନନ୍ଦ, ଅଭିମନ୍ୟୁ ସାମନ୍ତ ସିଂହାର, ଗଙ୍ଗାଧର ଓ ଭକ୍ତକବି ମଧୁସୂଦନ ରାଓ ଆଦି କବିମାନଙ୍କର ବିଭିନ୍ନ ପଦ୍ୟାବଳୀ ସହିତ ଓଡ଼ିଆ ପୋଇ ଗୀତ, ଭଜନ, ମାଳଶ୍ରୀର ସୁମଧୁର ଗାନ ପିଲଠୁ ବୁଢ଼ା ସମସ୍ତଙ୍କ କଣ୍ଠରେ ନିନାଦିତ ହୋଇ ଆସୁଅଛି । ଗଜ-ପରିବାରର କୁଳ-ବଧୂ ସାଧବାଣୀ, ତୁମେରୀ, ପଦ୍ମିନୀ ଓ ସୂର୍ଯ୍ୟକାନ୍ତି ଆଦି ସମସ୍ତଙ୍କ ସ୍ନେହ ପ୍ରୀତି ଆତିଥେୟରେ ପାଞ୍ଚପାଲ୍ଲୀରେ ଶାନ୍ତି ସନ୍ତୋଷ ବିରାଜମାନ

କରୁଥାଏ । ସାଧୁ, ସନ୍ଥ ଏବଂ ଅନ୍ୟାନ୍ୟ ଅତିଥି ଅଭ୍ୟାଗତଙ୍କର ଅବାଧ ପ୍ରବେଶ ଲାଗିଥାଏ ।

ସମୟ ଗଡ଼ିଚାଲେ । ଖଗେଶ୍ୱର ରାଜଙ୍କ ଏକମାତ୍ର ଝିଅ ଡାଳିମ୍ବ ଡଙ୍ଗାଯୋର ଇନ୍ଦ୍ର ରାଉତଙ୍କୁ ବିବାହ କରନ୍ତି ।

କୃଷ୍ଣ ରାଜ ବିବାହ ପରେ କେତେ ବର୍ଷ ଗୃହକର୍ମ କରି ନିଃସନ୍ତାନ ହୋଇ ଇହଧାମରୁ ବିଦାୟ ନିଅନ୍ତି ।

ବିଶ୍ୱନାଥ ରାଜଙ୍କର ଏକମାତ୍ର କନ୍ୟା ନିରଶ ବାର୍ଗାଗୋଟୁ ରଉଁନ୍ତିଆ ଗଣେଶ ନାୟକଙ୍କୁ ବିବାହ କରନ୍ତି ।

ଖଗେଶ୍ୱର ରାଜଙ୍କ ଅମଳରେ ବଲଣ୍ଡା ପାଅଚାଲି ଅଞ୍ଚଳ ଭୂସମ୍ପତ୍ତି ନାଗର ଇଷ୍ଟେଟ ଜମିଦାର ଏବଂ ଗାଙ୍ଗପୁର ରଜା ଉଭୟଙ୍କ ଚକ୍ରାନ୍ତର ଶୀକାର ହୁଏ । ଖଗେଶ୍ୱର ଅନ୍ୟାୟ ଚକ୍ରାନ୍ତର ଆଦେଶ ବିରୁଦ୍ଧରେ ତତ୍‌କାଳୀନ ଇଂରାଜୀ ଦିଓ୍ୱାନ ସାହେବଙ୍କ ଅଦାଲତରେ ତିନି ଚାରୋଟି ମକଦ୍ଦମା ଚାଲିଥିବା ସମୟରେ କୃଷ୍ଣ ଏବଂ ବିଶ୍ୱନାଥଙ୍କର ସ୍ୱର୍ଗବାସ ହୁଏ । ଖଗେଶ୍ୱରଙ୍କ ସପକ୍ଷରେ ଉତ୍କଳ ଗୌରବ ମଧୁସୂଦନ ଦାସ ଓକିଲତି କରି ଉକ୍ତ ମକଦ୍ଦମାରେ ଜୟଲାଭ କରନ୍ତି ।

ଇତି ମଧ୍ୟରେ ବଟୋରାଜ ବଣାଇଁସ୍ଥିତ କଲେଇପୋଷ ମୌଜାର କେତେକ ଜମିର ରକ୍ଷଣା ବେକ୍ଷଣ ପାଇଁ କଲେଇପୋଷରେ ବାସକରନ୍ତି । ଏଠାରେ ବଟୋଙ୍କର ବଡ଼ ପୁତ୍ର ଅର୍ଜ୍ଜୁନ ଜନ୍ମ ନେଇଥାଏ । ମଝିରେ ମଝିରେ ବଟୋ ସପରିବାର ବଲଣ୍ଡା ଆସି ଗୁହର ଭଲ ମନ୍ଦରେ ଅଂଶ ଗ୍ରହଣ କରନ୍ତି । ଖଗେଶ୍ୱର ମକଦ୍ଦମାରେ ବିଜୟ ଲାଭ କରି ନିଜ ସତ୍ତ୍ୱକୁ କରାୟତ କରିବା ସମୟରେ ସ୍ୱର୍ଗବାସ କରନ୍ତି ।

ଖଗେଶ୍ୱରଙ୍କ ଅନ୍ତେ ବଟୋରାଜ ସମଗ୍ର ପରିବାର ଦାୟିତ୍ୱ ବହନ କରନ୍ତି । ରାଜ୍ୟ ଆନା ଚଳାଇବା ସମ୍ପର୍କୀୟ ଅନୁଭୂତି ବଟୋ ରାଜଙ୍କର ନ ଥିବାରୁ; ଖଗେଶ୍ୱରଙ୍କ ବିପକ୍ଷବାଦୀମାନେ ନାନାପ୍ରକାର କୁକୌଶଳ ପ୍ରୟୋଗ କରି ରାଜ୍ ପରିବାରର ଶାନ୍ତି ଉପରେ ଆକ୍ରମଣ ଚଳାନ୍ତି । ଏହିସବୁ କୁଟନୀତିର ସମ୍ମୁଖୀନ ନ ହୋଇ ପରିଶେଷରେ ବଟୋରାଜ ନିଜର ବିଧବା ଭ୍ରାତୃବଧୂ

ଏବଂ ପିଲଙ୍କ ସହିତ ପ୍ରିୟ ଜନ୍ମସ୍ଥାନ ବଲଣ୍ଡାର ମୋହ ତ୍ୟାଗ କରି ଲଠିକଟା ନିକଟସ୍ଥ ବଲଣି ବାର୍ହଦାରଙ୍କ ଆଶ୍ରୟ ନିଅନ୍ତି । ବାର୍ହଦାର ଖଗେଶ୍ୱର ଅମାତ ଏବଂ ଭଣଜା ମଦନମୋହନ ଅମାତଙ୍କ ଆତିଥେୟରେ ବଟୋଗଜ ସ୍ୱ ପିତାମହ ପ୍ରପିତାମହଙ୍କ ଅର୍ଜିତ ବଲଣ୍ଡାର ଭୂସମ୍ପତ୍ତି ପ୍ରାୟତଃ ଗ୍ୟରିଶହ ଏକର ଜମିର ଦାରୁଣ ବିଚ୍ଛେଦ ଯନ୍ତ୍ରଣାରୁ କ୍ରମଶଃ ମୁକ୍ତିଲାଭ କରନ୍ତି । ବାର୍ହଦାରଙ୍କ ପ୍ରଦତ୍ତ ସ୍ୱଳ୍ପ ଭୂସମ୍ପତ୍ତିରେ ଆତ୍ମସମ୍ମାନ ଅମଳିନ ରଖି ସେ ନିଜର ସଂସାର ଚଳାନ୍ତି ।

ବଲଣିରେ ବଟୋଗଜଙ୍କର ତିନି ପୁତ୍ର ଏବଂ ତିନି କନ୍ୟା ଜନ୍ମ ନିଅନ୍ତି । ଏମାନଙ୍କର ନାମ ଯଥାକ୍ରମେ ଅବଧୂତ, ଟଙ୍କଧର, ଦାଶରଥି ; କମଳା, ଅମ୍ବିକା ଓ ଚନ୍ଦ୍ରାବତୀ । ଝିଅମାନେ କ୍ରମାନୁଯାୟୀ ସେମେର୍ଡାର ବଳଦେବ ନାୟକ, ତୀର୍ଥବାସୀ ନାୟକ ଏବଂ ସାଗଯୋରର ସତ୍ୟବାଦୀ ସାହାଙ୍କୁ ବିବାହ କରନ୍ତି ।

କବି ଶ୍ରୀ ଅର୍ଜୁନ ଗଜ ବଲଣିରେ ନିମ୍ନ ପ୍ରାଥମିକ ଶିକ୍ଷା ସମାପନ କରି କୁଆଁରମୁଣ୍ଡାରେ ମିଡିଲସ୍କୁଲ ଭର୍ଣ୍ଣାକୁଲର ଅଷ୍ଟମ ଶ୍ରେଣୀ) ପଢ଼ି ; ୧୯୩୦ ମସିହାରେ ଉତ୍ତୀର୍ଣ୍ଣ ହୁଅନ୍ତି । ଏତିକିରେ ବିଦ୍ୟାଅଧ୍ୟୟନ ସମାପ୍ତ କରି ଉଣେଇଶ ଏକତିରିଶ ମସିହା ଜାନୁଆରୀ ପନ୍ଦର ତାରିଖରେ କୁଆଁରମୁଣ୍ଡାରେ ଶିକ୍ଷକତା ଆରମ୍ଭ କରନ୍ତି । ଏହିଁ ସମୟରେ ତାଙ୍କର ଆଦର୍ଶ ଶିକ୍ଷାଗୁରୁ ଅର୍ଜୁନ ଗଡ଼ତିଆଙ୍କ ଆଶିଷରୁ କବିଙ୍କ ଆଦି କବିତା "ପଦ ବନ୍ଦନା" ରଚିତ ହୁଏ । କବିଙ୍କ 'ପଦ ବନ୍ଦନା' କବିତା ଲେଖକର ପୂର୍ବ ପ୍ରକାଶିତ ସିଂହାବଲୋକନ କାବ୍ୟରେ ପ୍ରକାଶିତ ହୋଇଅଛି ।

କୁଆଁରମୁଣ୍ଡା ବିଦ୍ୟାଳୟରୁ ସୋରଡ଼ା ନିମ୍ନ ପ୍ରାଥମିକ ଏହାପରେ ବିଶ୍ରା ଉଚ୍ଚ ପ୍ରାଥମିକ ବିଦ୍ୟାଳୟକୁ ଅର୍ଜୁନ ଗଜଙ୍କର ବଦଳି ହୁଏ ।

ଗୃହର ଦୁରବସ୍ଥା ନେଇ ଅର୍ଜୁନ ଗଜଙ୍କ ବିବାହ ବିଳମ୍ବରେ ଉଣେଇଶ ଅଣତ୍ରିଶ ମସିହାରେ ଗାଙ୍ଗପୁର ରାଜ୍ୟର ଶଙ୍ଖ ନଦୀ ତଟସ୍ଥ ତର୍କଗ ନିବାସୀ ରଣଜିତ ମାଝିଙ୍କ ବଡ଼ଝିଅ ଶଶୀଙ୍କ ସହିତ ସମ୍ପନ୍ନ ହୁଏ । ବଲଣିରେ କବିଙ୍କର ତିନି ପୁତ୍ର ଏକ କନ୍ୟା ଜନ୍ମ ହୁଅନ୍ତି । ସମୟ କ୍ରମେ କବିଙ୍କର ବଡ଼ମାତା, ବାପା ବଟୋଗଜ ଏବଂ ମାତା ସୂର୍ଯ୍ୟକାନ୍ତି, ପୁତ୍ର, ନାତିମାନଂକ ଗହଣରୁ ବିଦାୟ ନେଇ ଇହଲୀଳା ସମ୍ବରଣ କରନ୍ତି ।

କବି ସତର ବର୍ଷ ଶିକ୍ଷକତା କରିବା ପରେ ତତ୍‌କାଳୀନ ସରକାରଙ୍କ ନିର୍ଦ୍ଦେଶାନୁଯାୟୀ ପି-ଡବ୍ଲ୍ୟୁ-ଡ଼ି ଏବଂ ରେଭେନ୍ୟୁ ବିଭାଗରେ ଟାଇମ୍‌କିପର ଭାବେ ଚାକିରୀ କରନ୍ତି । ଉଣେଇଶ ଚଉବନ ମସିହାରେ ତାଙ୍କର ଅନ୍ୟତ୍ର ବଦଳି ହୁଏ । ସେ କେତେକ ଘରୋଇ କାରଣ ବଶତଃ ଉକ୍ତ ବଦଳି ଆଦେଶ ଗ୍ରହଣ ନ କରି, ଚାକିରୀ ଛାଡ଼ି ଗୃହ କର୍ମରେ ନିଜକୁ ନିୟୋଜିତ କରନ୍ତି । ସେହିଦିନୁଁ ଏପର୍ଯ୍ୟନ୍ତ କବି ଗୃହର ମୁଖ୍ୟ ଦାୟିତ୍ୱ ବହନ କରି ଆସୁଅଛନ୍ତି ।

ବିଶ୍ରା ଏବଂ ଉଦିତନଗର ଚାକିରୀକାଳ ମଧ୍ୟରେ ଅର୍ଜ୍ଜୁନ ରାଜ ଜଣେ ଅବଧୂତ ସନ୍ୟାସୀ ଏବଂ ଜଣେ ଶାସ୍ତ୍ରଜ୍ଞ ପଣ୍ଡିତଙ୍କ ସହିତ କେତେକାଳ ଏକତ୍ର ରହିବା ସୁଯୋଗ ଲଭ କରନ୍ତି । ଉଭୟ ଯୋଗ ସାଧନା ଏବଂ ପୁରାଣ ଶାସ୍ତ୍ର ଆଲୋଚନାରେ ସେ ଅଂଶ ଗ୍ରହଣ କରନ୍ତି । ସତ୍‌ସଙ୍ଗ ସାନ୍ନିଧ୍ୟରୁ ଅର୍ଜ୍ଜୁନଙ୍କର ଆଧ୍ୟାତ୍ମିକ ଜୀବନ ସରସ ସୁନ୍ଦର ହୋଇ ବିକଶିତ ହୁଏ । ବିଭୁ ପ୍ରୀତିରେ ଉଦ୍‌ବୁଦ୍ଧ ହୋଇ ପରମେଶ୍ୱର ଚିନ୍ତନରେ ତାଙ୍କର ସମୟ ଗଡ଼ିଗଲେ ବଡ଼ଗାଁ ନିକଟସ୍ଥ ରେଙ୍ଗାଲି ଗ୍ରାମର ମଙ୍ଗୁଳ ଦାସ ବୈଷ୍ଣବଙ୍କ ଠାରୁ ସେ ଦୀକ୍ଷା ଗ୍ରହଣ କରନ୍ତି ।

ବାମଣ୍ଡାର ରାଜବଲଣ୍ଡା ନିବାସୀ ହରି ଚନ୍ଦନ ସା ; ସର୍ଗୀଡ଼ିହି ନିବାସୀ ଇନ୍ଦ୍ରମଣି ତରିଆ ଏମାନେ ଦୁଇ ସତ୍ତ୍ୱ । ଜାତିରେ କେଉଟ । ଉଭୟେ ଗନ୍ଧର୍ବ ବିଦ୍ୟା ସହିତ ଉତ୍କଳୀୟ ଗୌଡ଼ୀୟ ପରମ୍ପରାର ନାମ ସଂକୀର୍ତ୍ତନରେ ଖ୍ୟାତି ଅର୍ଜ୍ଜନ କରିଥାନ୍ତି । ଏମାନେ ବଲଣ୍ଡରେ କିଛିକାଳ ରହି ଗ୍ରାମର ଯୁବକମାନଙ୍କୁ ଶିଷ୍ୟ ରୂପେ ଗ୍ରହଣ କରନ୍ତି । ଅର୍ଜ୍ଜୁନ ରାଜ ଏମାନଙ୍କ ସାନ୍ନିଧ୍ୟ ଲାଭ କରି କ୍ରମେ ନିଜକୁ ସଂକୀର୍ତ୍ତନ ଗୁରୁ ଭାବରେ ସମାଜରେ ପ୍ରତିଷ୍ଠିତ କରନ୍ତି । ବଲଣି ସେମେର୍ତ୍ତା ପିତା ଖାଁ ରଣ୍ଡୋ ଗମ୍ଭାରୀ ଡ଼ିହି କୁଳମୁଣ୍ଡା ଓ ଇନ୍ଦ୍ରପୁରର ଯୁବକମାନେ ସମୟକ୍ରମେ କବିଙ୍କର ଶିଷ୍ୟତ୍ୱ ଗ୍ରହଣ କରି ନାମ ସଂକୀର୍ତ୍ତନ ଧାରାକୁ ଅବ୍ୟାହତ ରଖିଅଛନ୍ତି । ଏହିଭଳି ପବିତ୍ର ପରିବେଶରୁ ଅର୍ଜ୍ଜୁନ ରାଜଙ୍କ ସୁପ୍ତ ଲେଖନୀ ପୁନଃ ଜାଗ୍ରତ ହୋଇ ଉତ୍କଳ ଭାରତୀର ପଦ ସେବାରେ ଲିପ୍ତ ରହିଅଛି ।

ପ୍ରାୟତଃ ପଞ୍ଚାବନ ଅବା ଷାଠିଏ ବର୍ଷ ବୟସରୁ କବି ଶ୍ରୀ ଅର୍ଜ୍ଜୁନ ରାଜଙ୍କର ଆବାଲ୍ୟ କବି ବାସନା ପୁନଃ ଅଙ୍କୁରିତ ହୁଏ । ଇତି ମଧ୍ୟରେ କବିଙ୍କ

ଲେଖନୀରୁ ଶ୍ରୀକୃଷ୍ଣ ଲୀଳା, ସଂକୀର୍ତ୍ତନ୍ୟ ରସାମୃତ, ଜଗନ୍ନାଥ ଜଣାଣ, ନାଗର ମହାତ୍ମ୍ୟ ଏବଂ ଖେଦୋକ୍ତି ଆଦି ଅପ୍ରକାଶିତ କବିତା ପାଣ୍ଡୁଲିପିଗୁଡ଼ିକ ପ୍ରସ୍ଫୁଟିତ ହୋଇ ଉତ୍କଳ ଭାରତୀର ପଦବନ୍ଦନା କରୁଅଛନ୍ତି ।

ବର୍ତ୍ତମାନ କବି ଶ୍ରୀ ଅର୍ଜ୍ଜୁନ ରାଜ ଅଣାଅଶୀ ବର୍ଷ ବୟସରେ ପଦାର୍ପଣ କରୁଅଛନ୍ତି । କବିଙ୍କ ଭଜନ କୀର୍ତ୍ତନ ଧାରାକୁ ତାଙ୍କର ଭାଇମାନେ ଅନୁସରଣ କରି ଚାଲିଅଛନ୍ତି । ରାଜ ପରିବାରର ପରମ୍ପରାକୁ ରକ୍ଷା କରି କବିଙ୍କ ଭାଇମାନଙ୍କ ସମ୍ପର୍କରେ ଦୁଇପଦ ଲେଖିବା ଅସମୀଚୀନ ହେବନାହିଁ ।

ଅଧୁନା କବି ଶ୍ରୀ ଅର୍ଜ୍ଜୁନ ରାଜଙ୍କ ଲେଖନୀ କ୍ରମଶଃ ଶୀଥିଳ ହୋଇ ଯାଇଅଛି । ବିଭୁ ଚିନ୍ତନରେ ଅନେକ ସମୟ ଦେଉଅଛନ୍ତି । ଅତିଥି ଅଭ୍ୟାଗତଙ୍କ ଆତିଥେୟ ବ୍ୟତୀତ ଗୃହର ଚାଷ ତଥା ଅନ୍ୟାନ୍ୟ କର୍ମଗୁଡ଼ିକ ତାଙ୍କର ଭାଇ ଏବଂ ପୁତ୍ରମାନଙ୍କ ଦ୍ୱାରା ସମ୍ପାଦିତ ହେଉଅଛି ।

ଅବଧୂତ ରାଜ କବିଙ୍କର ବଡ଼ ମଝିଆଁ ଭାଇ । ସେ ସଂକୀର୍ତ୍ତନ ବାଦକ ଏବଂ ସମ୍ପ୍ରଦା ଗୀତି ଗାୟକ ରୂପେ ସମ୍ପ୍ରଦାମଣ୍ଡଳୀଗୁଡ଼ିକରେ ବେଶ୍ ପରିଚିତ ହୋଇଅଛନ୍ତି । ଚାଷ ଏହାଙ୍କର ମୁଖ୍ୟ ଜୀବିକା । ଏତଦ୍ ବ୍ୟତୀତ ଅବଧୂତ ମନସା ଦେବୀଙ୍କ ବର ପ୍ରାପ୍ତ ହୋଇ ଗାରିଡ଼ି ବିଦ୍ୟାରେ ସିଦ୍ଧିଲାଭ କରିଅଛନ୍ତି । ସର୍ପ, ଝିଟିପିଟି ଏବଂ କୁକୁର ଦଂଶନ ଦ୍ୱାରା ଆକ୍ରାନ୍ତ ରୋଗୀମାନଙ୍କୁ ଭଲ କରି ଆସୁଅଛନ୍ତି ।

ଟଙ୍କଧର ରାଜ କବିଙ୍କର ସାନ-ମଝିଆଁ ଭାଇ । ଚାଷ ଏହାଙ୍କର ମୁଖ୍ୟ ଜୀବୀକା । ସଂକୀର୍ତ୍ତନ ଗାଇବା, ଖୋଲ ବଜାଇବା ବିଦ୍ୟା ସେ ସାଧାରଣ ଭାବେ ଜାଣନ୍ତି ।

ଦାଶରଥି ରାଜ କବିଙ୍କର କନିଷ୍ଠ ଭାଇ ଅଟନ୍ତି । ଦାଶରଥି ଅଷ୍ଟମ ଶ୍ରେଣୀ ପଢ଼ିସାରି ବିବାହ ହୁଅନ୍ତି । ବିବାହ ପରେ ପୁନଶ୍ଚ ନବମ ଶ୍ରେଣୀ ପଢ଼ନ୍ତି । ପରେ ଘରେଇ ପରୀକ୍ଷା ଦେଇ ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଅନ୍ତି । ଏହାପରେ ୧୯୬୦ ମସିହା ସେପ୍ଟେମ୍ବର ବାଇଶି ତାରିଖରୁ ଶିକ୍ଷକତା କରି ଆସୁଅଛନ୍ତି । ଦାଶରଥି ଜଣେ ଶିକ୍ଷାପ୍ରେମୀ ଶିକ୍ଷକ ରୂପେ ଏ ଅଞ୍ଚଳରେ ସୁପରିଚିତ । ଏହାଙ୍କ ଉଦ୍ୟମରେ ମୁଣ୍ଡାଯୋର ବିରକେରାର ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଦ୍ୱୟ ଏମ୍-ଇ ସ୍କୁଲରେ ପରିଣତ ହୋଇଅଛି ।

ଦାଶରଥି ଡୁମେର୍ତ୍ତା, ବଣ୍ଡମୁଣ୍ଡା, ଜଇଦା, ହାତୀବନ୍ଧା, ମୁଣ୍ଡାଯୋର ବିଡକେଗ ଆଦି ବିଦ୍ୟାଳୟଗୁଡ଼ିକରେ ଶିକ୍ଷକତା କରି ବର୍ତ୍ତମାନ ନୂଆଗାଁ ଏମ୍.ଇ ସ୍କୁଲର ହେଡ୍‌ମାଷ୍ଟର ଅଛନ୍ତି । ଏତଦ୍ ବ୍ୟତୀତ ଉପରୋକ୍ତ ବିଦ୍ୟାଳୟ-ଗୁଡ଼ିକର ରହଣୀକାଳ ମଧ୍ୟରେ ଦାଶରଥି ଜନହିତକର ସେବାମୂଳକ କର୍ମରେ ନିଜକୁ ନିୟୋଜିତ କରି ଆସିଥଛନ୍ତି ।

## କବି ଶ୍ରୀ ଅର୍ଜୁନ ରାଜଙ୍କ ରଚନାର ପରିଚୟ

**ଶ୍ରୀକୃଷ୍ଣ ଲୀଳା :** ଶ୍ରୀକୃଷ୍ଣ ଲୀଳା ପାଣ୍ଡୁଲିପିରେ ଶ୍ରୀକୃଷ୍ଣଙ୍କ ଜନ୍ମରୁ ମଥୁରା ବିଜୟ ପର୍ଯ୍ୟନ୍ତ ନାନାବିଧ ବିଷୟଗୁଡ଼ିକ ବିଭିନ୍ନ ଛନ୍ଦୋବଦ୍ଧ କବିତା ଏବଂ ନାନାଦି ସଙ୍ଗୀତ ରାଗରେ ସରସ ସୁନ୍ଦର ହୃଦୟସ୍ପର୍ଶୀ ଭାବେ ରଚିତ ହୋଇଅଛି । ଯଥା :

### ବିଶ୍ରାମ ତାଳର ଗୀତ (ରାଗ-ମାଳବ)

କଦମ୍ବ କାନନେ ବେଣୁ ବାଆନ୍ତେ ମୋହନରେ
କମ୍ଭେ ଗୋପ ମଥୁରା ଦ୍ୱାରୀକା ବୃନ୍ଦାବନରେ । ପଦ ।
କମ୍ଭେ ଯାଜପୁର କର୍ମିତାଏ ବାରବନ
ସୁତଳ ବିତଳ ତୁଲେ ଚଉଦ ଭୁବନରେ । ୧ ।
କମ୍ଭଇ କାଳନ୍ଦୀ କୂଳ କମ୍ଭେ ଗୋବର୍ଦ୍ଧନ
ଉଜାଣି ଯମୁନା ବହେ ଭଣେ ଦୀନାର୍ଜ୍ଜୁନ ରେ । ୨ ।

**ସଂକୀର୍ତ୍ତନ୍ୟ ରସାମୃତ :** ସଂକୀର୍ତ୍ତନ୍ୟ ରସାମୃତରେ କବି ଶ୍ରୀ ଅର୍ଜୁନ ରାଜ ପ୍ରଥମରେ ମଙ୍ଗଳାଚରଣ କରି ଚାରି ସମ୍ପ୍ରଦା ଯଥା : ବ୍ରହ୍ମ ସମ୍ପ୍ରଦା, ସନକ ସମ୍ପ୍ରଦା, ଶ୍ରୀ ସମ୍ପ୍ରଦା ଏବଂ ରୁଦ୍ର ସମ୍ପ୍ରଦାଗୁଡ଼ିକର ରୀତି ନୀତି ବର୍ଣ୍ଣନା କରିଅଛନ୍ତି । ଶେଷରେ ଗୋଲକମଣ୍ଡଳର ବର୍ଣ୍ଣନା ଦେଇଅଛନ୍ତି ।

### ଚାରି ସମ୍ପ୍ରଦା

॥ ଶ୍ରୀ ଗଣେଶାୟ ନମଃ ॥

ହାକୃଷ୍ଣ ଦ୍ୱାରୀକାନାଥ କାଶୀ ଯାଦବ ନନ୍ଦନ ।
ମମ ଦୁଃଖ ଫେଡ଼ ପ୍ରଭୁ ତ୍ରାହିମାଂ ପୁରୁଷୋତ୍ତମଃ ॥

ଜୟ ଜୟ ପରଂବ୍ରହ୍ମ ଜୟ ପୂର୍ଣ୍ଣାନନ୍ଦ ।
ଜୟ ବଇକୁଣ୍ଠ ନାଥ ପ୍ରଭୁ ଆଦିକନ୍ଦ ।୧।
ଅଗତିର ଗତି ପ୍ରଭୁ ଅଖିଳ ତାରଣ ।
ମୋହଠାରେ କୃପା ଭବେ କର ନାରାୟଣ ।୨।
କହିବାକୁ ଯାଏଁ ସଂକୀର୍ତ୍ତନ୍ୟ ରସାମୃତ ।
ଗ୍ରରି ଦଣ୍ଡୁଦା ସହିତେ ଗୋପର ବୃତାନ୍ତ ।୩।
ତେଣୁ ନାରାୟଣ ତବ ଚରଣେ ଶରଣ ।
ଦୀନାର୍ଜ୍ଜୁନ ମାଗେ ପ୍ରଭୁ ଦିଅ ଦିବ୍ୟଜ୍ଞାନ ।୪।

× × ×

## ଗୋଲକ ମଣ୍ଡଳ ବର୍ଣ୍ଣନା

ପ୍ରତ୍ୟକ୍ଷେ ପରମବ୍ରହ୍ମ ପ୍ରଭୁ ପୂର୍ଣ୍ଣାନନ୍ଦ ।
ବଇକୁଣ୍ଠେ ବସିଛନ୍ତି ଘେନି ଦେବ ବୃନ୍ଦ ।୧।
ସେ ବୈକୁଣ୍ଠର ମହିମା କହିବାକ ହାଦେ ।
କୋଟି କୋଟି ରବି ଶଶି ଜ୍ୟୋତି ଯହିଁ ଉଦେ ।୨।

× × ×

ଦଶ ଦିଗରେ ଭୂଷଣ ଦଶଦିଗ-ପାଳ ।
କାହିଁ ଅବତାର ଲେଖା ହୋଇମାଳ ମାଳ ।
ଏହି ରୂପେ ବୈକୁଣ୍ଠର ଶୋଭା ବିକଶାଇ ।
ବଇକୁଣ୍ଠେ ନାଥେ ଧ୍ୟାୟି ଦୀନାର୍ଜ୍ଜୁନ କହି ॥

**ଜଗନ୍ନାଥ ଜଣାଣ**—କବି ଶ୍ରୀ ଅର୍ଜ୍ଜୁନ ଗଜ ପ୍ରାଚୀନ ଓଡ଼ିଆ କବିମାନଙ୍କ ପଦାଙ୍କ ଅନୁସରଣ କରି "ବନ୍ଦନାକୁ" ମଙ୍ଗଳା ଚରଣ ରୂପେ ଗ୍ରହଣ କରି ତତ୍‌ପରେ ବିବିଧ ଛନ୍ଦରେ ଅନେକ ଜଗନ୍ନାଥ ଜଣାଣ ଲେଖିଅଛନ୍ତି ।

ଯଥା—**ବନ୍ଦନା (ରାଗ—ମାଳବ)**

ପ୍ରଥମେ ବନ୍ଦୁ ସାଷ୍ଟାଙ୍ଗେ ଗୁରୁ ପଦାମ୍ବୁଜେ ।
ଯାହାଙ୍କ ପ୍ରସାଦେ ଜ୍ଞାନ ପ୍ରସରଇ ହୃଦେ ।୧।
ଦ୍ୱିତୀୟେ ବନ୍ଦନା କରୁ ଆଦିକନ୍ଦ ପାଏ ।
ଯେ ପଦକଞ୍ଜୁ ଶୀତଳ ମଧୁଧାର ବହେ ।୨।

ତୃତୀୟେ କୃଷ୍ଣ ବୈଷ୍ଣବ କରଇଁ ବନ୍ଦନ ।
ତାଙ୍କ ଶ୍ରୀଚରଣ ରେଣୁ ମୋର ଶିର ଭୂଷଣ ।୩।
ହରେ ରାମ କୃଷ୍ଣ ନାମ ସଦା ଯାର ହୃଦେ ।
ସତ୍ୟ ଧର୍ମ ଦୟା ଜ୍ଞାନ ହୋଇଥାନ୍ତି ଉଦେ ।୪।
ଚତୁର୍ଥେ ଶ୍ରୋତା ବକତା ପାଦେ ମୋ ପ୍ରଣତି ।
ରହୁକା ହୃଦ-କମଳେ ଥାଉ ମୋ ଭକତି ।୫।
ନିରାଲମ୍ବ ପ୍ରଭୁ ପାଦ ପଦ୍ମରେ ଶରଣ ।
ଦୀନାର୍ଜ୍ଜୁନ ମାଗେ ଗାଇବାକୁ ସଙ୍କୀର୍ତ୍ତନ ।୬।

## ଜଗନ୍ନାଥ ଜଣାଣ (୧)

ଆହେ ଶଙ୍ଖ ଚକ୍ର ବାହା ଦାରୁ-ବ୍ରହ୍ମରାଶି ।
ଶ୍ରୀନୀଳ କନ୍ଦରେ ଥିଲ ବଚନ ପ୍ରକାଶି ।୧।
ବଡ଼ ଦେଉଳକୁ ପ୍ରଭୁ କରିଛ ହେ ବିଜେ ।
ସିଂହ ବ୍ୟାଘ୍ର ଗଜ ବାଜି ଚଉଦ୍ୱାରେ ରାଜେ ।୨।
ଦେଉଳ ଚୂଡ଼େ ଉଡ଼ାଇ ନୀଳ ଚକ୍ରବାନା ।
ପତିତେ ତାରି ଯାଉଛ ଆହେ ବଜ୍ର ସେନା ।।୩।।

× × ×

ତେଣୁ ତୋ ଅଭୟ ପାଦେ ପଶିଲି ଶରଣ
ଏ ଦୀନାର୍ଜ୍ଜୁନକୁ ରଖ ଆହେ ନାରାୟଣ ।।୯।।

## ଜଗନ୍ନାଥ ଜଣାଣ (୨)

କାଳିଆ କେଡ଼େ ଶୋଭରେ, ଦିଶେ ପହଣ୍ଡି ବିଜୟ କାଳେ ।
ଆଗେ ବଡ଼ ଭାଇ, ମଝିରେ ଭଉଣୀ, ପଛରେ କାଳି ଝୁଲେ ।।ପଦ।।

ଶଙ୍ଖ ଘଣ୍ଟ ନାଦ, ମୃଦଙ୍ଗ, ବାଇଦ, ବାଜୁଥାଇ ଅନର୍ଗଳେ ।
ପଡ଼ୁଥାଏ ହରିବୋଲ ହୁଳ ହୁଳି ବଡ଼ ଦାଣ୍ଡ ନିତ୍ୟ ସ୍ଥଳେ ।୧।

ଗମ୍ଭୀରୀ ଭିତରୁ ବାହାରେ କାଳିଆ ନବରତ୍ନ ମାଳା ଗଳେ ।
ଝର ଝୁମ୍ପା ତୁଳେ ସେବତୀ ପାଖୁଡ଼ା ଝଲକଇ ଗଣ୍ଡସ୍ଥଳେ ।୨।

× × ×

ତିନି ଦାରୁମୂର୍ତ୍ତି ତିନି ରଥେ ବସି ବଡ଼ ଦାଣ୍ଡେ ଥିବାକାଳେ
ହେରି ଦୀନାର୍ଜ୍ଜୁନ ମାଗଇ ଶରଣ ରହି ନୀଳଚକ୍ର ତଳେ ।୫।

**ନାଗର ମହାତ୍ମ୍ୟ**—କବି ଶ୍ରୀ ଅର୍ଜ୍ଜୁନ ରାଜ୍ ନାଗର ମହାତ୍ମ୍ୟରେ ଲେଖକର ପଦେ ଅଧେ, ଦୁର୍ଗାଧ୍ୟାନ, ଝଗଡ଼ାଇଙ୍କ ବନ୍ଦନା, ନାଗର ମାତା ମହିମା, ନାବେ ନାବିକର କୀର୍ତ୍ତି ଉଦନ୍ତ (ଖଣ୍ଡକାବ୍ୟ), ନାଗର ବୃତାନ୍ତ ଏବଂ ପଞ୍ଚପାଇକା ପ୍ରଭୃତି କବିତା ଗୁଡ଼ିକୁ ରାଗ ବରାଡ଼ି, ଚିନ୍ତା ଭୈରବ, ମାଳବ କୌଶିକ ଖେମ୍ଣି, ଦେଶାକ୍ଷ, ରସକୁଲ୍ୟା, ଆଷାଢ଼ ଶୁକ୍ଳ ଏବଂ କଳହଂସ କେଦାର ଆଦି ରାଗର ଛନ୍ଦରେ ରଚନା କରିଅଛନ୍ତି ।

ନାଗର ରାଜ୍ୟର ଭୌଗଳିକ ଐତିହାସିକ ପୌରାଣିକ ଆଧ୍ୟାତ୍ମିକ ଓ ସାମାଜିକ ଚିତ୍ରାବଳୀର ମଧୁର ସମନ୍ୱୟ ଭାବ ନାଗର ମାହାତ୍ମ୍ୟରେ ପରିଲକ୍ଷିତ ହୁଏ । ପ୍ରାଚୀନ ପନ୍ଥୀ ପ୍ରସିଦ୍ଧ କବିମାନଙ୍କ ପଦାଙ୍କ ଅନୁଶରଣରେ କବି ଉପରୋକ୍ତ ରଚନାଗୁଡିକୁ ସରସ ସୁନ୍ଦର ଏବଂ ହୃଦୟ ସ୍ପର୍ଶୀ କରାଇବାରେ ସମର୍ଥ ହୋଇଅଛନ୍ତି । ରଚନାଗୁଡ଼ିକର କେତେକ ପଙ୍‌କ୍ତିରୁ କବିଙ୍କ ଭାବ ଅନୁମେୟ କରାଯାଇ ପାରେ । ଯଥା—

**ଲେଖକର ପଦେ ଅଧେ ରାଗ-ବରାଡ଼ି**

× × ×

ଝଗଡ଼ାଇଙ୍କ ବନ୍ଦନା ନାଗର ମାତା ମହିମା
ପୁଣି ନାବେ ନାବିକର କୀର୍ତ୍ତି
ତାଙ୍କ ଅପୂର୍ବ ବୃତାନ୍ତ ଆବର କାର୍ଯ୍ୟ କଳାପ
ସହିତରେ ଯା ଅଛି ବିବୃତ୍ତି ହେ
ଧୀର ଜନେ
କଳ୍ପନାର ପୁଟରେ ଯେତେକ
କେତେ ସତ୍ୟ କେତେ ବା ଲୌକିକ ।୩।
ଲେଖକର ଧୃଷ୍ଟତାକୁ ହୃଦୁ ନିବେଶୀ ଦୂରକୁ
ହେ ପାଠକେ କରିଲେ ପଠନ
ସାର୍ଥକ ମଣିବି ଶ୍ରମ ଯେଣୁ ଅଟେ ବିଦ୍ୟାହୀନ
ବିଷୟ ଜଞ୍ଜାଳେ ବଞ୍ଚେ ଦିନ ହେ
ଧୀର ଜନେ

ଭୁଦେ ଘେନ ଏ ମୋର ପ୍ରଣତି
ଏହି ଦୀନେ ଦୟାଥିବ ରଖି ହେ ।୪।

ଲେଖକ-ଶ୍ରୀ ଅର୍ଜୁନ ଗଜ ।

ଦୁର୍ଗାଧ୍ୟାନ ରାଗ—ଚିନ୍ତା-ଭୈରବ

ସାଙ୍ଗେ ଆଣୁନ ଥିଲେ ମୋ ପତି- ଜାଣିଥିଲେ ପଡ଼ିବ ବିପତ୍ତି (ବୃତ୍ତେ)
ମା ଦୁର୍ଗେ ଦୁର୍ଗତି ନାଶିନୀ ସଦା ଅଭୟ ବରଦାୟିନୀ
ତ୍ରୈଲୋକ୍ୟ ତାରିଣୀ ଅଘ ବିଧ୍ୱଂଶିନୀ ଜୟ ଜୟ ମା ସିଂହ ବାହିନୀ ଗୋ
ମା ଦୁର୍ଗେ ।୧।
ରହୁ ହୋଇ ଓଁକାର ରୂପିଣୀ ମାଗୋ ଆଦିଶକ୍ତି ସନାତନୀ
ଅଟୁ ବ୍ରହ୍ମମୟୀ ତ୍ରିପୁର ବିଜୟୀ ତୋର ଶକ୍ତି ତୁଲେ ନାହିଁ କେହି ଗୋ
ମା ଦୁର୍ଗେ ।୨।

× × ×

ଜାଣେ ନାହିଁ ଜପ ତପ ଧ୍ୟାନ ଭୁଦେ ନାହିଁ ମୋର କିଛି ପୁଣ୍ୟ
ନାହିଁ ଶିକ୍ଷା ଜ୍ଞାନ ଅଟେ ବିଦ୍ୟାହୀନ ବିଷୟ ଜଞ୍ଜାଳେ ବଞ୍ଚେ ଦିନ ଗୋ
ମା ଦୁର୍ଗେ ।୧୮।
ଚିତ୍ତେ ଚେତନା ଶକ୍ତି ରୂପରେ ସୁ ପ୍ରସନ୍ନେ ବସି ମୋ କଣ୍ଠରେ
ପଦ ଯିବୁ କହି ଦୀନାର୍ଜ୍ଜୁନ ଧ୍ୟାୟି ବୋଲେ ତୋ ପଦପଦ୍ମ ଯୁଗରେ ଗୋ
ମା ଦୁର୍ଗେ ।୧୯।

ଝଗଡ଼ାଇଙ୍କ ବନ୍ଦନା (ରାଗ-ମାଳବ)

ନମୋ ମାତ ଝଗଡ଼ାଇ ଦୁର୍ଗତି ନାଶିନୀ
ଅପର୍ଣ୍ଣା ମହାମାଇ ଗୋ ଆଦି ସନାତନୀ ।୧।
ଖଣ୍ଡା ଖର୍ପର ଧାରିଣୀ ମାତ ଝଗଡ଼ାଇ
ନାଗର ଗଡ଼େ ବିଜୟେ ବିଧି ପୂଜା ପାଇ ।୨।
ନାଗର ଧର ରକ୍ଷଣେ ସଦାକାଳେ ତୁହି
ବିସ୍ତାରି ରହିଛୁ ମାଗୋ ତୋର ଭୁଜ ଦୁଇ ।୩।

+ + +

ଏପରି ସୁରମ୍ୟ ବନେ କରିଛୁ ବିଶ୍ରାମ
ଝାଡ଼େ ରହିବାରୁ ତୋର ଝଗଡ଼ାଇ ନାମ ।୨୧।
× × ×
ତେଣୁ ତୋ ଅଭୟ ପଦେ ପଶିଲି ଶରଣ
ଏ ଦୀନାର୍ଙ୍କୁ ନକୁ ମାଗୋ ଦିଅ ଦିବ୍ୟ ଜ୍ଞାନ । ୩୪ ।

ନାଗର ମାତା ମହିମା (ରାଗ-କୌଶିକ)

ମନ୍ତ୍ରୀ ମୁଖୁ ଶୁଣି କୋପେ ବିଂଶପାଣି ପୁସ୍ତକ ଯାନେ ବିଜେକଲେ —ବୃତ୍ତେ

କି ଗୌରବମୟୀ ମା ନାଗର ମହୀ ଧନ୍ୟ ତୋର ପୂର୍ବ ସୁକୃତ
ଧରିଅଛୁ କୋଳେ ପାଳି ସ୍ନେହ ଭେଳେ କୀର୍ତ୍ତୁ ବ୍ରହ୍ମଯାଏ ପୂରିତ
ଅଛି ତହିଁରେ
ବନ ଗିରି ନଦୀ କନ୍ଦର
ସ୍ଥାନେ ସ୍ଥାନେ ଜନବସତି ରଜଇ କାହିଁ ରଜେ ଶସ୍ୟ କେଦାର ।୧।

ବନ ଗିରି ଶୋହେ ନାନା ଲତା ଦ୍ରୁମେ କାହିଁ କାହିଁ ମୁନି ଆଶ୍ରମ
ନଦୀ ତୀର ବନେ କାହିଁ ସ୍ଥାନେ ସ୍ଥାନେ ବିରଜଇ ବ୍ରହ୍ମ ଶାସନ
ପୁଣି ତୋ କୋଳେ,
ଛନ୍ତି ଯେ କେତେ ଦେବା ଦେବୀ,
କେ ଗିରି ପ୍ରାନ୍ତରେ କେବା କନ୍ଦରରେ କେ ରହେ ନଦୀ ଗର୍ଭ ଭେଦୀ ।୨।
× × ×
କଳ୍ପନାର ପୋତେ କାଳ ପ୍ରତି ସ୍ରୋତେ ଭସି ନିରେଖଇ ଏମାନ
ଇତିହାସେ ଯାର ନାହିଁ ସମାଚାର କବି କାବ୍ୟେ ହିଁ ନାହିଁ ସ୍ଥାନ
ଏକି ବିଚିତ୍ର
ମଣଇଁ ମୋ ହୃଦ ରଜ୍ୟରେ
ଏକା ଯା ପୁରଣ ଗାଏ ତୋର ନାମ ତାହା କି ନ କହୁ ଆନରେ ।୩୧।

ଧନ୍ୟ ତୋର କୀର୍ତ୍ତି ଧନ୍ୟ ତୋ ସସ୍ମୃତି ଧନ୍ୟ ଧନ୍ୟ ତୋର ମହିମା
ଧନ୍ୟ ତୋ ଏ ଭବ ସରିତରେ ନାବ ଚଳାଇବା ନାହିଁ ଉପମା

ମୁଖେ କି ଅବା
କହିତେ ହେବି ମୁଁ ଭଜନ,
ରଖ ମା ଶରଣ ଭଣେ ଦୀନାର୍ଜ୍ଜୁନ ତୋ ଗୁଣ ଗାଇ ଯାଉ ଦିନ ।୩୨।

—: ନାବେ ନାବିକାର କୀର୍ତ୍ତି ଉଦନ୍ତ :—

ଭଗବାନ କୃଷ୍ଣ ଦ୍ୱାପୟନ ବେଦବ୍ୟାସଙ୍କ ଜନ୍ମ ଚରିତକୁ ନେଇ ଆଠଗୋଟି ଛାନ୍ଦରେ "ନାବେ ନାବିକାର କୀର୍ତ୍ତି ଉଦନ୍ତ" କବିଙ୍କ ଲେଖନୀରେ ପ୍ରସ୍ଫୁଟିତ ହୋଇ କବିଙ୍କୁ ଧନ୍ୟ କରିଅଛି ।

ନାଗର ବୃତାନ୍ତ (ରାଗ-ମାଳବ)

ନାଗର ବୃତାନ୍ତରେ କବି ଶ୍ରୀ ଅର୍ଜ୍ଜୁନ ରଜ ନାଗରର ପ୍ରକୃତି ଚିତ୍ରଣ ସହିତ ଏହାର ଐତିହାସିକ ଗାଥା ବର୍ଣ୍ଣନା କରିଅଛନ୍ତି । ଯଥା :

ଘେନିବେ କୋବିଦ ଜନେ ସ୍ଥିର କରି ଚିତ୍ତ
କିଛି କହୁଁ ନାଗରର ପୂର୍ବର ବୃତାନ୍ତ ।୧।

× × ×

ଏମନ୍ତେ ଏ ରାଜ୍ୟେ ତିନି ନୃପତି ନିଦାନ
ରହିଅଛି ଗୀତ ବନ୍ଧେ ଭଣେ ଦୀନାର୍ଜ୍ଜୁନ ।୧୪୮। (ନାଗର ବୃତାନ୍ତ)

ପାଞ୍ଚ ପାଇକା (ରାଗ-ମାଳବ)

ପାଞ୍ଚ ପାଇକାରେ କବି ଶ୍ରୀ ଅର୍ଜ୍ଜୁନ ରଜ ନାଗର ରାଜ୍ୟରେ କେଶରୀ ବଂଶ ରାଜତ୍ୱର ପତନ ପରବର୍ତ୍ତୀ ପାଞ୍ଚ ପାଇକା ଶାସନର ପ୍ରଚଳିତ ସାମାଜିକ ରୀତି ନୀତି ଚିତ୍ର ଚିତ୍ରଣ କରିଅଛନ୍ତି । ଉକ୍ତ ଶାସନର କ୍ଷୀଣ ପ୍ରଭାବ ଏ ପର୍ଯ୍ୟନ୍ତ ସୁନ୍ଦରଗଡ଼ ବ୍ରାହ୍ମଣ, ଭୂୟାଁ ଏବଂ ବିଞ୍ଝିଆ ସମାଜରେ ଅନୁଭୂବ ହେଉଅଛି । ଯଥା :

ଦୈବୀ ଦୁର୍ବିପାକେ ଲୁପ୍ତ ଯାନ୍ତେ ରଜବଂଶ
ପାଇକେ ସମର୍ପି ରଜ୍ୟ ରଣୀ ଦେଲେ ଝାସ ।୧।

× × ×

ଏମନ୍ତ ଶାଶନ କେତେ କାଳ ଗଲ ବହି
ନାଗର ଚଳିଲ ଗୀତେ ଦୀନାର୍ଜ୍ଜୁନ କହି ।୪୪।

—o—

## ଖେଦୋକ୍ତି (ଗଗ–ଆହାରୀ)

କବି ଶ୍ରୀ ଅର୍ଜୁନ ଗଜ ବଣାଇରର କଲେଇ ପୋଷ ଗ୍ରାମରେ ଜନ୍ମଗ୍ରହଣ କରିଛନ୍ତି । ଆବାଲ୍ୟରୁ ଏପର୍ଯ୍ୟନ୍ତ ନାଗର କୋଳରେ ଲାଳିତ ପାଳିତ ହୋଇ ନାଗରର ସେବାରେ ନିଜକୁ ଉତ୍ସର୍ଗ କରି ଅଛନ୍ତି । ପ୍ରାୟତଃ ୧୯୫୨ ମସିହାରେ ସ୍ୱର୍ଗତ ଜୟପାଳ ସିଙ୍ଗ ଙ୍କ ଓଡ଼ିଶା ଆଗମନକୁ ସ୍ଥାନୀୟ ନାଗର ବାସିନ୍ଦାଙ୍କ ସହିତ କବି ବିରୋଧ କରି ତାଙ୍କୁ କଳାପତକା ଦେଖାଇଥିବା ଗାଥା ଲେଖକ ଶୁଣିଅଛି ।

ନାଗରର ଲୁପ୍ତ ଗୌରବକୁ ପୁନଃ ଜାଗରିତ କରିବାକୁ ଯାଇ କବି ଖେଦୋକ୍ତି ଛଳରେ ନାଗର ମାତାର ପୂର୍ବ ଐତିହ୍ୟର ଯଶ ଗାନ କରି ଅଛନ୍ତି । ନାଗରର ଅନ୍ତଃକରଣରେ ଥିବା ମହାନ୍ ଉତ୍କଳୀୟ ସଂସ୍କୃତିକୁ ଧ୍ୱଂସ କରୁଥିବା ଚକ୍ରାନ୍ତକାରୀମାନଙ୍କ ପ୍ରତି ସଜାଗ ରହିବା ପାଇଁ ମାତାକୁ ଖେଦୋକ୍ତି ଛଳରେ ପ୍ରାର୍ଥନା କରିଅଛନ୍ତି । ପରିଶେଷରେ ମହାନ ଉତ୍କଳୀୟ ସନ୍ତାନମାନଙ୍କ ଅମର ଗାଥା ନାଗର ମାତା ମୁଖରୁ ଶୁଣି ଆତ୍ମ ସନ୍ତୋଷ ଲଭ କରିବା ପାଇଁ ନିବେଦନ କରିଅଛନ୍ତି । ନିମ୍ନୋକ୍ତ ପଦ୍ୟାଂଶ ଗୁଡ଼ିକରୁ କବିଙ୍କର ଭବ ସହଜରେ ପରିଲକ୍ଷିତ ହୁଏ । ଯଥା :—

କେତେ କେତେ ଖର କେତେ ବର୍ଷାଧାର କେତେ କେତେ ଶୀତକୁ
ସହି କେତେ ଝଞ୍ଜା ବାତ ତୋଫାନ ସହିତ ଘଡ଼ଘଡ଼ି ଅଙ୍ଗେ ନିଭଇ
ମାୟେ ଗୋ
ତୁହି ତୋ ସୁତ ସୁତା ହିତେ
ରଖିଛୁ ଯତନେ ବିଭବ ରତନେ ଜଳେ ସ୍ଥଳେ ଗିରି ବନସ୍ତେ ।୧।

× × ×

ଚଣ୍ଡାଳ ବ୍ରାହ୍ମଣ ଅବା ଆନଜନ ଯେ ଆସେ ଘରକୁ ତୋର
ଅତିଥିରେ ଗଣି ପୁତ୍ର ପ୍ରାୟେ ମଣି କରୁ ସ୍ନେହେ ସମାଦର ଗୋ
ଜନନୀ
ଗ୍ରାହଂସ୍ଥ୍ୟ ବିଧାନ ପାଳି ଗୋ
ନାମ କୁଳ ଗୋତ୍ର ନୋହୁ ପଛେ ଜ୍ଞାତ ପାଳୁ ଦୂରଗତ ବୋଲି ଗୋ ।୧୦।

× × ×

ତୋ କୋଳ୍ରୁ ଜନମ ଲଭି ପଣ ପଣ ଛନ୍ତି ତ କେତେ ଗୁଣିଗଣ
ଯା ଦେଖିଛୁ ନେତ୍ରେ ଥିଲେ ଏ ଜଗତେ ଗୁଣିଗଣରେ ହୋଇ ଗଣ୍ୟ
ମାୟେ ଗୋ
ମାଦ୍ରୀ କାଲେ ମେଣ୍ଡା ଫଙ୍କାର
ବିପ୍ର ଅମାତ କୁଣ ପ୍ରଧାନ ତୁଲେ ଥିଲେ ତ କେତେ ପରିକାର ।୧୬।
ସ୍ୱାଧୀନତା ପାଇଁ କିଏ କେତେ କାହିଁ କରି କି ନାହିଁ କେତେ କଥା
ରଖିଛନ୍ତି କୀର୍ତ୍ତି ତୋ କୋଳେ ଯା ରଚି ଅଦ୍ୟାପି ଚଳଇ ଯେ ପ୍ରଥା
ମାୟେ ଗୋ
ବନ୍ଦୀ ଶାଳେ ଶାଳେ ଦେଖତ
ମିଳି ବନ୍ଦୀଗଣ ରଚେ ଯା ଉଦ୍ୟାନ ମାଦ୍ରୀ କାଲେଙ୍କ ଏ ନିର୍ଦ୍ଦେଶ ।୧୭।

× × ×

ଜନ୍ମଭୂମି ଜନ୍ମଦାତ୍ରୀରେ ମମତା ଯାହୃଦେ ଉପୁଜି ନାହିଁ
ତାରେ ଆଣି ଗୁଣି ଗଣରେ ଗଣିବା ବିଡ଼ମ୍ବନା ଏକା ସେହି ଗୋ
ଜନନୀ
ନ ରସିବୁ ତୁହି ତହିଁ ଗୋ
ଅମହତ ଜନ ଦ୍ୱିଭିକ୍ଷୀ ବଚନ ଯେତେ ଯାଉ ପଛେ ଗାଇ ଗୋ ।୪୫।

× × ×

ଧର୍ମ ଛଡ଼ା ଘରବୁଡ଼ା ନିଶାଖୋର ମିଛୁଆ ଯେ ଅଲଜୁକ
ଅଥବା ଗାଲୁଆ ଡ଼ିଙ୍ଗର କଳିହା ଯୁଆ ଖୋର ଯେତେ ଲୋକ ଗୋ
ଜନନୀ
ତାରେ କେବେ ନ ରସିବୁ ଗୋ
ବ୍ରହ୍ମ ପଦେ ଧ୍ୟାନ ଲଗାଉ ଥିଲେ ହେଁ ଦୂରରୁ ଯୁହାରି ଯିବୁ ଗୋ ।୪୮।

× × ×

ନାହିଁ ଖାରବେଳ ନାହିଁ କପିଳେନ୍ଦ୍ର ନାହାଁନ୍ତି ପୁରୁଷୋତ୍ତମ
ନାହିଁ ପଞ୍ଚସଖା ନାହିଁ ଦୀନକୃଷ୍ଣ ସମ୍ରାଟ ଉପେନ୍ଦ୍ର ଭଞ୍ଜ ଗୋ
ଜନନୀ
ପଠାଣୀ ସାମନ୍ତ ବାଣି ଗୋ
ଶୁଣାଇ ହରଷ କରୁଥିଲୁ ମାତ ଏବେ କିମ୍ପା ହେଉ ତୁନି ଗୋ ।୫୩।

ନାହିଁ ମଧୁବାବୁ ନାହିଁ ଗୋପବନ୍ଧୁ ପୁଣିନାହିଁ ବ୍ୟାସ କବି
ନାହିଁ ଗଙ୍ଗାଧର ନାହିଁ ମଧୁ ରଓ ବିଧିତ କଲା ଅବିଧି ଗୋ
ଜନନୀ
ଗଲେଣିତ ପରଲୋକେ ଗୋ
ରଖି ଯାଇଛନ୍ତି ଜାତି ସ୍ଵାର୍ଥ ନୀତି ଦେଖୁଛୁ ଯା ତୁହି ନେତ୍ରେ ଗୋ ।୨୪।
ସେ ପଥେ ତୋ ସୁତେ ଚଳା ଅନୁବ୍ରତେ ସତ ଧର୍ମ ଉଠୁ ଜାଗି
କରେ ମା ପ୍ରଣତି ମାଗୁଣୀ ଏତିକି ଭବେ ହେବ ଅନୁରାଗୀ ଗୋ
ଜନନୀ
ଭକ୍ଷେ ଦୀନାର୍ଜ୍ଜୁନ ଗୀତେ ଗୋ
ରହି-ଥାଉ ଯଶ ଅକ୍ଷୁର୍ଣ୍ଣତା ଭବେ ସିଦ୍ଧି ଲଭି ଏ ଜଗତେ ଗୋ ।୫୨।
ତା ୧।୨।୮୭

—: ୦ :—

କବି ଶ୍ରୀ ଅର୍ଜ୍ଜୁନ ରାଜଙ୍କ ଉପରେ ଏକ ସ୍ପଷ୍ଟୀକରଣ —

ନାଗରର କଳେବର ବୃଦ୍ଧି ଦୃଷ୍ଟିରୁ କବି ଶ୍ରୀ ଅର୍ଜୁନ ରାଜଙ୍କ ବୈଚିତ୍ର୍ୟ-ମୟ ଜୀବନୀ ଏବଂ ତାଙ୍କ ରଚିତ ରଚନାବଳୀର ସାମ୍ୟକ୍ ପରିଚୟ ଦେଇ ଲେଖକ ସଂପୂର୍ଣ୍ଣ ତୃପ୍ତି ଲାଭ କରିପାରୁ ନାହିଁ । ଭଗବତ୍ କୃପା କେଳଙ୍କର ଇଚ୍ଛା ଅନୁକୂଳ ହେଲେ କବିଙ୍କ ଉପରେ ଏକ ଉପନ୍ୟାସ ଲେଖିବା ପରିକଳ୍ପନା ପୂର୍ଣ୍ଣ ହେବ ।

# ନାଗରର ଅମ୍ଳାନ ବଣ କୋରୁଆଁ
# କବ ଶ୍ରୀ ରତ୍ନେଶ୍ବର ପାଣିଗ୍ରାହୀ

ଜୀବନ :-

ଉଷର ଗ୍ରାମର ସ୍ଵର୍ଗତ ବାଣେଶ୍ଵର ପାଣିଗ୍ରାହୀଙ୍କର ଦୁଇପୁତ୍ର । ବଡ଼ ଗୋବିନ୍ଦ ଏବଂ ସାନ ଗୋପୀନାଥ ।

ଗୋପୀନାଥ ପାଣିଗ୍ରାହୀ ଅହିରଛେ (ଆଧୁନିକ ଇସ୍ପାତ ନଗରୀ ସେକ୍ଟର ତିନି ଅଞ୍ଚଳ) ନିବାସୀ ହରିହର ପଣ୍ଡାଙ୍କ କନ୍ୟା କୁମାରୀ ସୀତାଦେବୀଙ୍କୁ ବିବାହ କରନ୍ତି । ଅଭିନ୍ନ, ମିତ୍ର, ରତ୍ନେଶ୍ଵର ତିନିପୁତ୍ର ଏବଂ ଶ୍ରୀମତୀ, କୌଶଲ୍ୟା

ଦୁଇ କନ୍ୟା ଗୋପୀନାଥ ସାତାଙ୍କର କୋଳ ମଣ୍ଡନ-କରନ୍ତି । ଏହାର କିଛିକାଳ ପରେ ପିଲମାନଙ୍କର ଦାୟିତ୍ୱ ସ୍ୱାମୀଙ୍କୁ ସମର୍ପଣ କରି ସୀତାଦେବୀ ଇହଲୀଳା ସାଙ୍ଗ କରନ୍ତି ।

ପିଲମାନଙ୍କ ଲଳନ ପାଳନ ପାଇଁ ଗୋପୀନାଥ ପୁନଷ୍ଚ ଗିଉଁ ଗ୍ରାମ ନିବାସୀ ଗଞ୍ଜୁ ସଦାଶିବ କରଙ୍କର କନ୍ୟା କୁମାରୀ ସୀତାଦେବୀ ଦ୍ୱିତୀୟଙ୍କୁ ବିବାହ କରନ୍ତି । ଏହାଙ୍କ କୋଳରେ ଏକ ପୁତ୍ର ବିଦ୍ୟାଧର ଏବଂ ଦୁଇ କନ୍ୟା ଉର୍ବଶୀ ଓ ସାଧବାଣୀ ଜନ୍ମ ନିଅନ୍ତି ।

ଗୋପୀନାଥ ପାଣିଗ୍ରାହୀ ନାଗର ଜମିଦାର ମନ୍ଦିର ପୂଜାରୀ ହୋଇ ପରିବାରର ଭରଣ ପୋଷଣ କରନ୍ତି । କିଛିକାଳ ଅନ୍ତେ ପୂଜାରୀ କାର୍ଯ୍ୟରୁ ଅବ୍ୟାହତି ନେଇ ସ୍ୱ ଅର୍ଜିତ ଭୂ-ସମ୍ପତ୍ତି ଏବଂ ପୁରୋହିତ କର୍ମରେ ନିଜକୁ ନିୟୋଜିତ କରନ୍ତି । ପରିଣତ ବୟସରେ ଗୋପୀନାଥଙ୍କର ସ୍ୱର୍ଗବାସ ହୁଏ । ଇତି ମଧ୍ୟରେ ଏହାଙ୍କ ପରିବାର ଗହଣରୁ ପୁତ୍ର ମିତ୍ର କନ୍ୟା ଶ୍ରୀମତୀ ଏବଂ କୌଶଲ୍ୟାଙ୍କର ଦେହାନ୍ତ ହୋଇଯାଇଅଛି । ଦ୍ୱିତୀୟ ସୀତା ଦେବୀଙ୍କ ସହିତ ଅନ୍ୟମାନେ ଜୀବୀତ ଅଛନ୍ତି ।

ଶ୍ରୀ ରତ୍ନେଶ୍ୱର ପାଣିଗ୍ରାହୀ ଗ୍ରାମ ଚାଟଶାଳୀରେ ମାତ୍ର ଛଅମାସ ପଢ଼ି ପାଠରେ ଡ଼ୋରି ବାନ୍ଧନ୍ତି । ବାଳକ ରତ୍ନେଶ୍ୱରଙ୍କ ପୁରାଣ ଗାଇବା ପାଲ ଦେଖିବାରେ କ୍ରମାଂଶ ଅନୁରାଗ ବଢ଼ିଚାଲେ । ଯୌବନରେ ପାଲଦଳ ଗଢ଼ି ନିଜେ ତହିଁର ଗାୟକ ହୋଇ ଉତ୍ସବର ଆଖ ପାଖ ଅଞ୍ଚଳରେ ପାଲ ପରିବେଷଣ କରନ୍ତି । ସମୟକ୍ରମେ ଗାୟକ ରୂପେ ସମାଜରେ ପରିଚିତ ହୁଅନ୍ତି ।

ନାଗଫେଣୀ ନିବାସୀ ସ୍ୱର୍ଗତ ଦୀନବନ୍ଧୁ ପଣ୍ଡାଙ୍କ କନ୍ୟା ଇନ୍ଦିରାଙ୍କ ସହିତ ରତ୍ନେଶ୍ୱରଙ୍କର ବିବାହ ହୁଏ । ପୁଷ୍ପ, ମୈଥିଳୀ, ଦମୟନ୍ତୀ, କସ୍ତୁରୀ ଏବଂ ସ୍ମୃତି ପାଞ୍ଚ କନ୍ୟା କ୍ରମାନୁଯାୟୀ ରତ୍ନେଶ୍ୱର ଇନ୍ଦିରା କୋଳ ମଣ୍ଡନ କରନ୍ତି । ନିଜର କୌଳିକ ବୃତ୍ତି ସହିତ ପିତୃ ଅର୍ଜିତ ଭୂ-ସମ୍ପତ୍ତିରୁ ଯାହାପାଆନ୍ତି ତହିଁରେ ପରିବାରଟି ଭଲରେ ଚଳିଯାଏ । ସବୁଥାଇ କିଛି ନଥିବା ଭଳି ପୁତ୍ର ଚିନ୍ତାରେ ସ୍ୱାମୀ ଏବଂ ସ୍ତ୍ରୀ ଶିବ ଶିବାନୀଙ୍କ ଆରାଧନାରେ ମଗ୍ନ ରହି ସମୟ ଅତିବାହିତ କରି ଚାଲନ୍ତି । ଏପରି ଦିନ ଗଡ଼ିଚାଲେ । ବିଭୁ କୃପାରୁ ରତ୍ନେଶ୍ୱର ପ୍ରାୟତଃ

ପଚାଶ ବର୍ଷ ବୟସରେ କବିତା ଲେଖା ଆରମ୍ଭ କରନ୍ତି । ପ୍ରାରବ୍ଧ କର୍ମ ବଶତଃ କବିଙ୍କ ଲେଖନୀ ଚାଳନା ଶିଥିଳ ହୋଇପଡ଼ିଛି ।

ପୁଷ୍ପ, ମୌଥିଳୀ, ଦୟୟନ୍ତୀଙ୍କ ବିବାହ ସମ୍ପନ୍ନ କରାଇ କସ୍ତୁରୀ ଏବଂ ସ୍ମୃତିର ବିବାହ ପାଇଁ କବି ଚିନ୍ତିତ ଅଛନ୍ତି । ଶିବାନୁଗ୍ରହରୁ ମନ୍ଦିର ତ୍ୟାମ୍ ଶିବାଳୟ ସ୍ୱପ୍ନେଶ୍ୱରଙ୍କ ସେବାରେ ରତ୍ନେଶ୍ୱର ନିଜକୁ ଉତ୍ସର୍ଗ କରିଅଛନ୍ତି । କବି ବର୍ତ୍ତମାନ ପ୍ରାୟତଃ ଅଣଷଠୀ ବର୍ଷ ବୟସରେ ପଦାର୍ପଣ କରିଅଛନ୍ତି ।

ଶ୍ରୀ ରତ୍ନେଶ୍ୱର ପାଣିଗ୍ରାହୀଙ୍କୁ ଏ ଲେଖକ ଅନେକଦିନୁଁ ଦେଖିଛି । ତାଙ୍କ କବିତାର ପରିଚୟ ଏବେ ପାଇ ଖୁସିହୋଇଅଛି । କବି ତାଙ୍କ ସ୍ୱରଚିତ କବିତାଗୁଡ଼ିକର ପୁନଃ ଉଦ୍ଧାର କାର୍ଯ୍ୟ ତାଙ୍କର ସମ୍ପର୍କୀୟ ଭାଇ ଶ୍ରୀ ନିତ୍ୟାନନ୍ଦ ପତ୍ରୀଙ୍କୁ ଦେଇଅଛନ୍ତି । ଲେଖକ ଶ୍ରଦ୍ଧେୟ ନିତ୍ୟାନନ୍ଦ ଠାରୁ କବିଙ୍କ ସ୍ୱହସ୍ତ ଲିଖିତ କବିତା ଆଦିଆଣି ସେଗୁଡ଼ିକରୁ କେତେକରପରିଚୟ ନିମ୍ନରେ ଦେଉଅଛି ।

ରଚନାର ପରିଚୟ : କବି ଶ୍ରୀ ରତ୍ନେଶ୍ୱର ପାଣିଗ୍ରାହୀଙ୍କର ସମସ୍ତ କବିତା ଭକ୍ତିରସ ଉପରେ ଆଧାରିତ । ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ଶେଷ ସୋପାନରେ କବି ଷୋହଳଟି ଚଉତିଶା ବିଭିନ୍ନ ରାଗରେ ରଚନା କରିଅଛନ୍ତି । ଲେଖକ କବି ମହୋଦୟଙ୍କ ସମ୍ମତିକ୍ରମେ ତାଙ୍କର ଚଉତିଶାଗୁଡ଼ିକୁ "ରତ୍ନେଶ୍ୱର ଚଉତିଶା" ନାମରେ ନାମିତ କରି ତହିଁରୁ କେତେକ ପଙ୍କ୍ତି ଏଠାରେ ଉପସ୍ଥାପନ କରୁଅଛି ।

କବି ଶ୍ରୀ ରତ୍ନେଶ୍ୱର ପାଣିଗ୍ରାହୀ ତାଙ୍କ ରଚିତ "ରତ୍ନେଶ୍ୱର ଚଉତିଶା"ରେ ପ୍ରଥମେ 'ନ' ଅକ୍ଷରକୁ ଆଦ୍ୟାନୁପ୍ରାସ ରୂପେ ଗ୍ରହଣ କରି ମଙ୍ଗଳାଚରଣରେ ମଙ୍ଗଳା ସ୍ତୁତୀ, ଏହାପରେ 'କ' ଅକ୍ଷରକୁ ଆଦ୍ୟାନୁପ୍ରାସ ରୂପେ ଗ୍ରହଣ କରି ନିଜର ଅଭିଳାଷ ମଙ୍ଗଳାଙ୍କୁ ଜଣାଇଅଛନ୍ତି । ଯଥା :

ନମସ୍ତେ ମଙ୍ଗଳା ମାଗୋ ହରଣ ଘରଣୀ
ନମସ୍ତେ ମଙ୍ଗଳା ମାଗୋ ମହିଷା ମର୍ଦ୍ଦିନୀ ।।

× × ×

ନମସ୍ତେ ମଙ୍ଗଳା ମାଗେ ଯାହା ତୁ କଣ୍ଠର ।
ନମସ୍ତେ ମଙ୍ଗଳା ମାଗୋ ଦାନ ହୁଏ ତୋର ।।

ସେ ସମସ୍ତ ଲେଖୁଅଛି ଦୋଷ ମୋର ନାହିଁ ।
ମଙ୍ଗଳାଙ୍କ ପାଦପଦ୍ମେ ରତ୍ନେଶ୍ୱର ଧ୍ୟାଇ ।।
ରଚନାକାଳ ତା ୧୫ । ୧ । ୧୯୮୧

କର ଯୋଡ଼ି ଜଣାଉଛି ମୁଁ ମଙ୍ଗଳା ପୟର ।
କରି ଅନୁଗ୍ରହ ମାତ ଗୋ କଣ୍ଠେ ବିଜୟ କର ।
× × ×
କରିବା ପାଇଁ କି ଚୌତିଶା ମନେ ମୋର ସଂକଳ୍ପ ।
କର ଯାହା ତୋର ଇଚ୍ଛା ମା ମୁଁ ତ ଅଟଇ ଅଳ୍ପ ।।

× × ×
କର ଯୋଡ଼ି ପଦେ ଜଣାଣ-କଣ୍ଠ ଅଛଇ ତୋର ।
କର ମୋ କାମନା ପୂରଣ ମାଗେ ଶ୍ରୀ ରତ୍ନେଶ୍ୱର ।।
ରଚନାକାଳ ତା ୨୨-୧-୧୯୮୧
ଶୁକ୍ରବାର

କବି ରତ୍ନେଶ୍ୱରଙ୍କ ଚଉତିଶାଗୁଡ଼ିକ ମଙ୍ଗଳା, ଜଗନ୍ନାଥ, ସୀତା, କୌଶଲ୍ୟା ରାଧା ଏବଂ ଯଶୋଦାଙ୍କ ଉପରେ କବିଙ୍କର ଜାତ ହୋଇଥିବା ବିବିଧ ଭାବକୁ ନେଇ ରଚିତ ହୋଇଅଛି ।

## ଚଉତିଶା (ଚଉଦ ଅକ୍ଷରୀ ବୃତ୍ତ)

କର ଅନୁଗ୍ରହ ମୋତେ ନମସ୍ତେ ମଙ୍ଗଳା ।
କରି ଅନୁଗ୍ରହ ମାଗୋ ପଦ କର ଖୋଲ ।।
ଖର୍ବ ଖର୍ବ ବେନି ପାଦ ଦିଶଇ ଶୋଭନ ।
ଖଞ୍ଜା ମୁଦିମାନ ଶୋଭ ଅଙ୍ଗୁଳି ପବେଣ ।।
ଗଜ ସରି ପୃଷ୍ଠେ ମାଗୋ ଭ୍ରମଣ ତୋହର ।
ଗଳାରେ ଶୋଭ ପାଉଛି ମନ୍ଦାରର ମାଳ ।।
ଘୋର ନିଶାକାଳେ ମାଗୋ କରୁତ ଭ୍ରମଣ ।
ଘେରି ଚୌପାଶେ ଥାଆନ୍ତି ରୁଣ୍ଡମୁଣ୍ଡ ଯେ ଗଣ ।।
× × ×

ଧ୍ୟାଉଅଛି ତୋ ପୟର ମନଟି ମୋହର ।
ଧ୍ୟାଇଅଛି ପୂର୍ଣ୍ଣକର ଚୌତିଶା ସାଗର ॥

× × ×

ହର ମୋହିନି ମାତ ହର ମୋ ବେଦନା ।
ହରି ଜଗତରେ ରଖ ତୋର ନାମ କିନା ॥
କ୍ଷମା କର ଗୋ ଗୀତକୁ ଆଗୋ ମହାମାଇ ।
କ୍ଷମ ରତ୍ନେଶ୍ୱର ପଦେ ଶରଣ ପଶଇ ॥

ଚଉତିଶା (ଧୀରେ ଘେନ କାନରେ ବୁଝେ)

କଞ୍ଜନୟନ ଚରଣ ତଳରେ କେ ଜଣେ
କରଇ ବୀନତି ତାଙ୍କ ଶ୍ରୀ ପଦ୍ମଚରଣେ
ହେ ପ୍ରଭୁ କରୁଣା ତୁମ୍ଭର ॥

ଖଗ ଈଶ୍ୱର ହେ ନାଥ ଖର ସ୍ରୋତେ ମୁହିଁ
ଖଇ ପ୍ରାଏ ଯାଏଁ ବହି ରଖ ଭବଗ୍ରାହୀ
ହେ ପ୍ରଭୁ କରୁଣା ତୁମ୍ଭର ॥

× × ×

ନିଜାଞ୍ଚଳେ ରହି ଭକ୍ତେ କୈବଲ୍ୟଟି ଦାନ
ନିରତେ କୈବଲ୍ୟ ପାଇଁ ଭବେ ମୋର ମନ
ହେ ପ୍ରଭୁ କରୁଣା ତୁମ୍ଭର ॥

ଟେକିଅଛି ବେନିବାହୁ ଭକ୍ତଙ୍କ ନିମିତ୍ତ
ଟେକାବାହୁ ବିଜେ କିବ କରୁଚି ଆଶ୍ରିତ
ହେ ପ୍ରଭୁ କରୁଣା ତୁମ୍ଭର ॥

× × ×

ହରି ହରି ବୋଲି ପିଣ୍ଡୁ ଜୀବ ଯାଉ ମୋର
ହରି ହେ ହରି ଗୁହାରି ହରଟି ଶ୍ୱତ୍ୱର
ହେ ପ୍ରଭୁ କରୁଣା ତୁମ୍ଭର ॥

କ୍ଷମାନିଧି କ୍ଷମା କର ଏ ଦାସର ସର
କ୍ଷମ ଅପରାଧ ମୋର ଭକ୍ଷେ ରତ୍ନେଶ୍ୱର
ହେ ପ୍ରଭୁ କରୁଣା ତୁମ୍ଭର ।।

ଚଉତିଶା (ମନବୋଧ ଚଉତିଶା ବୃତ୍ତେ)

କରନ୍ତି ସୀତା ଶୋକ ଅଶୋକ ବନେ ।
କର କପାଳେ ଦେଇ ଦୁଃଖିତ ମନେ ଗୋ ।।
ଖର ବରଷା ଶୀତ ନୟନୁ ନିର ।
ଖସି ନାହିଁରେ ପଡ଼ି ନଇ ପ୍ରକାର ଗୋ ।।

× × ×

ଅନୁକ୍ଷଣରେ ରାମ ରାମ ବୋଲିଣ ।
ଅନସନରେ ରହି କାଟନ୍ତି ଦିନ ଗୋ ।।

× × ×

ହରି କରିଣ କୃପା ସୀତା ଉପର ।
ହରିଣ ଦୁଃଖ ତାଙ୍କୁ କର ଉଧାର ଗୋ ।।
କ୍ଷମା ସାଗର ହରି କ୍ଷଣେ ଉଥର ।
କ୍ଷଣକେ ନିଅ ତାରି ଏ ରତ୍ନେଶ୍ୱର ଗୋ ।

କଉସଲ୍ୟା ଚଉତିଶା
( ଧିରେ ଘେନ ବୃତ୍ତେ )

କୌଶଲ୍ୟା କରନ୍ତି ଶୋକ ଅଯୋଧ୍ୟା ପୁରରେ
କେଣେ ଛାଡ଼ିଗଲୁ ରାମ ପସି ବନ ଘୋରେ
ମୋ ଦୁଃଖି ସଙ୍ଗାଳିରେ ।।

× × ×

କ୍ଷଡ଼ିଲ ଜନନୀ ତୋର ଚିନ୍ତାର ସାଗରେ
କ୍ଷଜ୍ଞାଇବୁ ଆଉ କେତେ ଦିନ ରଘୁବୀର
ମୋ ଦୁଃଖି ସଙ୍ଗାଳିରେ ।।

ହର ପାର୍ବତୀଙ୍କ ସେବା କରି କରି ମୁହିଁ
ହରୁ ନାହାଁନ୍ତି ମୋ ଦୁଃଖ ବିଚିତ୍ର ମଣଇ
ମୋ ଦୁଃଖ ସଙ୍ଖାଳିରେ
କ୍ଷଣେ ନ ରୁଚଇ ମୋତେ ଶୟନ ଭୋଜନ
କ୍ଷଣେ ରହିଥାଅ ବୋଲେ ରତ୍ନେଶ୍ୱର ଜାଣ

## ସ୍ୱାତ୍ୟା ଚଉତିଶା

କ୍ରୋଧେ ବିକଳ ହୋଇ କାନ୍ଦି ସିତ୍ୟା କହଇ
କିଶ ବିହିଭଲେ ମୋର ଥିଲୁଟି ଲିହି ॥
ଖଳ ବିହି ବୋଲଉ ଖିରେ-ଖାର-ମିଶାଇ
ଖେଳଘର ଭଙ୍ଗି ବାଣେ ଅଟଇ ଦାଉ ॥
× × ×

ଝଟଚଇ ଆସିଣ ଝାସି ପଶେ ଗବଣ
ଝମଙ୍ଗାଇ ବାରି ବନ୍ଧେ ପାସେଣ ॥
ଠୋ ଠୋ ସେହି ବସିଣ ଠାରି କହେ ବଚନ
ଠକି କଥା କହ ସିତ୍ୟା ଭୁଲୁ ଯେସନ ॥
× × ×

ସତ୍ୟ ଯେବେ ଶାଗର ଶତ୍ୟ ଯେବେ ଭୁଧର
ସାପ୍ୟ ମୋର ଘେନ ଆରେରେ ଦଶସିର ॥
ହୋଇ ଆକୁଳ ଅତି ହସ୍ତ ଭଲେ ମାରନ୍ତି
ହରିବ ମୋ ଦୁଖ ବାଧେ ଦେଇଣ ଗତି ॥
କ୍ଷମା ଶାଗର ହରି କ୍ଷଣେ ନେବେ ଉଧରି
କ୍ଷଣେ ରତ୍ନେଶ୍ୱରକୁ ଯେ ନିଅଟି ତାରି ॥

## ଚଉତିଶା (ଫୁଲତୋଳା ବୃତ୍ତ)

କମଳ ବଦନି ଗଇ କରନ୍ତି କାରୁଣ୍ୟ ବିକଳ ହୋଇ
କେଣେ ଛାଡ଼ି ଗଇଟି ମାଧୋଇ । ମୋହନ ହେ
ଖିଆଲ ଥିଲ ମନର ଖଟିବ ଏ ଦାସୀ ପାଦତଳର ଗୋ
ଖଳ ବିହି କଲଟି ଅନ୍ତର । ମୋହନ ହେ
× × ×

ଥୟ ନୁହଁ ମନ ମୋର   ଥରଇ ଶରୀର କୃଷ୍ଣନାମର
ଥକା ହେଲଣି ମୋର ଶରୀର ।  ସଜନି ଗୋ
× × ×
ହରିବେ ଆସ୍ଥ ଦୁର୍ଗତି   ହର ବାରେ କିଛି ନୋହିବ କ୍ଷତି
ହରଷରେ ଭେଟିବ ଶ୍ରୀପତି । ସଜନି ଗୋ
କ୍ଷମାନିଧି ନାମ ତାର   କ୍ଷଣକେ କରିବେ ସେହୁ ଉଧାର
କ୍ଷମାକର କହେ ରନ୍ନେଶ୍ୱର ।  ସଜନି ଗୋ

**ଓଲଟ ଚଉତିଶା** (କଳାକଳେବର କହ୍ନାଇ ବୁଢ଼ୋ)

କ୍ଷମାନିଧି ନାମ ତୋହର  ଖିର ଶାଗରେ ଘର
କ୍ଷଣେ ନ ଦେଖୁ ତୁ ଭକତ  ଦୁଖ ତୋର ନେତ୍ରର ॥
ହିରନ୍ୟ କର୍ଶିପୁ ନାଶିଲ   ତୁମ୍ଭେ ସତ୍ୟ ଯୁଗର
ହରିଲ ପ୍ରହ୍ଲାଦ ଦୁଃଖକୁ ସ୍ତମ୍ଭ ହୋଇ ବାହାର ॥
ସତ୍ୟ ଯୁଗେ ମୁର ଦାରୁଣ ଦୁଖ ଦିଅନ୍ତେ ସୁର
ଶେଷ ନୃସିଂହ ରୂପରେ  ତାଙ୍କୁ କଲ ସଂହାର ॥
× × ×
ପୁରିଛ ସଂସାର ମଧ୍ୟରେ ଦେଖାନାହିଁ କାହାର
ପୁରିଛ ସକଳ ଜୀବରେ ଜାଣେ କି ମୂଢ଼ ନର ?
× × ×
ଅଣ ପୁରୁଷ ତୁ  ଯେଣୁଟି ଅନ୍ତ ନାହିଁ ତୋହର
ଅଣାକର ଅଙ୍ଗ ଶରୀରେ ନାହିଁ ଆକାର ଗାର ॥
× × ×
ଘରଟି ହୋଇଛି ତୁମ୍ଭରି ବଡ଼ ବଡ଼ ପଥର
ଘୂରୁଛି ଜନଙ୍କ ମସ୍ତକ ଅନ୍ତ ନ ପାଇ ତୋର
ଗଳାରେ ସୁନ୍ଦର ଦିଶଇ ନାନା ଫୁଲର ହାର
ଗହ ଗହ ନାଦ ଶୁଭଇ ଗର୍ଭଗିର ଭିତର ॥
ଖଗପତି ଖଗ ଆସନ ନାମ ତୋ ଖଗେଶ୍ୱର
ଖଟାଅ ମୋ ମନ ତୁମ୍ଭରି ପ୍ରଭୁ ପଦ୍ମ ପୟର ॥
କରୁଣା ସାଗର ହରି  ହେ କୃପା ନେତ୍ର ତୋହର
କୃପାବାରି ଦେଇ ତାରଟି ମୋତେ ଶ୍ରୀ ରନ୍ନେଶ୍ୱର ॥

ଗୁଳ୍ଚିଶ କୋଟି ପଦରେ ରଚିତ ଏକ ଓଲଟ ଚଉତିଶାରେ କବି ଶ୍ରୀ ରନେଶ୍ୱର ପାଣିଗ୍ରାହୀ ନିଜର ପରିଚୟ ଦେଇ ଲେଖିଅଛନ୍ତି:—

× × × ×

ଭଗି ଗହନ ପଥ                ଭବି ମୋର ହୃଦତ
ଭବି ହୃଦୟରେ ଭୟ ଜାତ ହୁଏତ
ବିସେଶରେଟି ଯାଣ                ବୟସରେ ଟି ସାନ
ବିଶେସ ସଭଙ୍କ ମୋତେ ମିଳେ ସମ୍ମାନ
ଫଟା କପାଳ କଥା                ଫାଟି ଗଲା ପାକ୍ଷଟା
ଫେର ଫାରେ ରହି କାଶ କ'ଟାଛବାଟା
ପିତା ମୋ ଗୋପିନାଥ                ପିତୃ ବାକ୍ୟ କାଳତ
ପର ସେଇ ହେଲେ ମୁହିଁ ହେଲି ଅନଥ

× × × ×

ଝିଅ ପାଞ୍ଚଟି ଦେଇ                ଝୀଙ୍ଗାସତି କଣ୍ଠାଇଁ
ଝର ନୋହିଲେ କି ଘର ହୋଇଛି କାହିଁ ।
ଜଉବନ ଗଳିଲ                ଜିବ ବିଅର୍ଥ ହେଲ
ଜଳାଞ୍ଜଳି ପଦେ ଦେବି ଜିବ ଘଚିଲ
ଛନ ଛନ ହୋଇଣ                ଛାନ୍ଦ ଗ୍ରୈପଦି ମାନ
ଛଛନ୍ଦେ ବେନି ଭଙ୍କେ ହେଲ ଜଣାଣ
ଚକାଡ଼ୋଳାଙ୍କୁ ଗୁହି                ଚିତ୍ତେ ଏହା ମାଗଇ
ଗୁଲିଜିବ ଜିବ ତୁମ୍ଭ ନାମକୁ ନେଇ

+ × +

ଉମାପତି କରୁଣା                କଲେ ମୋ'ଠାରେ କିନା
ଅଣାଇ ସେବକ ରୂପେ ରଖିଲେ ସିନା

× ×

କୃପା ମାତାଙ୍କ ଯାଣ                କଲି ଗିତ ରଚନ
କେତେ ଛାନ୍ଦ ଭଜନ ଯେ କେତେ ଜଣାଣ
ଓଡ଼ିଶାରେ ମୋ ଜନ୍ମ                ଓଡ଼ିଆ ମୁଁ ବ୍ରାହ୍ମଣ
ଓଁକାର ବିହୁନେ ଛଡ଼ା ନଜାଣେ ଆନ

ଏତେ ମାଗୁଣି ମୋର ଏ ମଙ୍ଗଳା ପୟର
ଏତିକି କରୁଣା ମାତ ରଖ ମୋ ପର
× × ×
ଅନ୍ତକ୍ଷଣରେ ରହି ଆଣ୍ଟ୍ର ପ୍ରାୟେଟି ହୋଇ
ଅନ୍ତକ୍ଷଣେ ରନେଶ୍ବର ଏହା ମାଗଇ

ଏହିଭଳି ଅନେକ ତଉତିଶା କବିଙ୍କ ଲେଖନୀ ସୃଷ୍ଟ କରିଅଛି । ଏତଦ୍ବ୍ୟତୀତ ନାନାବିଧ ଛନ୍ଦୋବଦ୍ଧ ରୀତିରେ ଶତାଧିକ ଭଜନ କବି ଶ୍ରୀ ରନେଶ୍ବର ପାଣିଗ୍ରାହୀଙ୍କ ଲେଖନୀରେ ପ୍ରସ୍ଫୁଟିତ ହୋଇ ନାଗରର ବଣ-ଭୁଇଁକୁ ସୁବାସିତ କରୁଅଛି ।

—:0:—

## ନାଗଗ୍ରର ସ୍ମରଣୀ ନାରୀ କବି ✓ ଜାନକୀ ପଣ୍ଡା ଜୀବନୀ—

ଉଷର ଗ୍ରାମର ଗଞ୍ଜୁ ବିଶ୍ୱେଶର ପଣ୍ଡା । ଏହାଙ୍କ ପ୍ରଥମ ସ୍ତ୍ରୀଙ୍କ ନାମ ଚମ୍ପାବତୀ । ଚମ୍ପାବତୀଙ୍କ କୋଳରେ ପଣ୍ଡାଙ୍କର ପ୍ରଥମ ପୁତ୍ର ପ୍ରହ୍ଲାଦ ଜନ୍ମନିଏ । ପୁତ୍ର ଜନ୍ମର ଅଳ୍ପକାଳ ପରେ ଚମ୍ପାବତୀ ସ୍ୱର୍ଗାରୋହଣ କରନ୍ତି । ପତ୍ନୀ ବିଚ୍ଛେଦର ନିଃସଙ୍ଗ ଜୀବନ ଯନ୍ତ୍ରଣାକୁ ଉପଶମ କରିବା ପାଇଁ ବିଶ୍ୱେଶ୍ବର ବେଲଡିହୀ ନିବାସୀ ବାସୁଦେବ ପଣ୍ଡାଙ୍କ କନ୍ୟା କୁମାରୀ ଜାନକୀଙ୍କୁ ଦ୍ୱିତୀୟ ବିବାହ କରନ୍ତି । ବିଶ୍ୱେଶ୍ବର ଜାନକୀଙ୍କ କୋଳ ମଣ୍ଡନ କରି ତିନି ପୁତ୍ର ଗଙ୍ଗାଧର, ଘନଶ୍ୟାମ, ନୀଳାମ୍ବର ଏବଂ ତିନି କନ୍ୟା ଗ୍ରନ୍ଦ, ସୁମିତ୍ରା ଓ ତ୍ରିପୁର ଜନ୍ମ ନିଅନ୍ତି । ପରିଣତ ବୟସରେ ପିଲମାନଙ୍କର ବ୍ରତ ବିବାହ ଇତ୍ୟାଦି କର୍ମ ସମ୍ପାଦନ କରି ବିଶ୍ୱେଶ୍ବର ପଣ୍ଡା ଶ୍ରୈଗଅଶୀ ବର୍ଷ ବୟସରେ ଇହଧାମ ତ୍ୟାଗ କରନ୍ତି ।

ପୁତ୍ର ଏବଂ ପୁତ୍ର ବଧୂମାନଙ୍କ ମେଳରେ ଜାନକୀଙ୍କର ଦିନ ଗଡ଼ି ଗ୍ଲଲେ । ଗୃହର ପ୍ରତ୍ୟହ ପୁରଣାଦି ପାଠ ଶ୍ରାବଣରେ ତାଙ୍କର ଶ୍ରଦ୍ଧା ବଢ଼େ । ପ୍ରଖର ଶୃତି ଶକ୍ତି ଯୋଗୁଁ ବିନା ଲେଖା ପଢ଼ାରେ ଜାନକୀ ପଣ୍ଡା ଗ୍ରାମର ସ୍ତ୍ରୀଲେକମାନଙ୍କ ସହିତ ପୁରଣ ଆଲୋଚନା କରନ୍ତି । ଐଶୀ ଶକ୍ତି କୃପାରୁ ତାଙ୍କର କବିତା ରଚନା ଶକ୍ତି ସ୍ଫୁରିତ ହୋଇ ବିକଶିତ ହୁଏ । ନାନାଦି

ଛନ୍ଦୋବଦ୍ଧ ମନ ଗଢ଼ା ସଙ୍ଗୀତ ଗାଇ ସେ ଶ୍ରୋତାମାନଙ୍କୁ ମୁଗ୍ଧ କରନ୍ତି । ଜୀବନ କାଳ ମଧ୍ୟରେ ସର୍ବଦା କବିତା ଏବଂ ସଂଗୀତ ତାଙ୍କ ମୁଖରୁ ନିଶ୍ରୁତ ହୋଇ ନାଗରନ୍ଟୁ ସଂଗୀତ ମୁଖର କରି ଗ୍ଲିଥାଏ । ଆଲୋଚ୍ୟ ଚରଣ ନାରୀ କବିଙ୍କର ଅନେକ ମନ ଗଢ଼ା କବିତା ଆବୃତ୍ତି ଲେଖକ ଉପଭୋଗ କରିଅଛି । କବିଙ୍କର ଦୁଇଗୋଟି କବିତା ଲେଖି ରଖିଥିଲ । ସେଗୁଡ଼ିକ ହଜିଯାଇଅଛି ।

ଛେଣ୍ଡ୍ ନିବାସୀ ଶ୍ରୀ ଧନପତି ପାଢ଼ୀଙ୍କ ସ୍ତ୍ରୀ ଶ୍ରୀମତୀ ତ୍ରିପୁର ପାଢ଼ୀ ଜାନକୀଙ୍କର କନିଷ୍ଠା କନ୍ୟା ଅଟନ୍ତି । ତ୍ରିପୁରଙ୍କ ଠାରୁ ତାଙ୍କ ମାତାଙ୍କ ମୁଖ ନିଶ୍ରୁତ ଏକ କବିତା ଉଦ୍ଧାର କରି ନିମ୍ନରେ ଉଲ୍ଲେଖ କରଯାଇଅଛି । କବିତାଟି ହେଲ :—

## ମା ସରସ୍ୱତୀ

ବାଣୀ ଗୋ ବେଗେ ଆସ । ସୁଲଳିତ ପଦ କହି ମୋ କଣ୍ଠେ ବସ (ଘୋଷା)

ବ୍ରହ୍ମାଙ୍କ ଦୁଲଣୀ ବୀଣା ଜିଣା ବାଣୀ
ଧବଳ ଚନ୍ଦ୍ର ବଦନୀ
ବିଚିତ୍ର ଟପର ଶିରେ ଶୋଭ ତାର
ସାର ସଂସାରକୁ ମଣ୍ଡିତ ଯଶ; ବାଣୀ ଗୋ ବେଗେ ଆସ ।
ଗଜ ମୋତି ହାର ଗଳାରେ ତୋହର
ଶୋଭବନ ହୃଦଦେଶ
ପୁସ୍ତକକୁ ଘେନି ବିଜୟ ଜନନୀ
ହୋଇଣ ନାନା ସୁବେଶ; ବାଣୀ ଗୋ ବେଗେ ଆସ ।
ପୟର ଅଳତା କରସି ଗୋ ମାତଃ
ଲଗାଅ ନୁପୁର ପାଶ ।
ତୁହି ଛିଙ୍କାଡ଼ିଲେ ଛଙ୍କାଡ଼ି ନ-ହୋଇ
ଦୃଢେ ରଖି ଗଳା-ଦେଶ, ବାଣୀ ଗୋ ବେଗେ ଆସ ।।
ଜାନକୀ ମାଗୁଣି ଘେନ ଗୋ ଜନନୀ
ମୋ କଣ୍ଠରେ କରି ବାସ
ଦେଖି ମୋ ବିଛଣା ବଜାଅଗୋ ବୀଣା;
ଦଣ୍ଡେ ଉଭ ହୋଇ ଗ୍ରମର ଢ଼ାଳିବି

ପାଦ ତଳେ ବାସ; ବାଣୀ ଗୋ ବେଗେ ଆସ;
ସୁଲଳିତ ପଦ କହି ମୋ କଣ୍ଠେ ବସ ॥

ସମୟ ଗଡ଼ି ଚାଲେ । ନାଗଗର ମାଟି ପାଣି ପବନରେ ଚାରଣ ନାରୀ କବିଙ୍କ ମନ ଗଢ଼ା କବିତା ସହିତ ପୂର୍ବସୂରୀମାନଙ୍କ ବହୁ କବିତା କବିଙ୍କ ସୁମଧୁର କଣ୍ଠରୁ ବିଚ୍ଛୁରିତ ହୋଇ ଉତ୍କଳ ଭାରତୀର ଯଶ ଗାନ କରି ଚାଲିଥାଏ । ନାଗଗରେ ଉତ୍କଳ-ଭାରତୀର ପଦ ସେବାରେ ନିମଗ୍ନ ରହି ନାରୀ କବି ଜାନକୀ ପତ୍ରୀ ଉଣେଇଶ ପଞ୍ଚାଅଶୀ ମସିହା ନଭେମ୍ବର ଚଉଦ ତାରିଖ, କାର୍ତ୍ତିକ ଶୁକ୍ଳପକ୍ଷ ଦ୍ୱିତୀୟା ଗୁରୁବାର ଦିନ ଉଷଗ କୋଳରେ ଚିର ନିଦ୍ରାରେ ଅନ୍ତିମ ନିଶ୍ୱାସ ତ୍ୟାଗ କରନ୍ତି ।

ନାରୀ କବି ଜାନକୀ ପତ୍ରୀଙ୍କ ଆଶିଷରୁ ତାଙ୍କର ସାନ ଝିଅ ଝିପୁରା ଏବଂ ନାତୁଣୀମାନେ କବିତା ରଚନା କରିବା ଜାଣନ୍ତି । କବିଙ୍କ ଉପରେ ତାଙ୍କର ନାତୁଣୀ ବିଦେଶିନୀ ସ୍ୱର୍ଗତା ଆଈ ବିଷୟରେ ପଦେ କବିତା ମୁଦ୍ରଣ କରାଇ ନିଜର ଶ୍ରଦ୍ଧା, ଭକ୍ତି ଓ ପ୍ରଣତି ସ୍ୱର୍ଗତ ଆତ୍ମାଙ୍କୁ ଅର୍ପଣ କରିଅଛନ୍ତି । ଉକ୍ତ କବିତାର କେତେକ ପଦରୁ ଆଈ ନାତୁଣୀଙ୍କର ମଧୁମୟ ସମ୍ପର୍କର ପରିଚୟ ଲକ୍ଷ୍ୟ କରାଯାଇପାରେ ।

"ବେଲର୍ଦ୍ଦି ଗ୍ରାମରେ ଜନ୍ମ ହୋଇଥିଲା
ଜାନକୀ ମୋହର ଆଈ
ବିଶ୍ୱେଶ୍ୱର ପତ୍ରୀ ସଙ୍ଗେ ଭଗିନୀକୁ
ବିଭା ଦେଲେ ତାଙ୍କ ଭାଇ ।୧।
ତିନି ଝିଅ ତିନି ପୁଅ ହୋଇଥିଲେ
ଗର୍ଭରୁ ତାହାର ଜାତ
ଗଙ୍ଗାଧର, ଘନ ଜ୍ୟେଷ୍ଠ ଦୁଇ ପୁଅ
ନୀଳାମ୍ବର ସାନ ସୁତ ।୨।
ଚନ୍ଦ୍ର ସୁମିତ୍ରାଯେ ବଡ଼ ଦୁଇ ଝିଅ
ଝିପୁରା ସବୁଠୁ ସାନ
କିଏ ଧର୍ମେ କିଏ ଅଧର୍ମେ ଚାଲନ୍ତି
ବୁଝି ନିଜ କର୍ମମାନ ।୩।

× × ×

ମାତା ପାଖେ ବସି ସାନ ପୁଅ ତାଙ୍କ
ଭଗବତ ପଢ଼ୁଥିଲେ
ସାନ ଦୁଇ ଝିଅ ନାତି ନାତୁଣୀ ଯେ
ଲୋତକ ଗଡ଼ାଉ ଥିଲେ ।୮।
ଯେଉଁଠାରେ ବସି ଅଜା ମରିଥିଲେ
ହାତେ ରେଖା ଗଣି ଗଣି
ଆଇ ପ୍ରାଣ ମଧ୍ୟ ସେହି ସ୍ଥାନେ ଗଲା
କର୍ଣ୍ଣେ ଭଗବତ ଶୁଣି ।୯।
ମାତା ଠାରୁ ବଡ଼ ସଂସାରେ କେ ଅଛ
ଜଗତରେ କେହି ନାହିଁ
ମାଆର ଶରଧା ମାଆର ମମତା
କେହି ଦେଇ ପାରେ ନାହିଁ ।୧୨।

× × ×

ସମସ୍ତଙ୍କୁ ଆଇ କହି ବୁଲୁଥାଏ
ମରେ କାର୍ତ୍ତିକ ମାସରେ
ତା କାମନା ପୂର୍ଣ୍ଣ କଲେ ଭଗବାନ
ନାତୁଣୀ ଲେଖେ ଗୀତରେ ।୧୭।
ଯେଉଁ ନଦୀ ତୀରେ ଦହନ ହୋଇଛି
ଆଇକୁ ମୋହର ନେଇ
ଶଙ୍ଖ ନାମେ ସେହି ନଦୀଟି ବିଦ୍ୟାତ
ଶୁଣ ମନ କର୍ଣ୍ଣ ଦେଇ ।୧୮।

× × ×

ମରିବା ସମୟେ ଧର୍ମ କର୍ମ ବିନା
ତୁମ ସଙ୍ଗେ ଏକା ଯିବ ।
ବନ୍ଧୁ ବାନ୍ଧବ ଯେ କେହି ଯିବେ ନାହିଁ
ନିଜର କର୍ମ ଭୋଗିବ ।୨୧।

× × ×

× × ×

ସରସ୍ୱତୀଙ୍କର ଦୟା ହୋଇବାରୁ
ଲେଖିଦେଲି ଦୁଇପଦ ।
ଚରଣରେ ତାଙ୍କ ମାଗୁଣି ଏତିକି
ଦାସୀ କର ଜଗତ୍ ମାତ ।୨୫।

× × +

ଉପସ୍ଥିତ ଭଇ ବନ୍ଧୁ ସହୋଦର
ସମସ୍ତେ ମୋହର ଶୁଣ
ବିଷ୍ଣୁ-ପଦେ ଆଇ ଦାସୀ ପରି ରହୁ
ନ ଲଭୁ ଆଉ ଜନମ ।୨୬।
ସମସ୍ତଙ୍କ ମୁଖେ ହରି ହରି ଡ଼ାକ
ସମାପ୍ତ କଲି ଲେଖନୀ
ଏ ଗୀତ ଲେଖଇ ଆଇର ନାତୁଣୀ
ନାମ ତାର ବିଦେଶିନୀ ।୨୮ ।

।ଇତି।
ଝୁନୁ



## ନାଗପୁରି ବଣ ମାଧବୀ ସାଦ୍ରୀ କବି (ନାଗପୁରିଆ)
## ଶ୍ରୀ ସୁନନ୍ଦ ସିଂହ ଗଉତିଆ

**ଜୀବନୀ:—**

ସୁନ୍ଦରଗଡ଼ ଜିଲ୍ଲା ହାତୀବାରି ସନ୍ନିକଟ ଲେଅଁଗମ ଗ୍ରାମରେ ପିତା ସ୍ୱର୍ଗତ ଭଉଆ ମାତା ✓ ହେମକୀଙ୍କ କୋଳରେ ସାଦ୍ରି କବି ଶ୍ରୀ ସୁନନ୍ଦ ସିଂହ ଗଉତିଆ ଉଣେଇଶିଶହ-ପନ୍ଦର ମସିହା କାର୍ତ୍ତିକ ଶୁକ୍ଳପକ୍ଷ ଚତୁର୍ଥୀରେ ଜନ୍ମ ହେଲେ ।

ଶିଶୁ ସୁନନ୍ଦ ସିଂହ ଗଉତିଆ ନିଜ ଗ୍ରାମରେ ଥିବା ଖ୍ରୀଷ୍ଟିଆନ ମିଶନ ସ୍କୁଲ୍‌ରେ ନେହି ମିଆଁ ଜଜ (ଖ୍ରୀଷ୍ଟିଆନ ମୁଣ୍ଡା)ଙ୍କ ଶିକ୍ଷକତାରେ ହିନ୍ଦୀ ପଢ଼ା ଆରମ୍ଭ କଲେ । ପରେ ଏହି ସ୍କୁଲ୍ ଓଡ଼ିଶା ସରକାର ହାତକୁ ନେଇ ଏହାକୁ ନିମ୍ନ ପ୍ରାଥମିକ ବିଦ୍ୟାଳୟ କଲେ । ଉକ୍ତ ବିଦ୍ୟାଳୟରେ ପୁରୁଷୋତ୍ତମ ପ୍ରଧାନ

ନିଯୁକ୍ତି ପାଇଲେ । ସୁନନ୍ଦ ସିଂହ ପୁରୁଷୋତ୍ତମ ପ୍ରଧାନଙ୍କ ପାଖରେ ଓଡ଼ିଆ ଶିକ୍ଷା ଆରମ୍ଭ କରି ଲୋଆଗମରେ ଚତୁର୍ଥ ଶ୍ରେଣୀ ଉତ୍ତୀର୍ଣ୍ଣ ହେଲେ । ଏହାପରେ ବିଶ୍ରା ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପଞ୍ଚମ ଓ ଷଷ୍ଠ ଶ୍ରେଣୀ ପଢ଼ି; ବିଦ୍ୟାଳୟ ପଢ଼ା ଶେଷ କଲେ । ଇତି ମଧ୍ୟରେ ଭଉଆ ପୁତ୍ର ସୁନନ୍ଦର ବିବାହ ଝିରପାଣି ନିବାସୀ ପୁରଣ ସିଂହଙ୍କ କନ୍ୟା ସହବତୀ ସହିତ ସମ୍ପନ୍ନ କଲେ । ବିଶ୍ରା ଶିକ୍ଷା ଶେଷ କରି ସୁନନ୍ଦ ସିଂହ ୧୯୩୮ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଲୋଆଗମ ଚିତାଗିଡ଼ି ଏବଂ ଯୋରଡ଼ା ନିମ୍ନ ପ୍ରାଥମିକ ବିଦ୍ୟାଳୟଗୁଡ଼ିକରେ ଶିକ୍ଷକତା କରି ଘରକଥା ବୁଝୁଥିଲେ ।

୧୯୪୭ ମସିହାରୁ ୧୯୫୩ ମସିହା ପର୍ଯ୍ୟନ୍ତ ସୁନନ୍ଦ ସିଂହ କଣ୍ଡାଝର ଗ୍ରାମରେ ଥିବା ନିଜ ପୈତୃକ ସମ୍ପତ୍ତିକୁ ଉକ୍ତ ଗ୍ରାମ ନିବାସୀ ଲେଢ଼ନର ବେଦଖଲରୁ ମୁକ୍ତ କରିବା ନିମିତ୍ତ ଚାକିରୀ ଛାଡ଼ି ଲେଢ଼ନ ବିରୁଦ୍ଧରେ ମକଦ୍ଦମା କଲେ । ମକଦ୍ଦମାରେ ଜିଣି ଜମିକୁ ମୁକ୍ତ କରି ଲୁଆଗମ ଛାଡ଼ି ସପରିବାର କଣ୍ଡାଝରରେ ବାସକଲେ ।

୧୯୫୩ ମସିହାରେ ହିନ୍ଦୁସ୍ଥାନ ଇସ୍ପାତ କର୍ତ୍ତୃପକ୍ଷ ରାଉରକେଲା ଇସ୍ପାତ କାରଖାନା ପାଇଁ ସୁନନ୍ଦ ସିଂହଙ୍କ କଣ୍ଡାଝର ଘର ଓ ଜମିକୁ ଅଧିକାର କଲେ । ତାଙ୍କୁ ଝିରପାଣି ପୁନର୍ବସତି କଲୋନୀରେ ବାସଚ୍ଛଲୀ ଯୋଗାଇ ଦେଲେ । ୧୯୫୯ ମସିହାରେ ସୁନନ୍ଦ ସିଂହ ଝିରପାଣିରେ ନୂତନ ଗୃହ ନିର୍ମାଣ କରି ସେହି ଗୃହରେ ବାସ କରିଅଛନ୍ତି । ଗୃହର ଆର୍ଥିକ ଅନାଟ ଯୋଗୁଁ ସେ ୧୯୬୨ ମସିହାରେ ରାଉରକେଲା ଇସ୍ପାତ କାରଖାନାରେ ଚାକିରୀ କଲେ ।

ସମୟର କଷାଘାତରେ ସୁନନ୍ଦ ସିଂହ ଗଉଟିଆଙ୍କର ଚାରି ପୁତ୍ର ଏବଂ ପାଞ୍ଚ କନ୍ୟା ମଧ୍ୟରୁ; ଚତୁର୍ଥ ଗର୍ଭ ଏକମାତ୍ର କନ୍ୟା ଯଶୋଦାକୁ ଛାଡ଼ି; ଅନ୍ୟମାନେ ବାଲ୍ୟଅବସ୍ଥାରେ ଇହଧାମ ତ୍ୟାଗକଲେ । ୧୯୬୪ ମସିହାରେ ସେ ନିଜ ଗ୍ରାମ ଲୁଆଗମରେ ଯଶୋଦାର ବିବାହ ବିହାରସ୍ଥ ରାଞ୍ଚିରୁ ଖରୁଆଗାଢ଼ା ନିବାସି ଶ୍ରୀ ରଘୁନାଥ ସିଂହ ସହିତ ସମ୍ପନ୍ନ କଲେ । ଚାକିରୀ କାଳ ମଧ୍ୟରେ ସେ ନିଜସ୍ୱ ସାଧନା ବଳରେ ନିଜକୁ ସାର୍ଦ୍ଧ କବି ସୁନନ୍ଦ ସିଂହ ଗଉଟିଆ ରୂପେ ପରିଚିତ କରାଇବାରେ ସଫଳ ହୋଇଅଛନ୍ତି ।

ସାହିତ୍ୟ ସାଧନା :—

ସାଦ୍ରି କବି (ନାଗପୁରିଆ) ଶ୍ରୀ ସୁନନ୍ଦ ସିଂହ ଗଉତିଆଙ୍କ ବିଶ୍ରା ଛାତ୍ର ଜୀବନ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଯଦୁମଣି ପତ୍ରୀ, ସହକାରୀ ଶିକ୍ଷକ ବନମାଳୀ ଅମାତ ଏବଂ ହିରାଲାଲ ପଟେଲଙ୍କର ଭଗବତ ଦର୍ଶନ ଭାବଧାରାରେ ହୋଇଥିଲା । ସାଂସାରୀକ ଜୀବନଯାତ୍ରା ପଥରେ ପୁତ୍ର କନ୍ୟାମାନଙ୍କ ଅକାଳ ବିୟୋଗ ତାଙ୍କ ମନରେ ବୈରାଗ୍ୟ ଜାତ କଲା । ଚାକିରୀର ଛୁଟୀ ଦିନ ସମୟକୁ ସେ ନିଜ ଗଉତିଆ ସମାଜର ଧର୍ମ ଗ୍ରନ୍ଥ ପଠନ ଏବଂ ସନ୍ଥଜନଙ୍କ ସତ୍‌ସଂଘରେ ନିଜକୁ ନିୟୋଜିତ କରି ଆସୁଅଛନ୍ତି ।

ଗଜପୁରେହିତ ପଣ୍ଡିତ ମଦନ ଦାଶ (ଜ୍ୟୋତିଷ ବିଶାରଦ ଝିରପାଣି କଲୋନୀ); ମାଲୁ ସିଂହ ଝିରପାଣି; ଲୋକନାଥ ସିଂହ ଏବଂ ଶୁକଦେବ ସିଂହ (କେଣ୍ଡୁଝର); ଠୁନକା ସିଂହ ବାଂସଯୋର) ଆଦି ସଜ୍ଜନ ମଣ୍ଡଳୀଙ୍କ ମହତ ବାଣୀ ଗ୍ରହଣ କରି ସୁନନ୍ଦ ସିଂହ ତାଙ୍କ ସାହିତ୍ୟ ସାଧନା ଆରମ୍ଭ କଲେ । ଚାକିରୀ ଜୀବନରେ ସେ ବଦ୍ରିନାରାୟଣ; ଦ୍ୱାରିକା; ରାମେଶ୍ୱର ଏବଂ ପୁରୀ ଶ୍ରୀ ଜଗନ୍ନାଥ ଧାମ ଆଦି ଭାରତର ଚାରିଧାମ ପରିଦର୍ଶନ କରି ଭଗବତ କରୁଣା ଲାଭକଲେ । ପୂର୍ବାର୍ଜ୍ଜିତ କର୍ମ ଏବଂ କଥିତ ପୁଣ୍ୟ ବଳରୁ ସାଦ୍ରି କବି ସୁନନ୍ଦ ସିଂହ ଗଉତିଆ ତାଙ୍କର ମାତୃଭାଷା ଉପଭାଷା ସାଦ୍ରି (ଓଡ଼ିଆ ଭାଷାର ଉପଭାଷା) ଓଡ଼ିଆ ଏବଂ ଦେବନାଗରୀ ଲିପିରେ ପ୍ରକାଶ କରି ହିନ୍ଦୁ ଧର୍ମ ଏବଂ ମାନବ ଧର୍ମ ଉପରେ ନିମ୍ନୋକ୍ତ ଧର୍ମ ଗ୍ରନ୍ଥମାନ ପ୍ରଣୟନ କରିଅଛନ୍ତି ।

କବି ଶ୍ରୀ ସୁନନ୍ଦ ସିଂହ ଗଉତିଆଙ୍କର ପ୍ରକାଶିତ ଓ ଅପ୍ରକାଶିତ ରଚନା ଗୁଡ଼ିକ ନାମ ଯଥାକ୍ରମେ :—ଜୀବନ ରସାମୃତ ଗଉତିଆ ନୀତି ଦର୍ପଣ ଶ୍ରୀମଦ୍‌ଭଗବତ ଗୀତା (ସାଦ୍ରି ଗୀତା); ଆତ୍ମବୋଧ, ଅଜ୍ଞାନ ବୋଧନୀ, ବିବେକ ଚୂଡ଼ାମଣୀ ଓ ଜ୍ଞାନ ସାଗର ।

ସାଦ୍ରି କବି ସୁନନ୍ଦ ସିଂହ ଗଉତିଆଙ୍କ ରଚନାବଳୀ ଉପରେ ଅନେକ ବରେଣ୍ୟ ଶିକ୍ଷାବିତ୍ ଅଭିମତ ଦେଇଅଛନ୍ତି । ଅଭିମତଗୁଡ଼ିକ ମଧ୍ୟରୁ "ଜୀବନ ରସାମୃତ" ଉପରେ ଆଧାରିତ ସୁନ୍ଦରଗଡ଼ ଜିଲ୍ଲାପାଳ ଶ୍ରୀଯୁକ୍ତ ଲକ୍ଷ୍ମଣ ମିଶ୍ର ଏବଂ ସାଦ୍‌ରୀ ଗୀତା (ଶ୍ରୀମଦ୍‌ଭଗବତ ଗୀତା)ର ଭୂମିକା ଲେଖିଥିବା ଓଡ଼ିଶାର ଆଦିବାସୀ ଭାଷା ଓ ସଂସ୍କୃତି ଏକାଡ଼େମୀର ନିର୍ଦ୍ଦେଶକଙ୍କ ଭୂମିକାର

କେତେକାଂଶରୁ କବିଙ୍କର ସାହିତ୍ୟ ସାଧନାର ପରିଚୟ ଅନୁମେୟ କରଯାଇ-ପାରେ ।

## ଜୀବନ ରସାମୃତ

ଜୀବନ ରସାମୃତ ଉପରେ ସୁନ୍ଦରଗଡ଼ ଜିଲ୍ଲାପାଳ ଶ୍ରୀଯୁକ୍ତ ଲକ୍ଷ୍ମଣ ମିଶ୍ରଙ୍କ ପ୍ରଦତ୍ତ ଇଂରାଜୀ ଅଭିମତ ହେଲା :—

I have gone through the publication Jeevan Rashamnrita' by Sri Sunand Singh with keen interest. In this book Sri Singh has made an attempt to-inearth the beautiful hidden treasure of Hinduism He has also attempted to percive life, "a danb of muth coloured glass" in the various ramefications.

What is most striking about the book is the clear perception of the another about life and the scheme of things in the universe which he has given expressions to with clarity and perspicacity.

D M. Sundergarh　　L Mishra
camp—Rourkela.　　D. M. Sundergarh
Dated 1. 11. 74

ସାଦ୍ରୀ କବି ସୁନନ୍ଦ ସିଂହ ରଉନିଆ ସାଦ୍ରୀଗୀତା (ଶ୍ରୀମଦ୍ ଭଗବତ ଗୀତା କୁ ତାଙ୍କର ମାତୃଭାଷା ସାଦ୍ରୀ ଉପଭାଷାରୋଗଦ୍ୟାନୁବାଦ କରିଅଛନ୍ତି । ଉକ୍ତ ସାଦ୍ରୀ ଗୀତା ପୁସ୍ତକ ଓଡ଼ିଶା ସରକାରଙ୍କ ସାହିତ୍ୟ ଏକାଡେ଼ମୀ ଦ୍ୱାରା ପ୍ରକାଶିତ ହୋଇ ଓଡ଼ିଶା ସାଂସ୍କୃତିକ ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ଶରତ କୁମାର କରଙ୍କ ଦ୍ୱାରା ଇସ୍ପାତ ନଗରୀର ସିଭିକ୍ ସେଣ୍ଟରରେ, କବିଙ୍କ ଉପସ୍ଥିତିରେ ଆଦିବାସୀ ଭାଷା ଓ ସଂସ୍କୃତି ଆଲୋଚନାଚକ୍ରର ଉନ୍ମୋଚନ ମହୋତ୍ସବରେ ଉନ୍ମୋଚିତ ହୋଇଅଛି । ଏହି ପୁସ୍ତକ ଉପରେ ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେ଼ମୀର ନିର୍ଦ୍ଦେଶକ ଡକ୍ଟର ଖଗେଶ୍ୱର ମହାପାତ୍ର ଭୂମିକା ଲେଖିଅଛନ୍ତି ।

କବି ସୁନନ୍ଦ ସିଂହ ଗଉତିଆଙ୍କ "ସାଦ୍ରୀ ଗୀତାର ଭୂମିକା"ର କେତେକାଂଶ ସହିତ "ସାଦରୀ ଗୀତା"ର ଆରମ୍ଭ ଏବଂ ଶେଷ (ମୂଳ ସଂସ୍କୃତ ଶ୍ଳୋକ ଏବଂ ଏହାର ସାଦ୍ରୀ ଗଦ୍ୟାନୁବାଦ)ର କେତେକ ଗଦ୍ୟାଂଶ ନିମ୍ନରେ ଉଦ୍ଧାଯାଇଅଛି ।

## ଭୂମିକା

ସାଦ୍‌ରୀ ଗୀତା ହେଉଛି ଭଗବତ୍ ଗୀତାର ସାଦ୍‌ରୀ ଉପଭାଷାରେ ଅନୁବାଦ । ଏହି ସାଦ୍‌ରୀ ଉପଭାଷା ଓଡ଼ିଶାର ସୁନ୍ଦରଗଡ଼ ଜିଲ୍ଲା ଏବଂ ବିହାର ଓ ମଧ୍ୟ ପ୍ରଦେଶର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ଏକ ମହତ୍ୱପୂର୍ଣ୍ଣ ଗଣ-ମାଧ୍ୟମ ।

× × ×

ପଣ୍ଡିତ ସୁନନ୍ଦ ସିଂହ ଗଉତିଆ ଅତିକ୍ରାନ୍ତ ବିୟସରେ ଯେତେ ଆୟସ ଓ ଆନ୍ତରିକତା ସହିତ ଗୀତାର ଭବାର୍ଥ ସାଦ୍‌ରୀ ଭଷାରେ ପ୍ରସ୍ତୁତ କରିଅଛନ୍ତି ତାହା ଅଭିନନ୍ଦନୀୟ । ଏକାଡେମୀ ଏଥିପାଇଁ ତାଙ୍କ ନିକଟରେ ଏକାନ୍ତଭବେ କୃତଜ୍ଞ । ସାଦ୍‌ରୀ ଭଷା ଆଦିବାସୀ-ଜନସାଧାରଣଙ୍କ ମଧ୍ୟରେ ଗ୍ରନ୍ଥଟି ସମାଦୃତ ହେଲେ ତାଙ୍କର ସାଧନା ଏବଂ ଏକାଡେମୀର ପରିକଳ୍ପନା ସାର୍ଥକ ହେବ ।

ଭୁବନେଶ୍ୱର
ତା ୧ । ୧୨ । ୧୯୯୦

ଖଗେଶ୍ୱର ମହାପାତ୍ର
ନିର୍ଦ୍ଦେଶକ
ଆଦିବାସୀ ଭଷା ଓ ସଂସ୍କୃତି ଏକାଡେମୀ

ପ୍ରକାଶିତ ସାଦ୍‌ରୀ ଗୀତାର ଆଦ୍ୟ ଏବଂ ପ୍ରାନ୍ତର କେତୋଟି ଗଦ୍ୟାଂଶ (ଶ୍ଳୋକ ଏବଂ ଅନୁବାଦ)ର ଉଦାହରଣ ଯଥା :

## ସାଦ୍‌ରୀ ଗୀତା

ଓଁ ନମୋ ଶିବାୟ

ଶ୍ରୀମଦ ଭଗବଦ୍ ଗୀତା

ପ୍ରଥମ ଅଧ୍ୟାୟ ବିଷାଦ ଯୋଗ

ଧୃତରାଷ୍ଟ୍ର ଉବାଚ

ଶ୍ଳୋକ

ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ, ସମବେତା ଯୁଯୁତ୍ସବଃ
ମାମକା ପାଣ୍ଡବାଶ୍ଚୈବ, କିମକୁର୍ବତ ସଞ୍ଜୟ ; ।୧।

ଧୃତରାଷ୍ଟ ତ ଅନ୍ଧା । ଉ– ମହାଭାରତ ବିଷୟ ଜାନେକ୍ ଲଗିନ୍ ବ୍ୟାସଦେବକେ ପ୍ରାର୍ଥନା କରଲୟଁ । ବ୍ୟାସଦେବ ସଞ୍ଜୟକେ ଦିବ୍ୟଦୃଷ୍ଟି ଦେଲୟଁ । ତେ କର ସଞ୍ଜୟ ଧୃତରାଷ୍ଟ୍ରକେ ସବକେ କହଇ ରହୟଁ ।

ଧୃତରାଷ୍ଟ୍ର ପୁଛଲୟଁ, "କୁରୁକ୍ଷେତ୍ର ଧରମ ଠାଅଁ ମେ ମୋର କୌରବ ସେନାମନ ଆଉର ପାଣ୍ଡବ ସେନାମାନେ ଯାୟକେ ଯାମା ହୋଇକେ କା କରଧୟ ।

ସଞ୍ଜୟ କହଇୟଁ

× × ×

## ଅଷ୍ଟାଦଶ ଅଧ୍ୟାୟ

### ମୋକ୍ଷ-ଯୋଗଃ

ଅର୍ଜ୍ଜୁନ ଉବାଚ

× × ×

ସଞ୍ଜୟ ଉବାଚ

× × ×

### ଶ୍ଳୋକ

ଯତ୍ର ଯୋଗେଶ୍ୱରଃ କୃଷ୍ଣୋ. ଯତ୍ର ପାର୍ଥୋ ଧନୁର୍ଦ୍ଧରଃ
ତତ୍ର ଶ୍ରୀର୍ବିଜୟୋଭୂତି, ଧ୍ରୁବା ନୀତିର୍ମତିର୍ମମ । ୭୮ ।

( ହେ ରଜନ୍ ) ଯେ ଦଲମେ ଶ୍ରୀକୃଷ୍ଣ ଯୋଗେଶ୍ୱର ଆଉର ମହାବୀର୍ ଅର୍ଜ୍ଜୁନ ସେନାପତି ଆହୟଁ । ସେହେ ଦଲମେ ରଜଲଛମୀ, ବିଜୟ ସମ୍ପତ୍ତି ଆଉର ଅବିଚଲ ନୀତି ଅଛେ । ଇସନ୍ ମୋର ଅନୁଭବ କହତ ହେ । ୭୮ ।

ଶ୍ରୀ ଭଗବଦ୍ ଗୀତାକାର ସାଦ୍ରୀ ଅନୁବାଦ କର ଆଠାର ଚରନ ଖତମ ।

ବର୍ତ୍ତମାନ କବି ଶ୍ରୀ ସୁନନ୍ଦ ସିଂହ ରଉତିଆ ତାଙ୍କର ଝିରପାଣି ଗୃହରେ ଅଛନ୍ତି । ତାଙ୍କର ସ୍ତ୍ରୀ ସହବତୀଙ୍କର ବିଗତ ୧୯୮୮ ମସିହା (ପୌଷ ମାସ)ରେ ଦେହାନ୍ତ ହୋଇଯାଇଅଛି । କବିଙ୍କ ଝିଅ ଜ୍ୱାଇଁ ତାଙ୍କର ସେବା କରୁଅଛନ୍ତି ।

ତାଙ୍କର ଲେଖନୀ ଏବେ ମଧ୍ୟ ସକ୍ରିୟ ଭାବେ ଚାଲିଅଛି ।

ବହୁ କବି ନାଗରର ପୁଣ୍ୟ ମାଟିରେ ଉତ୍କଳୀୟ ସଂସ୍କୃତିର ଯଶଗାନ କରିଯାଇଅଛନ୍ତି; କରୁଅଛନ୍ତି; କରିଚାଲିବେ । ଏଥିରେ ସନ୍ଦେହର ଅବକାଶ ନାହିଁ ।

ବଣର ମାଳତୀ, ମଲ୍ଲୀ କୋଳୁଆଁ ଓ ମାଧବୀ ବଣରେ ଫୁଟି ବଣରେ ଝଡ଼ିପଡ଼େ । ଏମାନେ ନିଜର କ୍ଷଣିକସୁଗନ୍ଧ ସୌନ୍ଦର୍ଯ୍ୟ ଓ ସୁଗୁଣରେ ବନବାସୀଙ୍କୁ ଦିବ୍ୟ ଆନନ୍ଦ ପ୍ରଦାନ କରନ୍ତି । ବନଦେବୀ ଏମାନଙ୍କର ସେବାରେ ତୃପ୍ତ ହୋଇ ଏମାନଙ୍କୁ କୋଳରେ ଅମର କରି ରଖନ୍ତି । ଏହିଭଳି କବି ଶ୍ରୀ ପିତାମ୍ବର ପଣ୍ଡା, କବି ଅର୍ଜୁନ ରଜ, କବି ଶ୍ରୀ ରତ୍ନେଶ୍ୱର ପାଣିଗ୍ରାହୀ ଏବଂ ସାଦ୍ରି କବି ଶ୍ରୀ ସୁନନ୍ଦ ସିଂହ ଗଉଡିଆ ନାଗର ବଣରେ ଫୁଟି ଉତ୍କଳ-ଭାରତୀ ସେବାରେ ଯେଉଁ କେତେକ ବନମାଳା ଅର୍ପଣ କରୁଅଛନ୍ତି ମାଆ ସେଗୁଡ଼ିକୁ ଆନନ୍ଦରେ ଗ୍ରହଣ କରି ଏମାନଙ୍କୁ ଉତ୍କଳ କାନନରେ ଅମର କରନ୍ତୁ । ଏହାହିଁ ମାତାର ଶ୍ରୀଚରଣ କମଳରେ ପ୍ରାର୍ଥନା ।

—o—

## ନାଗରର ପ୍ରଖ୍ୟାତ ପାଲା ଗାୟକ ସ୍ୱର୍ଗତ ଫକୀର ମିଶ୍ର

ଅଧୁନା ରାଉରକେଲା ଇସ୍ପାତ ନଗରୀ ସେକ୍ଟର ତିନି ଓ ଚାରି ଅଞ୍ଚଳର ଅର୍ଦ୍ଧାଧିକ ପରିସୀମା ଭିତରେ ପ୍ରାଚୀନ ନାଗର ରାଜ୍ୟର ଅହିରବନ୍ଧ ମୌଜା ଅବସ୍ଥିତ ଥିଲା । ଉକ୍ତ ମୌଜାରେ ସ୍ୱର୍ଗତ ଫକୀର ମିଶ୍ର ବାସକରୁଥିଲେ । ସେ ନାଗରର ଜଣେ ପ୍ରଖ୍ୟାତ ପାଲା ଗାୟକ ଥିଲେ । ଫକୀର ମିଶ୍ର ପାଲାରେ ଗାଉଥିବା କବି କାସିଙ୍କର ରଚିତ ଶ୍ରୀ ଜଗନ୍ନାଥ କଳା ବନ୍ଦନା କବିତାଟି ଲେଖକ ଫକୀର ମିଶ୍ରଙ୍କ ନାତି ଶ୍ରଦ୍ଧେୟ ଶ୍ରୀ ବୈକୁଣ୍ଠ ମିଶ୍ରଙ୍କଠାରୁ ସଂଗ୍ରହ କରିଅଛି । ଫକୀର ମିଶ୍ରଙ୍କ ସଂଗୃହୀତ ସ୍ୱହସ୍ତ ଲିଖିତ ଶ୍ରୀ ଜଗନ୍ନାଥ କଳା ବନ୍ଦନା କବିତାଟି ନିମ୍ନରେ ଉଦ୍ଧାର କରି ପାଠକଙ୍କ ଦୃଷ୍ଟି ଆକର୍ଷଣ କରାଯାଇ ପାରେ । ଯଥା :—

### ଶ୍ରୀ ଜଗନ୍ନାଥ କଳା ବନ୍ଦନା ଏ

କଳା ବଲିଫାକୁ ନ କର ନିନ୍ଦା ଲୋ । ରାଉରା । କଳାରେ ଅଛଇ ବହୁତ ଫନ୍ଦା । ପଦ ।

କଳା ବଲି ଗଉଗ ବଛଲୁ ଚୁଣ୍ଡେ । କେସ ଯେ କଳା ତୁ ବହିଛୁ ମୁଣ୍ଡେ ।
ପାନ ଯେ କଳା ଖାଆନ୍ତି ଯନ । ମଇସି କଳା ତ ଯମ ବାହନ ।୧।

ସାଗ ଯେ କଳା ଅଟଇ ଡ଼ାଗଂ । ମରିଚ କଳାତ ଅଟଇ ଗଗ । ମୁଗ
ଯେ କଳା ପିତୃ ଶ୍ରାଧେ ଲୁଡ଼ା । ଦାଣ୍ଡକୁ ସୁନ୍ଦର କାଳିଆ ଘୁଡ଼ା ।୨।

କାଲି ଗାଈର ଯେ ଖିର ମଧୁର ଗୋବର ଯେ କଳା ଲିମ୍ଫୁ ମନ୍ଦିର ।
ହାଥି ଯେ କଳା ଗଯାଙ୍କ ଥାଠ । ଆବର କଳା ତ ଉରଯ ବେଣ୍ଡ ।୩।

ହାଣ୍ଡି ଯେ କଳା ଅର୍ଣ୍ଣ ରନ୍ଧି ଖାଉ । ଦୀପ ଯେ କଳା ଦେବତା
ବନ୍ଦାଉ । ଅଫିମ କଳା ଯେ ଗଛର ଅଠା କାଲି ତୀରିଙ୍କର ବଚନ ମିଠା ।୪।

ଅଗାଂର କଳା ଯେ ଲେଖନ୍ତି ଚିତା । ଦୂରକୁ ସୁନ୍ଦର କାଳିଆ ଛତା ।
ମେଘ ଯେ କଳା ଆକାସିରେ ଦୀସେ । କଳା ମେଘରୁ ତ ପାଣି ବରସେ ।୫।

ପର୍ବତ କଳା ଯେ ଦୀସେ ସୁନ୍ଦର । କୁଇଳି କଳା ଯେ କଣ୍ଠ ସୁସ୍ୱର ।
କଳା ଯେ ଅଟଇ କଳା ଭ୍ରମର । କଳା ଫୁଲ ଦେଖି କରେ ଆଦର ।୬।

ଲୁହା ଯେ କଳା ପଥରରୁ ଯାତ । ପୁରୁଷ କଳା ତ ନନ୍ଦର ସୁତ ।
କାଚ ଯେ କଳା ସୁବର୍ଣ୍ଣର ବାହି । ନେତ୍ରକୁ କଳା ସୁନ୍ଦର ଦୀସଇ । ୭ ।

ତିଳକୁ ସୁନ୍ଦର କାଳିଆ ଧାନ । କଳା ବୃସଭ ଯେ ଦୀସେ ସୁଭନ ।
କାକ ଯେ କଳା ପ୍ରଭତୁ ଡ଼ାକେ । ସିସୁ କାଠ କଳା ଜଳେ ଜପେ ହେ ।୮।

ତାଲ ଯେ କଳା ଘରକୁ ଶ୍ରେଣି । ଦେବତା କଳା ଯେ ଅଟେ ମୁଗୁନି ।
ତୈଳ କଳା ଯେ ଉସଧି ସାର । କଳା ସାଢ଼ୀ ଦୀସେ କି ସୁଭକର ।୯।

ତୁଳସି ଯେ ମୂଳ ଅଟଇ କଳା । ଦେବତାମାନେ କେ କରନ୍ତି ମାଳା ।
ଆବର କଳା ଯେ ଅଟଇ ଗୁଡ଼ । କହେ କାସି ପ୍ରଭୁ କାଂହୋ ଏ ଯୁଗାଡ଼ ।୧୦।

ସ୍ୱର୍ଗତ ଫକୀର ମିଶ୍ରଙ୍କର ପୁତ୍ର ସ୍ୱର୍ଗତ ରତ୍ନାକର ମିଶ୍ର ପିତାଙ୍କର ପନ୍ଥାଙ୍କ ଅନୁଶରଣ କରି ନାଗରରେ ପାଲ ଗାୟକ ରୂପେ ନିଜକୁ ପ୍ରତିଷ୍ଠିତ କରି ପାରିଥିଲେ । ରତ୍ନାକର ମିଶ୍ରଙ୍କ ପାଳିଆମାନଙ୍କ ନାମ ଯଥାକ୍ରମେ ଋଷି ଦେହୁରୀ, ବନ ଡେଗାଆ, ମହାଦେବ ପତ୍ରୀ (ଡ଼କାନାମ ଡୁଣ୍ଡୁ) ଶ୍ରୀ ଗୌତମ ମିଶ୍ର ଏବଂ ପୁନି କେଉଟ ବାୟକ ଥିଲେ । ମିଶ୍ର ମହୋଦୟଙ୍କ ପରିଚୟ ସିଂହାବଲୋକନରେ ପ୍ରକାଶିତ ହୋଇଅଛି ।

—:O:—

# ନାଗସ୍ମର ଆଖଡ଼ା ଓ ଛଉ ନୃତ୍ୟ

ନାଗର ରାଜ୍ୟରେ ଅନେକ ଗୁଡ଼ିଏ ଆଖଡ଼ା ଗୃହ ଏବଂ ଆଖଡା ପଦା ଥିଲା । ଉକ୍ତ ଗୃହ ଏବଂ ପଦା ଗୁଡ଼ିକରେ ସାଧାରଣତଃ ଭୂୟାଁ ବିଞ୍ଝିଆ ଜାତିର ଯୁବକ-ମାନଙ୍କୁ ଅସ୍ତ୍ର ଗୁରୁମାନଙ୍କ ଦ୍ୱାରା ଯୁଦ୍ଧ ବିଦ୍ୟା ଶିକ୍ଷା ଦିଆଯାଉଥିଲା । ଏତଦ୍ ବ୍ୟତୀତ ତତ୍‌କାଳୀନ ସମାଜିକ ନୃତ୍ୟ ଗୀତ ଏବଂ ବାଦ୍ୟ ବାଦନ ବିଷୟରେ ଶିକ୍ଷା ଦିଆଯାଉଥିଲା ।

ବଲଣି ଗ୍ରାମ ନିବାସୀ କବି ଶ୍ରୀ ଅର୍ଜୁନ ରଜ ବାଲ୍ୟକାଳରେ ନିଜ ଗ୍ରାମର ଆଖଡ଼ା ପଦାରେ ଆଖଡ଼ା ଓ ଛଉ ବିଦ୍ୟା ଆଖଡ଼ା ଗୁରୁଙ୍କଠାରୁ ଶିକ୍ଷା କରିଥିଲେ । ନିମ୍ନରେ ପ୍ରଦତ୍ତ କବିଙ୍କ ସ୍ୱହସ୍ତ ଲିଖିତ ବିବରଣୀର ନକଲ ନାଗର ସଂସ୍କୃତିର ସାମ୍ୟକ ପରିଚୟ ପ୍ରଦାନ କରେ ।

ସ୍ୱର୍ଗତଃ ବିପ୍ର ଅମାତଙ୍କର ବଂଶଜ ଭଦୋଚରଣ ଅମାତ ଆମ ଗାଁର ଆଖଡ଼ା ଗୁରୁ ଥିଲେ । ସେ ପିଲାରୁ ଯୁଆନ ପର୍ଯ୍ୟନ୍ତ ଲୋକଙ୍କୁ ଆମ୍ଭ ଘର ପଶ୍ଚିମ ଦିଗରେ ଅନତି ଦୂରରେ ଥିବା ଆଖଡ଼ା ପଦାରେ ଆଖଡ଼ା ଓ ଛଉ ବିଦ୍ୟା ଶିଖାଉଥିଲେ ।

ଆଖଡ଼ା ଓ ଛଉ ନୃତ୍ୟର କିଛି ନମୁନା ତଳେ ଦିଆଗଲା ।

୧—ଝେଝେ ଝେଝେ ଝେଝେ; ଝେଝେ ଝେ ଝେନ୍ଦା ।
ଡେନ୍ତାକ୍ ତିତାକ୍ ତିତାକ୍ ତା;
ତାକ୍‌ତା ତାକୁର ଉରତା ତାକୁର୍ ଗଦି ଘିନି ଖିଟି ଧା;—
ତା, ତା, ତା ।
ଧେଇଖିଟତାକ୍ ଧେଇଖିଟିତାକ୍ ଧେୟା, ତାକ୍‌ଟି ତାକ୍‌ଟି ତା
ଧାଗେଦାଘିନି ଧା, ଧାଗେଦାଘିନି ଧା, ଧାଗେଦାଘିନି ଧା ।
ତା, ତା, ତା ।

୨—ଗଲ୍ ସଖୀ କୁଞ୍ଜବନେ, ଦେଖିବା ସଖୀଲୋ ବଂଶୀଧାରୀ ।
ସେ ନଟବର, ବଡ଼ ଚତୁର, ଦିଏ ଯାତନା ପ୍ରାଣେ ମୋହର ।
ନ ଦେଖାଦେଇ, ମୋତେ କନ୍ଦାଇ, ଯାଏ ବୃନ୍ଦାବନେ ଗୋରୁ ଚରଉ ।।

୩—ଡ଼େଙ୍ନେ ତାକ୍ ଡ଼େଙ୍ନେ ତାଇଖିଟି ଖିଟିତା, ୪ଥର ଉଚ୍ଚାରଣ ।
ଧା ଧା ଧା ଧା ଧା, ଧା ଧା ଧା ଧା ଧା ।

ଧେଇଖିଟିତାକ୍ ଧେଇଖିଟିତାକ୍ ଧେୟା ତାକ୍ଟି ତାକ୍ଟି ତା;
ଧା ଗେଦାଘିନି ଧା, ଧା ଗେଦାଘିନି ଧା, ଧା ଗେଦାଘିନି ଧା ॥

୪—ବାଟିରେ ତାନ ମାନ ଯହିଁ ପାଣି ତହିଁ ଧାନ ।
ଉରତା ତାକୁର୍ ତାକତା ତାକୁର ଗଦିଘିନିଖିଟି ଧା । ତା, ତା ତା ॥

ଏହି ନୃତ୍ୟ ବିଦ୍ୟାରେ କାଠର ଖଣ୍ଡା ଓ କାଗଜର ଝୁମ୍ପାଲଗା ଫରି ବ୍ୟବହୃତ ହେଉଥିଲା । ନୃତ୍ୟ କାଳରେ ଢୋଲ ଓ ମହୁରୀ ତହିଁର ଯଥା ସଙ୍କେତ ଦେଉଥିଲେ । ଏହି ପ୍ରକାରେ ଆମ୍ଭେ ଗୁରୁଙ୍କଠାରୁ ଶିକ୍ଷା କରିଥିଲୁଁ ।

ଶ୍ରୀ ଅର୍ଜୁନ ଗଜ
ଗୁଉରକେଲା ସେକ୍ଟର ନମ୍ବର—୮
ତା ୫ । ୪ । ୧୯୮୮

## ନାଗରର ସ୍ୱାଧୀନଚେତା ନାଗରୀକ ଶ୍ରୀ ବୃନ୍ଦାବନ ବେହେରା

ଅଧୁନା ରଉରକେଲା ଇସ୍ପାତ୍‌ନଗରୀ ପରିଚାଳନା ନିର୍ଦ୍ଦେଶକଙ୍କ କମ୍ପାନୀ ଗୃହର ଉତ୍ତର ଦିଗର ଅନତି ଦୂରରେ କୋଇଲି ନଦୀର ଦକ୍ଷିଣ ତଟରେ ପୁରାତନ ହମିରପୁର ଗ୍ରାମ ଅବସ୍ଥିତ । ଉକ୍ତ ଗ୍ରାମର ନିବାସୀ ଶ୍ରୀ ବୃନ୍ଦାବନ ବେହେରା ନାଗରର ଜଣେ ନିର୍ଭୀକ ସ୍ୱାଧୀନ ଚେତା ନାଗରୀକର ଗୁଣ ଧାରଣ କରି ଅତୀତର ଯଶ ଗାନ କରୁଅଛନ୍ତି ।

ହମିରପୁର ଗ୍ରାମର ସାମାଜିକ ଅର୍ଥନୈତିକ ଓ ଧାର୍ମିକ ପରିବେଶ ଅସାମାଜିକ ବ୍ୟକ୍ତିମାନଙ୍କ କ୍ରୀଡ଼ା ସ୍ଥଳରେ ପରିଣତ ହୋଇ; ଗ୍ରାମର ଶାନ୍ତି ଏବଂ ନିରାପତ୍ତା ବିପନ୍ନ ହେଉଥିବାବେଳେ; ଏହାର ନିରାକରଣ ପାଇଁ ଶ୍ରୀ ବୃନ୍ଦାବନ ବେହେରା ଶ୍ରୀମାନ୍ ପୋଲିସ୍ ଅଫିସର; ସେକ୍ଟର-୧୯, ରଉରକେଲା ମହୋଦୟଙ୍କୁ "ସର୍ବ ସାଧାରଣେ ଜାଣିବା, ଶୁଣିବା ଦେଖିବା କଥା" ବିଷୟ ନାମକ ଏକ ମୁଦ୍ରିତ ଆବେଦନ ପତ୍ର ତା ୧୧-୨-୧୯୮୮ ମସିହାରେ ପ୍ରଦାନ କରି ଅଛନ୍ତି । ଉକ୍ତ ଆବେଦନ ପତ୍ରର ନକଲ ଭାରତର ରାଷ୍ଟ୍ରପତି ମାନ୍ୟବର ଶ୍ରୀଯୁକ୍ତ ରାମସ୍ୱାମୀ ଭେଙ୍କେଟ ରମଣ, ପ୍ରଧାନ ମନ୍ତ୍ରୀ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀ, ଓଡ଼ିଶାର ରାଜ୍ୟପାଳ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ, ସୁନ୍ଦରଗଡ଼ର ଏମ୍.ପି. ଶ୍ରୀଯୁକ୍ତ ମରିସ୍ କୁଜୁର, ରଉରକେଲା ଏମ୍. ଏଲ୍. ଏ ଶ୍ରୀଯୁକ୍ତ ଦୀଲିପ ରାୟ, ଉଭୟ କେନ୍ଦ୍ର ଓ ରାଜ୍ୟର ବିରୋଧୀ ଦଳର ନେତା ଏବଂ

ଭରତ ତଥା ଓଡ଼ିଶାର କେତେକ ଖ୍ୟାତନାମା ସମ୍ବାଦ ପତ୍ରିକାର ସମ୍ପାଦକ-ମାନଙ୍କୁ ମିଶାଇ ଅଣଚାଳିଶ ଜଣଙ୍କୁ (ପ୍ରତ୍ୟେକ ଏକ କିତା) ଦେଇଅଛନ୍ତି । ପ୍ରତ୍ୟୁତ୍ତରରେ ଶ୍ରୀ ବୃନ୍ଦାବନ ବେହେରା ପ୍ରଧାନ ମନ୍ତ୍ରୀ ରାଜୀବ ଗାନ୍ଧୀଙ୍କ ନୂଆ ଦିଲ୍ଲୀ କାର୍ଯ୍ୟାଳୟରୁ ଏକ ଚିଠି No. 701097 Dated 2 3. 88 ପାଇଅଛନ୍ତି ।

ଏହାର କିଛିଦିନ ପରେ ବୃନ୍ଦାବନ ବେହେରା ପୁନଃ ଏକ ସ୍ମାରକପତ୍ର ପ୍ରଧାନ ମନ୍ତ୍ରୀ କାର୍ଯ୍ୟାଳୟ ଚିଠିର ଫଟୋଷ୍ଟେଟ ଚିଠି ସହିତ ଉପରୋକ୍ତ ସମସ୍ତ ବ୍ୟକ୍ତିଙ୍କୁ ପ୍ରଦାନ କରିଅଛନ୍ତି । ଲେଖକ ବୃନ୍ଦାବନ ବେହେରାଙ୍କର ମୁଦ୍ରିତ ଉଭୟ ପତ୍ର ବିଷୟ "ସର୍ବ ସାଧାରଣ ଜାଣିବା ଶୁଣିବା ଦେଖିବା କଥା" ଏବଂ "ମହାମାନ୍ୟବର ସ୍ୱାଧୀନ ଭରତର ହର୍ତ୍ତା କର୍ତ୍ତା ଦୈବ ବିଧାତାଦି ଆସନାଧିପତି ପ୍ରାଇମ୍ ମିନିଷ୍ଟର ରାଜୀବ ଗାନ୍ଧୀ ମହୋଦୟଙ୍କ ଶ୍ରୀକର କମଳେଷୁ" ପାଇଅଛି ।

ହମିରପୁର ନିବାସୀ ଶ୍ରୀ ବୃନ୍ଦାବନ ବେହେରାଙ୍କର ଉପରୋକ୍ତ ଆବେଦନ ପତ୍ରର ପୁନଃ ସ୍ମାରକ ପତ୍ରଟି ପ୍ରାଚୀନ ନାଗରର ଓଡ଼ିଆ ଭଷା ଏବଂ ଭବ ବହନ କରିଥିବାରୁ ; ସ୍ମାରକପତ୍ରର ନକଲ ଉତ୍କଳ ଭରତୀଙ୍କ ଶ୍ରୀଚରଣରେ ଅର୍ପଣ କରିବା ଉଦ୍ଦେଶ୍ୟରେ ନିମ୍ନରେ ଉଲ୍ଲେଖ କରଯାଇଅଛି ।

**ମହାମାନ୍ୟବର ସ୍ୱାଧୀନ ଭରତର ହର୍ତ୍ତା, କର୍ତ୍ତା, ଦୈବ, ବିଧାତାଦି ଆସନାଧିପତି ପ୍ରାଇମ୍ ମିନିଷ୍ଟର ରାଜୀବ ଗାନ୍ଧୀ ମହୋଦୟଙ୍କ ଶ୍ରୀକର କମଳେଷୁ**

ତା ୧୧ । ୨ । ୮୮ ରିଖର ବିଷୟ : ସର୍ବସାଧାରଣ ଜାଣିବା; ଶୁଣିବା ଦେଖିବା କଥା— ପ୍ରତ୍ୟେକ ସର୍ବସାଧାରଣଙ୍କ ସତ୍ୱାସତ୍ୱ ରକ୍ଷଣା ବେକ୍ଷଣ ସମ୍ବନ୍ଧେ ଦେଶର ସମସ୍ତ କର୍ମକର୍ତ୍ତାଙ୍କ ଦୃଷ୍ଟି ସମର୍ଥନର ଫଟୋକପି ଦ୍ୱାରା ଆପଣଙ୍କୁ ସ୍ମରଣ କରଉଛୁ ।

ଏଣୁ ସବିନୟେ ବିନୀତ ଅନୁରୋଧ କରି କହୁଛୁଁ । ଏ ଆତ୍ମା ହର୍ତ୍ତା; କର୍ତ୍ତା, ଦାତା ; ଅତ୍ମା ଈଶ୍ବର ପିତା, ମାତା । ପ୍ରାଣୀଙ୍କି ବୁଝାଇ ବୁଝଇ

ଅନ୍ତରେ ସାକ୍ଷୀ ରୂପେ ଥାଇ, କରି-କରଉଥାଏ ମୁହିଁ । ମୋ ବିନୁ ଅନ୍ୟ କେହି ନାହିଁ । ଏହି ଆତ୍ମା କୋଟି କୋଟି ବ୍ରହ୍ମାଣ୍ଡର ସୃଷ୍ଟି ସ୍ଥିତି, ପ୍ରଳୟକାରୀ, କୀଟଠାରୁ ବ୍ରହ୍ମର କାୟିକ ବାଚିକ, ମାନସିକ ଶକ୍ତି ଚାଳକ । ସଚରାଚର ବ୍ରହ୍ମାଣ୍ଡ ବ୍ୟାପି ଜୀବ ଓ ପରମ ରୂପି ସକଳ ପ୍ରକାର ଧର୍ମାଧର୍ମର ମୂଳକାରଣ ଅଟନ୍ତି । ଏହି ଜୀବ ପରମ ସେବାହିଁ ଭଗବାନଙ୍କ ସେବା ପୂଜା ଅଟେ ; ଏହି ଜୀବ ପରମ ତୃପ୍ତିରେ ଭଗବାନ ତୃପ୍ତି, ଏହି ଜୀବ ପରମ ନିରାକାର ନିର୍ବିକାର, ନିରଞ୍ଜନ, ପରମ ଜ୍ୟୋତି, ଯୋଗମାୟା, ବିଷ୍ଣୁମାୟା, ରାଜରାଜେଶ୍ୱରୀ ପ୍ରକୃତିରାଣୀ, ସଚରାଚର ବ୍ରହ୍ମାଣ୍ଡର ଏକାଙ୍ଗ ଚକ୍ରବର୍ତ୍ତୀ ରାଜାଧିରାଜ ଅଟନ୍ତି । ଭଗବତ ଗୀତା ବିଭୂତି ଯୋଗେ ବର୍ଣ୍ଣିତ ସମସ୍ତ ମୁଖ୍ୟ ଶକ୍ତି ବୋଲନ୍ତି । ଏ ଜୀବ ପରମ କାୟାରେ ଥିଲେ କାୟା ପୂଜ୍ୟ ଅନ୍ତର ହେଲେ ଅପୂଜ୍ୟ ଅଟେ । ସେପରି ଏ ଦେଶର ପ୍ରତ୍ୟେକ ଅଂଶର କର୍ମକର୍ତ୍ତା ନିଜ ନିଜ ଆସ୍ଥାନେ ଆକାର ବିଷ୍ଣୁ ଅଂଶ ରୂପେ ଥାଇ ପୂଜ୍ୟ ଅନ୍ତର ହେଲେ ଅପୂଜ୍ୟ ଅଟନ୍ତି । ଏହି ବିଷ୍ଣୁ ମିନରୂପେ ଶଙ୍ଖାସୁର ବଧିରେ ବେଦ (ନ୍ୟାୟନିଷ୍ଠା) ଉଦ୍ଧାର କରିଛ, ବରାହରୂପେ ପୃଥ୍ୱୀ ଟେକୀ ହିରଣାକ୍ଷ୍ୟ ଅସୁର ରାଜ ମାରିଛ । ପ୍ରହ୍ଲାଦ ଛଳେ ବିଶ୍ୱବ୍ୟାପି ବିଷ୍ଣୁ ଶକ୍ତି ପ୍ରମାଣ ପାଇଁ ଏହି ସ୍ତମ୍ଭେ ଦେଲେ ମନ, ଏହି ସ୍ତମ୍ଭେ ଭଗବାନ ନୃସିଂହରୂପେ ସ୍ତମ୍ଭ ବାହାରି ହିରଣ୍ୟକସିପୁଙ୍କୁ ବଧକଲ । ବାଳୀରାଜାଙ୍କୁ ଅନ୍ୟାୟ ଭବେ ମାରିବାରୁ କୃଷ୍ଣାବତାରେ ଜରାସରେ ପ୍ରାଣଦେଲେ । ଜଗତର ପ୍ରତ୍ୟେକ ନ୍ୟାୟ ନିଷ୍ଠାବାନ ରକ୍ଷଣା ବେକ୍ଷଣ ପୂର୍ବକ ଶାନ୍ତି ଶୃଙ୍ଖଳାରେ ଚଳିବା ପାଇଁ ପ୍ରତ୍ୟେକ କର୍ମକର୍ତ୍ତାଙ୍କ ଆସ୍ଥାନ ମାନ ସୃଷ୍ଟି କରିନ୍ତି । ଏହି ଆସନ ଅଧିକାର ପୂର୍ବେ ଯେଉଁ ସତ୍ୟ ସନାତନଙ୍କୁ ଆତ୍ମବିଶ୍ୱାସେ ସ୍ମରଣ କରି ଶପଥ ପାଠରେ ଆସନ ଗ୍ରହଣ କଲେ ତାଙ୍କୁ ପ୍ରତ୍ୟେକ କାର୍ଯ୍ୟରେ ସ୍ମରଣ ପୂର୍ବକ ନିଜ ପଥଅନୁଗାମୀ ଆଜ୍ଞା ପାଳନକାରି ଶକ୍ତିର କାର୍ଯ୍ୟ ମାନଙ୍କେ ସୁତିକ୍ଷଣ ଦୃଷ୍ଟି ନ ରଖିଲେ ସିଦ୍ଧିଲାଭ ଅସମ୍ଭବ । ଏଣୁ ସବିନୟ ନିବେଦନ କଲି । (ଇତି)

ତା ୨୭ । ୬ । ୮୮ଇ — ନିବେଦକ

ଶ୍ରୀ ବୃନ୍ଦାବନ ବେହେରା
(ହମିରପୁର ଗ୍ରାମ ପଞ୍ଚାୟତ)
ସନ ୧୯୫୦ରୁ ୫୭ ସରପଞ୍ଚ

ହମିରପୁର

ଆପଣଙ୍କ ମାନସମ୍ମାନ ରକ୍ଷାର୍ଥେ ଆପଣଙ୍କ ପ୍ରେରିତ ପତ୍ର ଫଟୋ କପି ସହ ଏହାର ଏକ କିତା ନକଲ ପ୍ରତ୍ୟେକ କର୍ମକର୍ତ୍ତାଙ୍କୁ ଦେଲୁଁ ।

୧ । ରାଷ୍ଟ୍ରପତି ଭେଙ୍କଟ ରମଣ, ନିଉ ଦିଲ୍ଲୀ
୨ । ପ୍ରାଇମ୍ ମିନିଷ୍ଟର, ରଜିବ ଗାନ୍ଧୀ, ନିଉ ଦିଲ୍ଲୀ
୩ । ଅଟଳ ବିହାରୀ ବାଜପେୟୀ, ଭାରତୀୟ ଜନତା ଦଳ
୪ । ବିଶ୍ୱନାଥ ପ୍ରତାପସିଂ, ଜନମୋର୍ଚ୍ଚା
୫ । ମୋରିସ କୁଜୁର୍, ଏମ୍.ପି., ନୂଆଦିଲ୍ଲୀ
୬ । ରାଜ୍ୟପାଳ ଓଡ଼ିଶା, ନିଉ କ୍ୟାପିଟାଲ, ଭୁବନେଶ୍ୱର
୭ । ମୁଖ୍ୟମନ୍ତ୍ରୀ, ଜାନକୀବଲ୍ଲଭ ପଟ୍ଟନାୟକ, ଭୁବନେଶ୍ୱର
୮ । ଆଇନ ମନ୍ତ୍ରୀ, ଭୁବନେଶ୍ୱର
୯ । ଏନ୍ ଏ ସି ମନ୍ତ୍ରୀ, ଭୁବନେଶ୍ୱର
୧୦ । ଦେବୋତ୍ତର କମିସନର, ଭୁବନେଶ୍ୱର
୧୧ । ପଞ୍ଚାୟତ ରେଜିଷ୍ଟ୍ରାର, ଭୁବନେଶ୍ୱର
୧୨ । ବିଜୁ ପଟ୍ଟନାୟକ, ଭୁବନେଶ୍ୱର
୧୩ । କଲେକ୍ଟର, ସୁନ୍ଦରଗଡ଼, ଓଡ଼ିଶା
୧୪ । ଏସ୍.ଡି.ଓ, ସୁନ୍ଦରଗଡ଼, ଓଡ଼ିଶା
୧୫ । ଏ.ଡ଼ି. ଏମ, ସ୍ପେଶାଲ ଅଫିସର
୧୬ । ଏସ ଡ଼ି ଓ, ଉଦିତନଗର
୧୭ । ତହସିଲଦାର, ପାନପୋଷ ଅଞ୍ଚଳ, କୁଅଁରମୁଣ୍ଡା
୧୮ । ଆର ଆଇ, ଉଦିତନଗର
୧୯ । ଗ୍ରାମପଞ୍ଚାୟତ ରେଜିଷ୍ଟ୍ରାର, ସବଡେଗା
୨୦ । ଦିଲ୍ଲୀପ ରାୟ, ଏମ ଏଲ ଏ, ରାଉରକେଲା
୨୧ । ହିନ୍ଦୁସ୍ତାନ ଷ୍ଟିଲ ଅଥରିଟି ଅଫ ଇଣ୍ଡିଆ ଲି:, ରାଉରକେଲା
୨୨ । ରାଷ୍ଟ୍ରିୟ ସ୍ୱୟଂସେବକ ସଂଘ, ରାଉରକେଲା
୨୩ । ସର୍ବୋଦୟ ମଣ୍ଡଳ, ଜିଲ୍ଲା ସୁନ୍ଦରଗଡ଼
୨୪ । ପି ଡବ୍ଲ୍ୟୁ ଡ଼ି, ରାଉରକେଲା
୨୫ । ଏନ ଏ ସି, ରାଉରକେଲା

୨୬ । ପୂଜା କମିଟି, ରାଉରକେଲା
୨୭ । ଡ଼ି ଆଇ ଜି ପୋଲିସ ଅଫିସର; ରାଉରକେଲା
୨୮ । ଇନସ୍ପେକ୍ଟର ପୋଲିସ ଅଫିସର, ସେ: ୧୯ ରାଉରକେଲା
୨୯ । ରୋମାନ କାଥଲିକ ଚର୍ଚ୍ଚ, ହମିରପୁର
୩୦ । ଲୁଥରାନ କାଥଲିକ ଚର୍ଚ୍ଚ, ହମିରପୁର ସିମାନ୍ତ
୩୧ । ବେଥାନି ଚର୍ଚ୍ଚ, ହମିରପୁର
୩୨ । ରାମକୃଷ୍ଣ ସଂଘ ହମିରପୁର
୩୩ । ଆର୍ଯ୍ୟ ସମାଜ, ସେ: ୧୯ ରାଉରକେଲା
୩୪ । ନୀଳଚକ୍ର ପାର୍ଟି, ରାଉରକେଲା
୩୫ । ଖଣ୍ଡାୟତ କ୍ଷତ୍ରିୟ ସମାଜ, ରାଉରକେଲା
୩୬ । ସମାଜ ସମ୍ପାଦକ, ରାଧାନାଥ ରଥ
୩୭ । ପ୍ରଜାତନ୍ତ୍ର ସମ୍ପାଦକ
୩୮ । ମାତୃଭୂମି ସମ୍ପାଦକ
୩୯ । ଏସ ଡ଼ି ଓ ବୋଣାଇଗଡ଼
୪୦ । ସ୍ଥାନଚ୍ୟୁତ କଲୋନୀ ଓ ନିଜ ଆତ୍ମୀୟମାନଙ୍କୁ

—o—

ପ୍ରଧାନ ମନ୍ତ୍ରୀଙ୍କ କାର୍ଯ୍ୟାଳୟ ଚିଠିର ନକଲ

PRIME MINISTER'S OFFICE

New Delhi-110011

No. 701094 Dated : 2 | 3 | 88

Dear Sir,

I am desired to acknowledge the rcceipt of your letter dated—————————— addressed to the Prime Ninister and to say that it is being forwarded for appropriate action to the Chief Secretary, Government of Orissa, Bhubaneswar.

Yours faithfully

Section Officer

B. B. Behera.
At-Hamirpur
P. O. Rourkela-3
District—Sundergarh,
Orissa.

# ଚତୁର୍ଥ ପରିଚ୍ଛେଦ

## ନାଗରୀ ଉତ୍କଳ ତଥା ଭାରତର ମହାନ ସାଧକ କୃଷ୍ଣ ଦ୍ୱୈପାୟନ ବ୍ୟାସଦେବ

ଉପକ୍ରମଣିକା :—

ନିରାକାର ପରଂବ୍ରହ୍ମ ପରମାତ୍ମା ମହାପ୍ରଳୟରେ ସୃଷ୍ଟି ସର୍ଜନା କରନ୍ତି । ପ୍ରକୃତି ପୁରୁଷ ରୂପେ ନାନାବିଧ ଚେତନ ଅଚେତନ ବ୍ରହ୍ମ ସତ୍ତାରେ ମହାତ୍ରିଗୁଣ ବିସ୍ତାର କରି ବିଶ୍ୱକୁ ବ୍ରହ୍ମମୟ କରନ୍ତି । ଓଁକାରରୁ ବେଦ ସୃଷ୍ଟି କରନ୍ତି । ବେଦ ଦ୍ୱାରା ସୃଷ୍ଟି-ସ୍ଥିତି-ପ୍ରଳୟ ଲୀଳା ସତ୍ୟ ତ୍ରେତୟା ଦ୍ୱାପର ଏବଂ କଳିରେ ରଚନା କରି ପୁନଃ ମହାପ୍ରଳୟରେ ଚାରିଯୁଗର ଅବସାନ କରନ୍ତି । ସାକାରକୁ ନିରାକାରରେ ଏକାକାର କରି ପରିବ୍ୟାପ୍ତ ବ୍ରହ୍ମ ପରିଶେଷରେ ପରମାତ୍ମାରେ ଲୀନ ହୁଅନ୍ତି । ଏହି ଅନନ୍ତ ଲୀଳା ନିତ୍ୟ ନୂତନ ପ୍ରସ୍ଫୁଟିତ ହୋଇ ବିଶ୍ୱକୁ ମଧୁମୟ କରେ ।

ବେଦର ଗୁଢ଼ ରହସ୍ୟକୁ ବେଦ ବିଭାଜନ କରି ପ୍ରଚାର କରିବା ପାଇଁ ଭଗବାନ ପ୍ରତି ଦ୍ୱାପର ଯୁଗରେ ବ୍ୟାସ ରୂପେ ଅବତୀର୍ଣ୍ଣ ହୋଇ ବ୍ୟାସଦେବ ପଦବୀ ଧାରଣ କରନ୍ତି । ସ୍ୱାୟମ୍ଭୁବ, ପ୍ରଜାପତି, ଶୁକ୍ର, ଗୁରୁ, ସବିତା, ଇନ୍ଦ୍ର, ବଶିଷ୍ଠ, ସାରସ୍ୱତ, ତ୍ରିଧାମା, ତ୍ରିଶିଖୋ, ଭରଦ୍ୱାଜ, ଅନ୍ତରୀକ୍ଷ, ବର୍ଣ୍ଣିଦ୍ୱିଜ, ତ୍ରୟ୍ୟାରୁଣ, ଧନଞ୍ଜୟ କ୍ରତୁଞ୍ଜୟ, ଜୟ, ଭରଦ୍ୱାଜ (ଦ୍ୱିଜ), ଗୌତମ, ହର୍ଯ୍ୟାତ୍ମା, ବାଜଶ୍ରବା, ତୃଣବିନ୍ଦୁ (ସୋମ ଶୁଷ୍ମ ବଂଶୀ), ଭୃଗୁବଂଶୀ ରକ୍ଷ (ପରେ କାଳକ୍ରମେ ରକ୍ଷ ବାଲ୍ମୀକି ବ୍ୟାସ ହୋଇଥିଲେ), ଶକ୍ତି, ପରାଶର, ଜାତୁକର୍ଣ୍ଣ ଏବଂ କୃଷ୍ଣ ଦ୍ୱୈପାୟନ ଆଦି ଅଠେଇଶ (ଅଷ୍ଟାବିଂଶ) ଜଣ ବ୍ୟାସ, ବ୍ୟାସ ଦେବ ରୂପେ ପ୍ରତ୍ୟେକ ବେଦକୁ ଚାରି ଭାଗରେ ରଚନା କରି ପ୍ରଚାର କରି ଅଛନ୍ତି । ଆଗାମୀ ଦ୍ୱାପର ଯୁଗରେ ପରାଶରଙ୍କ ପୁତ୍ର କୃଷ୍ଣ ଦ୍ୱୈପାୟନ ବ୍ୟାସ, ଅଶ୍ୱଥାମା ବ୍ୟାସଦେବ ରୂପେ ଜନ୍ମ ହେବାର ସୂଚନା ଶ୍ରୀ ପରାଶର କୃତ ଶ୍ରୀ ବିଷ୍ଣୁପୁରାଣ ମୂଳ ସଂସ୍କୃତ ଓଡ଼ିଆ ପଦ୍ୟାନୁବାଦ ସହ ଅନୁବାଦକ ଶ୍ରୀନିବାସ ମିଶ୍ରଙ୍କ ଶ୍ରୀ ବିଷ୍ଣୁ ପୁରାଣ ତୃତୀୟ ଅଧ୍ୟାୟ ତୃତୀୟ ଅଂଶରେ ଦେଖିବାକୁ ମିଳେ ।

ଉଦାହରଣ :— ଶ୍ରୀ ପରାଶର ଉବାଚ

"ବେଦ ଦ୍ରୁମସ୍ୟ ମୈତ୍ରେୟ ଶାଖା ଭେଦାସ୍ ସହସ୍ରଶଃ
ନ ଶକ୍ତୋ ବିସ୍ତରାଦ୍ ବକ୍ତୁଂ ସଂକ୍ଷେପେଣ ଶୃଣୁଷ୍ୱତମ୍ ।୪।
ଦ୍ୱାପରେ ଦ୍ୱାପରେ ବିଷ୍ଣୁ ର୍ବ୍ୟାସ ରୂପୀ ମହାମୁନେ
ବେଦ ମେକଂ ସୁବହୁଧା କୁରୁତେ ଜଗତୋ ହିତଃ ।୫।

ଉଦାହରଣ :— ଶ୍ରୀ ପରାଶର ଉବାଚ

× × ×

ଅଷ୍ଟା ବିଂଶତି କୃତୋ ବୈବେଦୋ ବ୍ୟସ୍ତୋ ମହର୍ଷିଭିଃ
ବୈବସ୍ୱତେଽନ୍ତରେ ତସ୍ମିନ ଦ୍ୱାପରେଷୁ ପୁନଃ ପୁନଃ ।୯।
ବେଦବ୍ୟାସା ବ୍ୟତୀତା ଯେ ହ୍ୟଷ୍ଟାବିଂଶତି ସତ୍ତମ
ଚତୁର୍ଧା ଯୈଃ କୃତୋ ବେଦୋ ଦ୍ୱାପରେଷୁ ପୁନଃପୁନଃ ।୧୦।
ଦ୍ୱାପରେ ପ୍ରଥମେ ବ୍ୟସ୍ତଃ—ସ୍ୱୟଂ ବେଦଃ ସ୍ୱୟମ୍ଭୁବା
ଦ୍ୱିତୀୟେ ଦ୍ୱାପରେ ଚୈବ ବେଦବ୍ୟାସଃ ପ୍ରଜାପତିଃ ।୧୧।

× × ×

ଋକ୍ଷୋଽଭୂଦ୍ ଭାର୍ଗବସ୍ତସ୍ମାଦ୍ ବାଲ୍ମୀକି ଯୋଽଭିଧୀୟତେ
ତସ୍ମା ଦସ୍ମପିତା ଶକ୍ତିର୍ବ୍ୟାସସ୍ତସ୍ମାଦହଂ ମୁନେ ।୧୮।
ଜାତୁ କର୍ଣ୍ଣୋଽଭବନ୍-ମତଃ କୃଷ୍ଣ ଦ୍ୱୈପାୟନ ସ୍ତତଃ
ଅଷ୍ଟାବିଂଶତିରିତ୍ୟେତେ ବେଦବ୍ୟାସାଃ ପୁରାତନଃ ।୧୯।
ଏକୋବେଦଶ୍ଚତୁର୍ଧାତୁ ତୈଃ କୃତୋ ଦ୍ୱାପରାଦିଷୁ ।୨୦।
ଭବିଷ୍ୟେ ଦ୍ୱାପରେ ଚାପି ଦ୍ରୌଣି ର୍ବ୍ୟାସୋ ଭବିଷ୍ୟତି
ବ୍ୟତୀତେ ମମ ପୁତ୍ରୋଽସ୍ମିନ୍ କୃଷ୍ଣ ଦ୍ୱୈପାୟନେ ମୁନେ ।୨୨

## ଓଡ଼ିଆ ପଦ୍ୟାନୁବାଦ

ଶ୍ରୀ ପରାଶର ଉବାଚ

ପ୍ରତି ଦ୍ୱାପର ଯୁଗରେ ବ୍ୟାସ ରୂପ ଧରି ।
ଜନ ହିତେ ବେଦ ଭାଗ କରନ୍ତି ଶ୍ରୀହରି ।୫।

× × ×

ବୈବସ୍ୱତ ମନ୍ୱନ୍ତରେ ପ୍ରତି ଦ୍ୱାପରରେ
ଅଠାଇଶ ଥର ବ୍ୟାସ ବେଦଭଗ କଲେ ।୯।
ପ୍ରତି ଦ୍ୱାପରରେ ଅଠାଇଶ ବ୍ୟାସଗଣ
ବେଦେ ଗ୍ୱରିଭଗ କଲେ କହୁଅଛି ଶୁଣ ।୧୦।
ସ୍ୱୟଂ ସ୍ୱାୟମ୍ଭୁବ ବ୍ୟାସ ପ୍ରଥମ ଦ୍ୱାପରେ
ପ୍ରଜାପତି ବେଦବ୍ୟାସ ହେଲେ ଦ୍ୱିତୀୟରେ ।୧୧।

× × ×

ତାହାପରେ ବ୍ୟାସ ଶକ୍ତି ମୋହର ଜନକ
ତାଙ୍କ ପରେ ମୁହିଁ ବ୍ୟାସ ଦେବ ବିଭଜକ ।୧୮।
ତହୁଁ ଜାତୁକର୍ଣ୍ଣ ପରେ କୃଷ୍ଣ ଦ୍ୱୈପାଯନ ।
ଅଠାଇଶ ବେଦବ୍ୟାସ ସର୍ବେ ପୁରାତନ ।୧୯।
ଦ୍ୱାପରର୍ଦ୍ଦି ଯୁଗେ ଏକ ବେଦ ଗ୍ୱରି କଲେ ।
ବେଦ ବିଭଗ କଲରୁ ବ୍ୟାସ ବୋଲାଇଲେ ।୨୦।
ମୋହପୁତ୍ର କୃଷ୍ଣ ଦ୍ୱୈପାୟନ ଅନନ୍ତରେ ।
ଅଶ୍ୱଥାମା ବ୍ୟାସ ହେବେ ଆଗାମୀ ଦ୍ୱାପରେ ।୨୧।

× × ×

ସବୁ ଶାଖାର ପ୍ରଣେତା ସେହି ଭଗବାନ ।
ଶାଖାମାନଙ୍କ ଅସଙ୍ଗ ପ୍ରଭୁ ଏକା ଜ୍ଞାନ ।୩୧।"

ଇତି ଶ୍ରୀ ବିଷ୍ଣୁ ପୁରାଣେ ତୃତୀୟ ଅଂଶେ ତୃତୀୟ ଅଧ୍ୟାୟ ।

କୃଷ୍ଣ ଦ୍ୱୈପାୟନ ବ୍ୟାସଦେବ ବେଦକୁ ଗ୍ୱରିଭଗ କରି ଋଗ୍ ବେଦକୁ ପୈଲ, ଯଜୁର୍ବେଦକୁ ବୈଶମ୍ପାୟନ, ସାମବେଦକୁ ଜୈମିନି, ଅଥର୍ବ ବେଦକୁ ସୁମନ୍ତୁ ଏବଂ ପୁରାଣ ଇତିହାସକୁ ରୋମ ହର୍ଷଣ (ଅନ୍ୟନାମ ସୁତ)ଙ୍କୁ ଶିକ୍ଷା ଦେଇ ଅଛନ୍ତି ।

ବ୍ରହ୍ମ; ପଦ୍ମ; ବିଷ୍ଣୁ; ଶିବ, ଭଗବତ, ନାରଦ; ମାର୍କଣ୍ଡେୟ; ଅଗ୍ନି, ଭବିଷ୍ୟତ, ବ୍ରହ୍ମବୈବର୍ତ୍ତ, ଲିଙ୍ଗ, ବରାହ, ସ୍କନ୍ଦ, ବାମନ, କୂର୍ମ, ମତ୍ସ୍ୟ, ଗରୁଡ଼, ବ୍ରହ୍ମାଣ୍ଡ ଆଦି ଅଷ୍ଟାଦଶ ମହାପୁରାଣ ଏବଂ ମହାଭରତର ରଚୟିତା ମହାମୁନି କୃଷ୍ଣ ଦ୍ୱୈପାୟନ ବ୍ୟାସଦେବ ତାଙ୍କର ରଚିତ ଶାସ୍ତ୍ର ଗୁଡ଼ିକରେ କେଉଁଠାରେ

ନିଜର ଜନ୍ମଭୂମି ସମ୍ପର୍କରେ କୌଣସି ନିଜସ୍ୱ ମନ୍ତବ୍ୟ ଉଲ୍ଲେଖ କରି ନଥିବା ବିଷୟ ବହୁ ପଣ୍ଡିତଙ୍କଠାରୁ ଶୁଣିବାକୁ ମିଳେ ।

ଭଗବାନ କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ଜନ୍ମଭୂମି ଉପରେ ଭାରତର ବିଜ୍ଞ ପଣ୍ଡିତ ମଣ୍ଡଳୀ କେଉଁଭଳି, କେଉଁ ପ୍ରକାର ସିଦ୍ଧାନ୍ତ ନେଇଅଛନ୍ତି ଏବଂ କାହାର ସିଦ୍ଧାନ୍ତ ପ୍ରକୃତ ସତ୍ୟକୁ କେତେଦୂର ସ୍ପର୍ଶ କରିଅଛି ଇତ୍ୟାଦି ବିଷୟ ମୋ ଭଳି ଜଣେ ସାଧାରଣ କବି ପକ୍ଷରେ ଚିନ୍ତାକରିବା ଅସମୀଚୀନ । ତଥାପି ଭଗବତ୍ କୃପାରୁ ମହାମୁନି କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ଶ୍ରୀଚରଣ କମଳ; ଅଧମାଧମ ଲେଖକ ପ୍ରାଣରେ ଯେଉଁ ଭାବ ସୃଷ୍ଟି କରୁଅଛନ୍ତି; ତାହାକୁ ପ୍ରସ୍ଫୁଟିତ କରାଇବା ଉଦ୍ଦେଶ୍ୟରେ ତାଙ୍କର ଜନ୍ମଭୂମି ବିହିତ ଜନ୍ମ ବିବରଣୀ ନିମ୍ନରେ ଉଲ୍ଲେଖ କରୁଅଛି ।

ନାଗର ରାଜ୍ୟର ବେଦବ୍ୟାସ ପାହାଡ଼ ପଦ ଧୌତ କରୁଥିବା ବ୍ରାହ୍ମଣୀ ନଦୀ କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କର ପବିତ୍ର ଜନ୍ମସ୍ଥଳୀ ଗାଥା ଓଡ଼ିଆ ପୁରାଣ ଏବଂ କିମ୍ବଦନ୍ତୀଗୁଡ଼ିକ ଘୋଷଣା କରି ଆସୁଅଛନ୍ତି ।

ଦ୍ୱାପର ଯୁଗ ପୂର୍ବରୁ ମହାବୀର ବର୍ତ୍ତମାନ ରହିଅଛିଛି । ବେଦବ୍ୟାସ ଏବଂ ଝରିଆ ପାହାଡ଼ ଦ୍ୱୟ ମହାବୀରର ଅଂଶ ବିଶେଷ ଅଟନ୍ତି । ଉତ୍ତରରୁ କୋଏଲ (ଅନ୍ୟ ନାମ ଯମୁନା), ଦକ୍ଷିଣରୁ ଶଙ୍ଖ (ଅନ୍ୟନାମ ଗଙ୍ଗା) ନଦୀ ଦ୍ୱୟର ମହାସ୍ରୋତ ବେଦବ୍ୟାସରେ ମିଳିତ ହୁଅନ୍ତି । ବେଦବ୍ୟାସର ପଶ୍ଚିମ ଅଂଶକୁ ଲାଗି ରହିଥିବା ମହାବୀର ଶୈଳ କୋଳରୁ ସରସ୍ୱତୀ ଝରଣା ପୂର୍ବାଭିମୁଖୀ ହୋଇ ଉପରୋକ୍ତ ମହାସ୍ରୋତରେ ମିଳିତ ହୋଇ ମହାନଦୀ ନାମ ଧାରଣ କରି, ମହାବୀର ଶୈଳ ଶଯ୍ୟା ଭେଦକରି ବଙ୍ଗୋପସାଗରରେ ପଡ଼ିଅଛି ।

ଋଷିଶ୍ରେଷ୍ଠ ବ୍ୟାସଦେବ ଋଷି ବେଶରେ ବ୍ୟାସଦେବ ମହାବୀରସ୍ଥ ଝରିଆ ପାହାଡ଼ ଆଶ୍ରମରେ ରହୁଥିଲେ । ସେ ପ୍ରତ୍ୟହ ମହାନଦୀ (ଅନ୍ୟନାମ ମହାସ୍ରୋତ) ପାର-ହୋଇ ବେଦବ୍ୟାସର ବ୍ରହ୍ମବେଦୀରେ ତପସ୍ୟା କରୁଥିଲେ ।

## କଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ପୂର୍ବଜନ୍ମ ବୃତ୍ତାନ୍ତ :—

ଅଙ୍ଗଟ ଦେଶର କଚଷ୍ଣା ନଗ୍ରରେ ଜୁନ୍ତ ବ୍ରାହ୍ମଣ ଥିଲେ । ତାଙ୍କ ସ୍ତ୍ରୀଙ୍କର ନାମ ଗାନ୍ଧାରୀ । ପୁତ୍ରର ନାମ ଚନ୍ଦ୍ରସେନ । ଚନ୍ଦ୍ରସେନ ବିଷ୍ଣୁଙ୍କଠାରୁ ବରପ୍ରାପ୍ତ ହୋଇ ଅପର ଜନ୍ମରେ ପରାଶରଙ୍କ ବୀର୍ଯ୍ୟରୁ କୈବର୍ତ୍ତ କନ୍ୟା ଯୋଜନ ଗନ୍ଧା ଗର୍ଭରେ ବ୍ୟାସଦେବ ରୂପେ ଜନ୍ମ ହେବା ପାଇଁ ଛବିଶତମ ବ୍ୟାସଦେବ ପରାଶରଙ୍କ ଶରୀରରେ ଆଶ୍ରୟ ନେଲେ ।

"ବୋଇଲେ ଶୁଣ ଚନ୍ଦ୍ରସେନ । ଜନ୍ମିବୁ କୈବର୍ତ୍ତୀ ଘରେଣ ।
ଯୋଜନ ଗନ୍ଧାର ଗର୍ଭରୁ । ପରାଶରଙ୍କ ବୀର୍ଯ୍ୟରୁ ॥
ଏମନ୍ତ କହି ହରି ଗଲେ । ବୈକୁଣ୍ଠ ପୁରେ ବିଜେ କଲେ ।"

× × × ×

"କହଇ ଜଗନ୍ନାଥ ଦାସ । ପୁରାଣେ ଭଗବତ ରସ ।୧୧୯।"
(ଗୁପ୍ତ ଭଗବତ ନବମ ଅଧ୍ୟାୟ)

## ଯୋଜନଗନ୍ଧାର ପୂର୍ବଜନ୍ମ ବୃତ୍ତାନ୍ତ :—

ପୂର୍ବୋକ୍ତ ମହାନଦୀର ଉତ୍ତର ଦିଗରୁ ବହି ଆସୁଥିବା କୋଇଲି ଯାହାର ଅନ୍ୟନାମ ଯମୁନା, ଏହାର ପୂର୍ବତଟରେ ଦାସରଜାଙ୍କର ରାଜବାଟୀ ଥିଲା ।

କାଶୀପୁର ରାଜ୍ୟର ରାଜା ବାରଭେଜ । ତାଙ୍କର ପତ୍ନୀଙ୍କ ନାମ ଦମୟନ୍ତୀ । ଦମୟନ୍ତୀ ବ୍ରହ୍ମଙ୍କୁ ତପସ୍ୟାରେ ସନ୍ତୋଷ କରି, ବ୍ରହ୍ମାଙ୍କ ବରରୁ ଏକ କନ୍ୟାରତ୍ନ ଲଭ କଲେ । କନ୍ୟାର ନାମ ଶ୍ରଦ୍ଧା । ଶ୍ରଦ୍ଧା ସୁପ୍ରଭ ଋଷିଙ୍କୁ ବିବାହ କଲେ । ବାସର ରାତ୍ରିରେ ଶ୍ରଦ୍ଧା ସୁପ୍ରଭ ଋଷିଙ୍କୁ ରତି କ୍ରୀଡ଼ାରୁ ବର୍ଜିତ କରାଇବାରୁ ଋଷି ତାକୁ ଅଭିଶାପ ଦେଇ କହିଲେ—

"କୋପେ ତା ସ୍ୱାମୀ ଶାପ ଦେଲା । ଅଜାତେ ଜନ୍ମ ତୁ ବୋଇଲା ॥
ରଜାର ବୀର୍ଯ୍ୟେ ଜନ୍ମ ହେବୁ । ମତ୍ସ୍ୟର ଗର୍ଭରେ ବଢ଼ିବୁ ॥
ସ୍ୱାମି ଯେ ପୁତ୍ର ଦୁଇ ଜନ୍ମ । ଲଭିବୁ କୈବର୍ତ୍ତୀ ଗର୍ଭେଣ ॥
କୈବର୍ତ୍ତୀ କଲୁ ମୋତେ ଯେଣୁ । କୈବର୍ତ୍ତ ଘରେ ଜନ୍ମ ତେଣୁ ॥
ତୋ ପୁଣ୍ୟ ଏମନ୍ତ ହୋଇବ । ତୋ ଗର୍ଭେ ପୁତ୍ର ଜନମିବ ॥

ସୃଷ୍ଟିକି ହୋଇବ ଧାରଣା । ବେଦ ପଢ଼ିବ ଅକଳନା ।।
ବେଦବ୍ୟାସ ତା ନାମ ହେବ । ପରାଶର ବୀର୍ଯ୍ୟେ ଜନ୍ମିବ ।।"

× × ×

"ଭଣଇ ଦାଶ ଜଗନ୍ନାଥ । ଚତୁର୍ଥ ସ୍କନ୍ଧେ ଭାଗବତ ।।"

(ଗୁପ୍ତ ଭାଗବତ ଦଶମ ଅଧ୍ୟାୟ)

ପୂର୍ବୋକ୍ତ ମହାନଦୀ (ଅନ୍ୟନାମ ପୂର୍ଣ୍ୟନଦୀ) ଉତ୍ତର ଦିଗରୁ ବହି-ଆସୁଥିବା କୋଇଲି (ଯମୁନା ନଦୀ) ଏହାର ପୂର୍ବ ତଟରେ ସ୍ଥଟକ ଗ୍ରାମରେ ପୁତ୍ର ଦାସ ରଜାଙ୍କର ରଜବାଟୀ ଥିଲା । ଦାସରଜା ଗିରି ରଜାଙ୍କ କନ୍ୟା ଗିରିମାଙ୍କୁ ବିବାହ ହେଲେ । ବନ୍ଦାପନା ଦିନ ପିତୃଶ୍ରାଦ୍ଧ ପଡ଼ିବାରୁ ଦାସରଜା ପୁରୋହିତର ପରାମର୍ଶରେ ବନ୍ଦାପନା କର୍ମ ବନ୍ଦ କରି ବନସ୍ତକୁ ମୃଗୟାର୍ଥେ ଗମନ କଲେ । ବଣରେ ମୃଗ-ରଜା ଏବଂ ମୃଗୁଣୀଙ୍କର ସହବାସ ଦେଖି ରଜାଙ୍କର ବୀର୍ଯ୍ୟ ସ୍ଖଳିତ ହେଇ । ଦାସରଜା ନିଜ ବୀର୍ଯ୍ୟକୁ ସିଆଳୀ ପତ୍ର ଚଉପଦୀରେ ରଖି ଏକ ବାଜପକ୍ଷୀ ହସ୍ତରେ ତାଙ୍କ ସ୍ତ୍ରୀଙ୍କ ନିକଟକୁ ସନ୍ତନାର୍ଥେ ପ୍ରେରଣ କଲେ । ବାଟରେ ଅନ୍ୟ ଏକ ବାଜପକ୍ଷୀ ପୂର୍ବୋକ୍ତ ବାଜପକ୍ଷୀ ଉପରକୁ ଆହାରର୍ଥେ ଝାମ୍ପ ଦେବାରୁ ବୀର୍ଯ୍ୟ ଦୁଇଖଣ୍ଡ ହୋଇ ପୂର୍ଣ୍ୟନଦୀ ଜଳରେ ପଡ଼ିଲା । ରାଘବ ମାଛ ବୀର୍ଯ୍ୟ ଦୁଇଖଣ୍ଡ ଗିଳିବାରୁ ତାର ଗର୍ଭରେ ଗର୍ଭ ସଞ୍ଚାର ହେଲା ।

ଧୀବର ସେହି ରାଘବ ମାଛକୁ ଜାଲରେ ଧରି ଦାସ ରଜାଙ୍କୁ ଭେଟି ଦେଲେ । ରଜା ମାଛ ଗର୍ଭରୁ ମାନବ ଶିଶୁର ସ୍ୱର ଶୁଣି ମାଛକୁ କଟାଇ ତାର ଗର୍ଭରୁ ଏକ ପୁତ୍ର ଏବଂ ଏକ କନ୍ୟା ଲାଭ କଲେ । ଅପୁତ୍ରିକ ଦୋଷରୁ ମୁକ୍ତ ହେବାପାଇଁ ପୁତ୍ରଟିକୁ ପାଖରେ ରଖି କନ୍ୟାକୁ ଧୀବରକୁ ଦାନକଲେ । ଧୀବର ବୃଦ୍ଧ ଅବସ୍ଥାରେ ନିଜର ଦୁହିତାକୁ ନୌକା ବାହିବା କର୍ମରେ ନିଯୁକ୍ତ କରାଇଲେ ।

**କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ଜନ୍ମ :—**

ମହାନଦୀ ଉତ୍ତରରେ ଥିବା କୋଇଲି ସ୍ରୋତରେ କୈବର୍ତ୍ତୀ ଦୁହିତା ଯାତ୍ରୀମାନଙ୍କୁ ନୌକାରେ ପାରକରୁଥିଲେ । ଏକଦା ପରାଶର ଋଷି ନଦୀତୀରରେ ପହଞ୍ଚି ନୌକାରେ ପରପାରିକୁ ଯିବାପାଇଁ ମତ୍ସ୍ୟଗନ୍ଧାକୁ କହିଲେ । ମତ୍ସ୍ୟଗନ୍ଧା

ଋଷିଙ୍କୁ ଏକାକୀ ନୌକାରେ ବସାଇ ନୌଚାଳନା କରୁଥାଏ । ତ୍ରିକାଳଜ୍ଞ ପରାଶର ନୌଚାଳନା ସମୟକୁ ମାହେନ୍ଦ୍ର ବେଳାଜାଣି ଧୀବର ତନୟା ଗର୍ଭରେ ନିଜ ବୀର୍ଯ୍ୟରୁ ଏକ ସନ୍ତାନ ଜନ୍ମ କରାଇବା ଅଭିଳାଷ ମତ୍ସ୍ୟଗନ୍ଧାକୁ ଜଣାଇଲେ ।

ଦାଶରାଜାଙ୍କ କନ୍ୟା କେଉଟ ଗୃହରେ ପାଳିତ ହୋଇଥିବାରୁ ତାହାର ଦେହରୁ ଆମିଷ ଗନ୍ଧ ବାହାରୁଥାଏ । ସେତେବେଳକୁ ତାର ବୟସ ପ୍ରାୟ ବାର ବର୍ଷ ହୋଇଥାଏ । ସେ ଅରେଜବତୀ ହୋଇଥିବାରୁ ଋଷିଙ୍କୁ ଦେହଦାନ କରିବା ପାଇଁ ଅନିଚ୍ଛୁକ ହେଲା । ପରାଶର ମନ୍ତ୍ରଜଳ ସିଞ୍ଚି ତାକୁ ରଜୋବତୀ କରାଇଲେ । କମଣ୍ଡଳୁ ଜଳସିଞ୍ଚି ମତ୍ସ୍ୟଗନ୍ଧାର ମତ୍ସ୍ୟଗନ୍ଧ ଦୂରକଲେ । ତା ଦେହରେ କସ୍ତୁରୀଚନ୍ଦନ ବାସ ଜାତ ହୋଇ ତାହା ଯୋଜନ ପର୍ଯ୍ୟନ୍ତ ପବନରେ ବିସ୍ତାରିତ ହେଲା । କୁମାରୀ ସହସା ନବଯୁବତୀରେ ପରିଣତ ହୋଇ ପରାଶରଙ୍କୁ ରତିଦାନ କରିବା ପାଇଁ ସମ୍ମତି ପ୍ରଦାନ କଲା । ମତ୍ସ୍ୟଗନ୍ଧା କସ୍ତୁରୀ ଚନ୍ଦନ ବାସ ବହନ କରି ଯୋଜନ ଗନ୍ଧା ଏବଂ ରତିଦାନ ସମ୍ମତି ଦେଇ ସତ୍ୟବତୀ ନାମ ଲଭ କଲେ ।

ଦିବା ଲୋକରେ ଲୋକ ଲଜ୍ୟାରୁ ଦୂରରେ ରହି ରମଣ ପାଇଁ ପରାଶର ନୌକାରେ କୁହୁଡ଼ି ସୃଷ୍ଟି କରାଇଲେ । କୁହୁଡ଼ି ବ୍ୟୁହରେ ଯୋଜନଗନ୍ଧା ସହିତ ଅତି ଆନନ୍ଦରେ ରତିକ୍ରୀଡ଼ା ସମାପନ କଲେ । ପରାଶର ଋଷିଙ୍କ ବୀର୍ଯ୍ୟରୁ ଯୋଜନଗନ୍ଧା ଗର୍ଭରେ ଗର୍ଭ ସଞ୍ଚାର ହେଲା । ମହାସ୍ରୋତ ମଧ୍ୟସ୍ଥ ପୁଣ୍ୟଭୂମି ଯମୁନା କୂଳ (ଯମୁନା ଦ୍ୱୀପ)ରେ ମେଷ ମାସ ଶୁକ୍ଳପକ୍ଷ ଅକ୍ଷୟ ତୃତୀୟା ବୁଧବାର ମାହେନ୍ଦ୍ର ବେଳାରେ ଯୋଜନଗନ୍ଧା (ଅନ୍ୟନାମ ମତ୍ସ୍ୟଗନ୍ଧା ଓ ସତ୍ୟବତୀ) ଗର୍ଭରୁ ନବ କୁମାର ଜାତ ହେଲେ । ଋଷି ଯୋଗମାୟାଙ୍କ ସାହାଯ୍ୟରେ ପରାଶର ନବଜାତ ସନ୍ତାନର ଜନ୍ମ ସଂସ୍କାର କର୍ମ ଯମୁନା ଦ୍ୱୀପରେ ସମ୍ପର୍ଣ୍ଣ କରାଇ ଯୋଜନ ଗନ୍ଧାକୁ ଭାଗ୍ୟବତୀ ନାମ ପ୍ରଦାନ କଲେ । ସନ୍ତାନର ନାମ କୃଷ୍ଣ ଦ୍ୱୈପାୟନ ଦେଲେ । ସତ୍ୟବତୀ ସ୍ୱଗୃହକୁ ଯିବାକୁ ଇଚ୍ଛା ପ୍ରକାଶ କରିବାରୁ ପରାଶର ତାଙ୍କୁ ପୂର୍ବ କୁମାରୀ ରୂପ ଦାନ କରି ବିଦାୟ ଦେଲେ ।

## କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ସଂକ୍ଷିପ୍ତ ଜୀବନୀ:—

ସମୟ ଗଡ଼ିଚାଲେ । ବେଦବ୍ୟାସ ପାହାଡ଼ ବନଭୂମିରେ ସତ୍ୟବତୀ ପରାଶରଙ୍କ କୋଳରେ କୃଷ୍ଣ ଦ୍ୱୈପାୟନ ଲଜ୍ଜିତ ପାଳିତ ହୋଇ ବାରବର୍ଷରେ ପଦାର୍ପଣ କଲେ । ବାରବର୍ଷ ବୟସରେ କୃଷ୍ଣ ଦ୍ୱୈପାୟନ ପିତାମାତାଙ୍କ ଆଶିଷ ଘେନି ବ୍ରହ୍ମଚାରୀ ସନ୍ୟାସ ବ୍ରତ ଅବଲମ୍ବନାର୍ଥେ ଅନ୍ୟତ୍ର ଗମନ କଲେ ।

ସନ୍ୟାସୀ ବ୍ରତ ଅବଲମ୍ବନ କରି ଯୋଗସିଦ୍ଧ ହେଲେ । ବେଦ ବିଭଜନ କରି ଅଠେଇଶତମ ବ୍ୟାସଦେବ ହେଲେ । ମାତା ସତ୍ୟବତୀଙ୍କ ଆଦେଶ ପାଳନ କରି ସୋମବଂଶ ଉଦ୍ଧାର ପାଇଁ ବିଚିତ୍ର ବୀର୍ଯ୍ୟ, ଚିତ୍ରାଙ୍ଗଦ ଦୁଇ ଭାଇଙ୍କର ବିଧବା ସ୍ତ୍ରୀ ଅମ୍ବିକା ଏବଂ ଅମ୍ବାଳିକା ସହିତ ରମଣ କଲେ । ବ୍ୟାସଦେବଙ୍କ ଔରଷରୁ ବେନି ରାଣୀଙ୍କ ଗର୍ଭରୁ ଯଥାକ୍ରମେ ଧୃତରାଷ୍ଟ୍ର; ପାଣ୍ଡୁ ଜନ୍ମ ହେଲେ । ପୁନଶ୍ଚ ମାତାଙ୍କ ବଚନ ପାଳନ କରି ବ୍ୟାସଦେବ ଅମ୍ବୁବତୀ ଦାସୀ ସହିତ ରମଣ କଲେ । ଅମ୍ବୁବତୀ ଗର୍ଭରୁ ବିଦୁର ଜନ୍ମ ହେଲେ ।

କୃଷ୍ଣ ଦ୍ୱୈପାୟନ ବ୍ୟାସଦେବ ଶରଭଙ୍ଗ ଋଷିଙ୍କ କନ୍ୟା ଛାୟାବତୀଙ୍କୁ ବିବାହ ହୋଇ ବଦରିକା ଆଶ୍ରମରେ ରହିଥିଲେ । ବେଦକୁ ଋଗ୍ ବେଦ ଯଜୁର୍ ବେଦ ସାମବେଦ ଓ ଅଥର୍ବ ବେଦ ଆଦି ନାମରେ ବିଭକ୍ତ କରି ପ୍ରଚାର କଲେ ' ଅଷ୍ଟାଦଶ ପୁରାଣ ମହାଭାରତ ରଚନା ସହିତ ଅନେକ ଅଲୌକିକ ଦିବ୍ୟ କର୍ମମାନ ସମ୍ପାଦନ କରି ଜଗତର ଅଜ୍ଞାନ ଅନ୍ଧକାର ଦୂରକଲେ । ସଞ୍ଜୟକୁ ଦିବ୍ୟାଲୋକ ପ୍ରଦାନ କରି ଧୃତରାଷ୍ଟ୍ରଙ୍କୁ ସଞ୍ଜୟ ଦ୍ୱାରା କୃତକର୍ମଫଳ ସ୍ମରଣ କରାଇ ଥିଲେ । ଏହିଭଳି ଅନନ୍ତ ଅକ୍ଷୟ ଯଶ ଅର୍ଜନ କରି ଚିର-ଅମର ବ୍ୟାସଦେବ କଳିରେ ଅଦୃଶ ହୋଇ ବିରାଜମାନ କରି ଅଛନ୍ତି । ଏହାଙ୍କର ପୁତ୍ର ଶୁକ ମୁନି-ରୂପେ ଜଗତରେ ଅକ୍ଷୟ କୀର୍ତ୍ତି ରଖିଅଛନ୍ତି ।

କୃଷ୍ଣ ଦ୍ୱୈପାୟନ ବେଦବ୍ୟାସ ସମୟାନୁଯାୟୀ ନିଜର ଜନ୍ମନଦୀ ତଟସ୍ଥ ବେଦବ୍ୟାସ ପାହାଡ଼ ଗୁମ୍ଫାରେ ରହିଥିଲେ । ସେ ଗୁମ୍ଫା ସମ୍ମୁଖସ୍ଥ ଶିଳା ବେଦୀରେ ତପସ୍ୟା କରି ଏହାକୁ ବ୍ରହ୍ମବେଦୀ ନାମରେ ନାମିତ କରାଇଥିବା ବିଷୟ ଜନଗାଥା କହେ । ସମ୍ଭବତଃ କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ପୂର୍ବରୁ ଏବଂ ପରେ ପୂର୍ବୋକ୍ତ ଶିଳାବେଦୀ ବହୁ ମୁନି, ଋଷି ସିଦ୍ଧସାଧକମାନଙ୍କ ତପସ୍ୟା ସ୍ଥଳୀ ରୂପେ ବ୍ୟବହୃତ ହୋଇ ଆସିଥିବାରୁ ଏହି ଶିଳାବେଦୀ ବ୍ରହ୍ମବେଦୀ

ନାମରେ ପରିଚିତ ହୋଇଆସିଅଛି । ବେଦବ୍ୟାସ ପଦଦେଶ ବ୍ରାହ୍ମଣୀ କୂଳକୁ ଲଗି ବ୍ୟାସଦେବଙ୍କ ଶିଳା ନିର୍ମିତ ପ୍ରାକୃତିକ ଯଜ୍ଞ୍ୟକୁଣ୍ଡ ଥିଲା । ବ୍ୟାସଦେବ ଏହି କୁଣ୍ଡରେ ପ୍ରତ୍ୟହ ଯଜ୍ଞ କରୁଥିଲେ । ଶିବଙ୍କ ପୁତ୍ର କାର୍ତ୍ତିକେୟ ତୀର୍ଥ ଭ୍ରମଣରେ ଆସି ବ୍ରାହ୍ମୀ ନଦୀ (ବ୍ରାହ୍ମଣୀ ନଦୀ) ଜଳରେ ସ୍ନାନ କରି ବ୍ୟାସ ଗୁମ୍ଫା ବ୍ରହ୍ମବେଦୀ ଦର୍ଶନ କରିଥିଲେ । ବ୍ରହ୍ମବେଦୀରୁ ବ୍ୟାସଦେବ ଜନ୍ମନଦୀ ଦର୍ଶନ କରିଥିବା ଗାଥା ଶିବ ପୁରାଣ ଘୋଷଣା କରିଛି ।

ଯଥା :—

"ସ୍ନାନ ସନ୍ଧ୍ୟା ଆଦିକରି ନିତ୍ୟ କୃତ୍ୟମାନ
ତହିଁପରେ ବରହକୁ କରିଲେ ଦର୍ଶନ ।।
ପଞ୍ଚରାତ୍ର ରହି ସେଠାବରୁ ଚଳିଗଲେ
ବ୍ରହ୍ମନଦୀ ତୀରେ ଯାଇ ପ୍ରବେଶ ହୋଇଲେ ।।
ସ୍ନାନକରି ସେ ସ୍ଥାନରେ ଦେଖି ବ୍ରହ୍ମବେଦୀ
ସେଠାରୁ ଦେଖିଲେ ଯାଇ ବ୍ୟାସ ଜନ୍ମନଦୀ ।।
ସେ ନଦୀ ଜଳରେ ସ୍ନାନ କରି ଷଡ଼ାନନ
ଶିଖରଚଳରେ ଯାଇ ମିଳିଲେ ବହନ ।।"

ଶିବ ପୁରାଣ; ଦ୍ୱିତୀୟ ଖଣ୍ଡ

ଉକ୍ତ ଅଠେଇଶତମ ବ୍ୟାସଦେବ କୃଷ୍ଣ ଦ୍ୱୈପାୟନ ବ୍ୟାସ ସ୍ୱକୀୟ ମହାନ୍ ସାଧନା ବଳରେ ନିଜକୁ ଚିର-ଅମର କରି ନିଜର ଜନ୍ମନଦୀ ବ୍ରାହ୍ମଣୀ ଏବଂ ବେଦବ୍ୟାସ ଧାମକୁ ନାରଗ, ଉତ୍କଳ ଏବଂ ଭରତ କୋଳରେ ମହୀୟାନ କରିଅଛନ୍ତି ।

## କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ଜନ୍ମ ଏବଂ ଜନ୍ମଭୂମି ସମ୍ପର୍କୀୟ କେତେକ ସ୍ପଷ୍ଟୀକରଣ:—

### (କ) ମହାବୀର ପର୍ବତ ଓ ବେଦବ୍ୟାସ ଆଶ୍ରମ :—

ମହାବୀର ପର୍ବତର ବ୍ରାହ୍ମଣୀ ଉପଲି ସ୍ରୋତରେ ପଶ୍ଚିମ ତଟସ୍ଥ ଶୃଙ୍ଗରେ ବେଦବ୍ୟାସ ଆଶ୍ରମ ଚିରକାଳୁଁ ପ୍ରତିଷ୍ଠିତ ହେବା ବିଷୟ ବ୍ୟାସାଶ୍ରମ ଘୋଷଣା କରିଅଛି । ଯଥା :—

"ଚିରଂଗାଙ୍ଗକ୍ଷୋଣୀନ୍ତରେ ନାଗର ହୃଷିତି କ୍ରୋଡ଼ ସଙ୍ଗେ ମହାବୀର ଶୈଳେ ।
ପୁରାଣାଦସ୍ତଥା ଶ୍ରୁୟତେ କଲ୍ମଷଘ୍ନଂ ତଦୀୟଂ ପଦଂ ଭାତି ପୁଣ୍ୟଂ ତଥୈବ ॥୭॥

ଅର୍ଥାତ୍ ଗାଙ୍ଗପୁର ଜନପଦ ପଦାଅନ୍ତଃ ପାତୀ ନାଗର କାଶ୍ୟପୀର ଅଙ୍କଶାୟୀ ମହାବୀର ଶୈଳ ଉପରେ ଚିରକାଳ ସେହି ବ୍ୟାସଦେବଙ୍କ ପବିତ୍ର ପାଦ ବିଧ୍ୱଂସି ଗୋଟିଏ ଆଶ୍ରମ ଅଛି ସେପରି (ବ୍ୟାସଦେବଙ୍କ ଆଶ୍ରମ ଅଛି ବୋଲି) ପୁରାଣମାନଙ୍କରୁ ଶ୍ରୁତ ହୁଏ" ।୭।

ସୁନ୍ଦରଗଡ଼ ଜିଲ୍ଲା (ପ୍ରାଚୀନ ଗାଙ୍ଗପୁର ରାଜ୍ୟ)ର ବଡ଼ଗାଁ ଠାରୁ ଆରମ୍ଭ ହୋଇ ଗାଙ୍ଗେୟ ଉପତ୍ୟକା ପର୍ଯ୍ୟନ୍ତ ଏକ ଧାଡ଼ିରେ ଥିବା ସୁବିସ୍ତୃତ ପାର୍ବତ୍ୟମାଳାକୁ ମହାବୀର ନାମରେ ନାମିତ କରଯିବା ବିଷୟ ଜନଗାଥା ପ୍ରଚାର କରି ଆସିଅଛି । ଉକ୍ତ ପାର୍ବତ୍ୟମାଳାରେ ବହୁ ଦେବ ଦେବୀ, ଗୁମ୍ଫା, ନଦୀ ସ୍ରୋତ ଏବଂ ଐତିହାସିକ ତଥ୍ୟାବଳୀର ଗୁଢ଼ତଥ୍ୟ ଆଦିକାଳରୁ ଏ ପର୍ଯ୍ୟନ୍ତ ନିହିତ ହୋଇ ରହିଅଛି ।

(ଖ) ପରାଶର ଆଶ୍ରମ :—

ମହାବୀର ପାର୍ବତ୍ୟମାଳା ସ୍ଥିତ ବ୍ରାହ୍ମଣୀ ନଦୀର ଉତ୍ପତ୍ତି ଜଳସ୍ରୋତ ଏହାକୁ ବିଭକ୍ତ କରି ସିନ୍ଧୁଗାମିନୀ ହୋଇଅଛି । ନଦୀର ପୂର୍ବ ଖଣ୍ଡରୁ ଅନେକ ଦୂର ଲମ୍ବି ଯାଇଥିବା ମହାବୀର ପାର୍ବତ୍ୟ ଶଯ୍ୟାର ଉଚ୍ଚତମ ଶୃଙ୍ଗର ନାମ ଝରିଆ ପାହାଡ଼ । ଝରିଆ ପାହାଡ଼ର ଦକ୍ଷିଣ ପାର୍ଶ୍ୱ ମଧ୍ୟ ଭାଗର ଟିକିଏ ଉପରେ ପରାଶର ଋଷିଙ୍କ ଗୁମ୍ଫା ଶିଆଳୀ ଲଟାରେ ଆବୃତ ହୋଇ ସ୍ମୃତିକୁ ସବୁଜ ରଖିଥିଲା । ରାଉରକେଲା ସହରର ଇସ୍ପାତ ସଂସ୍କୃତି ବିକାଶରେ ପରାଶର ଋଷି (ଛବିଶତମ ବ୍ୟାସଦେବ)ଙ୍କ ଗୁମ୍ଫା ଆଶ୍ରମର ପ୍ରାକୃତିକ ସୌନ୍ଦର୍ଯ୍ୟ କ୍ରମଶଃ ବିଲୀନ ହୋଇଯିବା ଗାଥା ସ୍ଥାନୀୟ ମୃତ ଏବଂ ଜୀବୀତ ବହୁ ବୃଦ୍ଧଙ୍କଠାରୁ ଲେଖକ ଶୁଣିଅଛି । ଉପରୋକ୍ତ ଶିଆଳୀ ଲଟା ୧୯୬୨ ମସିହାରେ ଲେଖକ ଦେଖିଥିଲା । ଗୁମ୍ଫାର ପଥର ଖଳଲୋକଙ୍କ ଦ୍ୱାରା ଧ୍ୱଂସ ହୋଇଗଲିଅଛି । ରାଉରକେଲା (ମହୁଲପାଲି), କରମ୍ବୁ ଓ କନ୍ଦରକେଲା ପ୍ରଭୃତି ଗ୍ରାମଗୁଡ଼ିକରେ ପରାଶର ଗୋତ୍ରୀ କୃଷ ଦ୍ୱିବେଦୀଙ୍କର ବଂଶଧରମାନେ ବାସ କରୁଅଛନ୍ତି । ଏମାନଙ୍କର ଇଷ୍ଟଦେବୀ ସମଲେଶ୍ୱରୀ ଅଟନ୍ତି ।

(ଗ) ଦାସଗଞ୍ଜା ଗଡ଼ :—

କୋଇଲି ନଦୀର ପୂର୍ବଧାରକୁ ଲଗି ସତ୍ୟବତୀ (ଯୋଜନଗନ୍ଧା ର ବାପା ଦାସଗଜା ଗଡ଼ର ଧ୍ୱଂସ ସ୍ତୂପ, ଶାଳ, ଅଶ୍ୱସ୍ଥ, ବାଉଁଶ ଗୁଳ୍ମ ଲତାଦି ଦ୍ୱାରା ଆଚ୍ଛାଦିତ ହୋଇ ରହିଥିଲା । ଗଡ଼ ମଧ୍ୟସ୍ଥ ଏକ ଅଣଓସାରିଆ ଖାଇ ପୂର୍ବରୁ ପଶ୍ଚିମକୁ ଗତି କରି କୋଇଲି ନଦୀରେ ପଡ଼ିଅଛି । ଖାଇର ଉଭୟ ପାର୍ଶ୍ୱ ଖଣ୍ଡି ଭିତରେ ଥିବା ଶିଳା ଶ୍ରେଣୀକୁ ଦେଖିଲେ ଗଡ଼ର ପ୍ରାଚୀନତା ଅନୁମାନ କରଯାଇ ପାରେ । ଖାଇର ଦକ୍ଷିଣ ଭଗ ଉଚ୍ଚ ମାଟି ସ୍ତୂପ ମଧ୍ୟରେ ଗଡ଼ଶିରୀ ଅର୍ଥାତ ଗଡ଼ଦେବୀ ଉଚ୍ଚ ବୃକ୍ଷାଦି ମେଳରେ ବିଦ୍ୟମାନ ଥିଲେ । ଛୋଟ ଛୋଟ ପ୍ରାଚୀନ ଭଙ୍ଗା ଇଟା ଏଣେତେଣେ ଉଭୟ ପାର୍ଶ୍ୱରେ ପଡ଼ିଥିଲା ।

ଛେଣ୍ଡ଼ ଗ୍ରାମର ଭୂୟାଁ ଗଞ୍ଜୁ ଶ୍ରୀ ଢନେ୍ଜୟ ସା ଏବଂ ଶ୍ରୀ ଢଗତ୍ ସା ଦୁଇ ଭାଇଙ୍କ ପୂର୍ବପୁରୀ କ୍ରମାନ୍ୱୟରେ ସ୍ୱର୍ଗତ ଶିବ ଚରଣ ସା, ଲକ୍ଷ୍ମଣ ସା ଏବଂ ଗୋବିନ୍ଦ ସା ଥିଲେ । ଗୋବିନ୍ଦ ସା ପୂର୍ବ ପୁରୀଗଣ "ପ୍ରାଚୀନ ଦାସ ଗଜା ଗଡ଼ ରକ୍ଷକ" ଭାବେ ପରିଚିତ ଥିଲେ । ଦୈବୀ ବଶତଃ ଗଡ଼ଦେବୀଙ୍କ କୃପା ଏମାନେ ଲଭ କରି ଗଡ଼ ପାଖରେ ବାସ କରୁଥିଲେ । ଲକ୍ଷ୍ମଣ ସା ବାସସ୍ଥାନ ପରିବର୍ତ୍ତନ କରି ଛେଣ୍ଡ ଗ୍ରାମର ଉତ୍ତର ମୁଣ୍ଡରେ ବାସ କଲେ । ସେହିଦିନୁଁ ସା ବଂଶ ଛେଣ୍ଡ ଗ୍ରାମରେ ବାସ କରୁଅଛନ୍ତି । ଏମାନଙ୍କ ଅଧୀନରେ ଗଡ଼ଟି ରହି ଆସିଅଛି ।

ଅଧୁନା ତିନି ଘରିଜଣ ନାଗର ବାହାର ବ୍ୟକ୍ତି ଶ୍ରୀ ଢନେ୍ଜୟ ସା ଏବଂ ଶ୍ରୀ ଢଗତ୍ ସାଙ୍କ ଉଦାରତାର ସୁଯୋଗ ନେଇ ଦାସ ଗଞ୍ଜା ଗଡ଼ ଭିତରେ ଗୃହ ନିର୍ମାଣ କରି ବାସ କରି ଅଛନ୍ତି । ପୂର୍ବର ବାଉଁଶ ବୁଦା ବ୍ୟତୀତ ଅନ୍ୟ କୌଣସି ସଙ୍କେତ ଗଡ଼ରେ ଦେଖାଯାଉନାହିଁ । ଅଳ୍ପକାଳୁଁ ଏକ ଛୋଟ ତେନ୍ତୁଳୀ ବୃକ୍ଷ ଗଡ଼ର ଉଚ୍ଚସ୍ଥଳରେ ଠିଆହୋଇଅଛି । ଖାଇର ଉଭୟ ଖଣ୍ଡି କଣ୍ଟା ଗୁଳ୍ମରେ ପୂରି ରହିଅଛି ଗର୍ତ୍ତରେ ଗଡ଼ଦେବୀଙ୍କ ନୂପୁର ଧ୍ୱନି ସନ୍ନିକଟ ଝରା ଏବଂ ଭୂୟାଁ ଜାତିର ପୁରାତନ ଲୋକେ ଶୁଣିଥିଲେ । ଏବେ ମଧ୍ୟ ଶୁଣାଯିବା ଗାଥା ଛେଣ୍ଡ ବାସିନ୍ଦାଙ୍କ ଠାରୁ ଶୁଣିଅଛି ।

(ଘ) ଗୌତମ ଆଶ୍ରମ :—

ଦାସରଜା ଗଡର ପୂର୍ବ ସୀମାକୁ ଲଗି ଘୋଟକୁର ପାହାଡ଼ ଅବସ୍ଥିତ । ଏହି ପାହାଡ଼ର ଦକ୍ଷିଣ ପାଦ ଦେଶରେ ଗୌତମ ଋଷି ଆଶ୍ରମ କରି ରହିଥିଲେ । ଏକଦା ଇନ୍ଦ୍ର ଗୌତମ ଋଷିଙ୍କ ସ୍ତ୍ରୀ ଅହଲ୍ୟାଙ୍କୁ ହରଣ କରିବାରୁ ଋଷିଙ୍କ ଅଭିଶାପରୁ ଅହଲ୍ୟା ପାଷାଣୀ ହୋଇଥିଲେ । ଇନ୍ଦ୍ର ସହସ୍ର ଯୋନି ରୂପ ଧାରଣ କରିଥିଲେ । ଶଙ୍ଖ ନଦୀ ଗର୍ଭରେ ଇନ୍ଦ୍ର ଯୋନି ପଥର ଆଞ୍ଚଳିକ ଭଷାରେ କାଠି ଟାଙ୍ଗର ନାମ ଧାରଣ କରି ପଡ଼ିରହିଅଛନ୍ତି । ଅହଲ୍ୟାଙ୍କର ପାଷାଣ ସ୍ୱରୂପ ବ୍ରାହ୍ମୀ ଠାକୁରଣୀ (ବ୍ରାହ୍ମଣୀ ଦେବୀ) ନାମ ବହନ କରି କୋଇଲି ନଦୀର ଉତ୍ତର ତଟସ୍ଥ ବ୍ରାହ୍ମଣୀ ପାହାଡ଼ ପାଦଦେଶରେ ଏକ କେନ୍ଦୁବୃକ୍ଷ ମୂଳରେ ରହି ପୂଜା ପାଉଅଛନ୍ତି । ଅନାବୃଷ୍ଟି ସମୟରେ ବ୍ରାହ୍ମୀ ଠାକୁରଣୀଙ୍କୁ ହଳଦି ଗୋବର ବୋଳି ବିଶେଷ ଭବେ ପୂଜା କରଇ ଏହି ଅଞ୍ଚଳରେ ବର୍ଷା କରଇବା ବିଧି ଅଦ୍ୟାବଧି ପର୍ଯ୍ୟନ୍ତ ପ୍ରଚଳିତ ହୋଇ ଆସୁଅଛି । ଏହି ପୂଜାର ମୁଖ୍ୟ ଦାୟୀତ୍ୱ ନିକଟସ୍ଥ ଚୈନପୁର ଭୂୟାଁଗଞ୍ଜ ସ୍ୱର୍ଗତ ଗଣେଶ ଗଉତଙ୍କ ବଂଶଧର-ମାନେ ବହନ କରିଅଛନ୍ତି । ଲେଖକ ପ୍ରାୟତଃ ୧୯୮୩ ମସିହାରେ ସ୍ୱର୍ଗତ ଗଣେଶ ଗଉତଙ୍କୁ ଦେଖା କରିଥିଲ ।

ଶ୍ରୀରାମଚନ୍ଦ୍ର ମହାପ୍ରଭୁ ବିହାରର ରମରେଖା ଧାମରୁ ବେଦବ୍ୟାସ ଧାମ ଦର୍ଶନ କରି ଆସିଥିବା ଗାଥା ଜନଶ୍ରୁତି କହେ । ବ୍ରାହ୍ମଣୀ ଦେବୀ ଉଭୟଙ୍କ ବର୍ଣ୍ଣନା ବ୍ୟାସାଶ୍ରମରେ ଦୃଷ୍ଟି ଗୋଚର ହୁଏ । ଯଥା :—

"ଯତ୍ରୋତ୍ତର ସ୍ୟାଂ ଦିଶି ବ୍ରହ୍ମଣୀତି
ଖ୍ୟାତୋ ସହୋଦ୍ରୁଙ୍ଗ ଧରଧରେଽସ୍ତି ।
ଧାମ୍ନଶ୍ଚ ପୁନର୍ଖବ୍ୟୁତି ରେତ୍ୟନିତ୍ୟଂ
ସାନ୍ଦ୍ରା ବାଭିର୍ନବ ମେଘ ଶଙ୍କାଂ ।।୧୮।।

ଅର୍ଥାତ୍ ଯେଉଁଠାରେ ଆଶ୍ରମରୁ ଦୁଇକୋଶ ଦୂର ଉତ୍ତର ଦିଗରେ ବ୍ରାହ୍ମଣୀ ନାମରେ ଖ୍ୟାତ ମହତ ଉଚ୍ଚ ଗୋଟିଏ ପର୍ବତ ଅଛି, ଯେକି ସାନ୍ଦ୍ର-ବନ ଶ୍ରେଣୀରେ ଉପଲକ୍ଷିତ ହୋଇ ନବମେଘର ଭ୍ରାନ୍ତି ଉତ୍ପାଦନ କରୁଅଛି ।।୧୮।।

ଉପତ୍ୟକାୟାଂ ଧରଣୀ ଧରସ୍ୟ
ତସୈବ ରମଣ୍ୟ ପଦଦହାଲ୍ଲ
ମୁକ୍ତାପି ପାଷାଣମୟୀ ବିଭତୀ
ତ ଶ୍ୟାମି ମାମର୍ତ୍ତି ଚୟଂ ବିଧତ୍ତେ ॥୧୯॥

ଅର୍ଥାତ୍ ସେହି ପର୍ବତର ଉପତ୍ୟକା ପ୍ରଦେଶରେ ଶ୍ରୀ ରାମଚନ୍ଦ୍ରଙ୍କ ପାଦ ପଦ୍ମ ଅନୁଗ୍ରହରୁ ମୁକ୍ତ ହେଲେ ମଧ୍ୟ ଅହଲ୍ୟା ଦେବୀ ପାଷାଣମୟୀ ମୂର୍ତ୍ତି ଧାରଣ କରି ବିରାଜମାନ ହୋଇଅଛନ୍ତି, ଅତଏବ ଏହି ପର୍ବତ ଉକ୍ତ ନାମ ଧାରଣ କରିଅଛି । ୨୯।"

କଥିତ ଗୌତମ ଋଷିଙ୍କ ଆଶ୍ରମ ସ୍ଥଳୀ ଅଧୁନା ଜନୈକ ଖିରସ୍ତାନଙ୍କ ବାସ ଗୃହରେ ପରିଣତ ହୋଇଅଛି ।

(ଙ) ସରସ୍ୱତୀ (ହିରଣ୍ୟା)ରେ ବାରୁଣୀ :—

ବେଦବ୍ୟାସ ପାହାଡ଼ର ପଶ୍ଚିମ ଅଂଶ ମଧ୍ୟ କ୍ରୋଡ଼ରୁ ସରସ୍ୱତୀ ଝରଣା ବାହାରି ପୂର୍ବାଭି ମୁଖୀ ହୋଇ ବ୍ରାହ୍ମଣୀ ଉପତ୍ତି ଜଳରେ ମିଳିତ ହୋଇଅଛି । ଅତୀତରେ ସରସ୍ୱତୀର ବାରୁଣୀ ଯୋଗ ପଡ଼ୁଥିଲା ଆଜିକାଲି ପଡ଼ୁନାହିଁ । ସରସ୍ୱତୀର ବାରୁଣୀ ଯୋଗ ସମ୍ପର୍କରେ ବ୍ୟାସାଶ୍ରମ୍ ଗାଏ । ଯଥା :—

"ଯତଃ ଶାଶ୍ୱତଂ ଗୋନସାକାର ରେକ
ସ୍ଖଣପ୍ରୂତ ସାରସ୍ୱତଂ ଦୁଷ୍କୃତଘ୍ନଂ ।
ବହତ୍ୟମ୍ବୁପୂରଂ ଗବାକ୍ଷୀର କଳ୍ପ
ଭବତ୍ୟୌ ଧରରେଧ୍ରୁବଂ ଫେନିଳଂ ଯତ୍ ।୧୧।

ଅର୍ଥାତ୍ ଯେଉଁ ଆଶ୍ରମରେ ଗୋନାଶିକା ବିବରରୁ ପ୍ରସୂତ ପବିତ୍ର ଦୁରିତ ନାଶନ ଗୋଟିଏ ସରସ୍ୱତୀ ସ୍ରୋତ ସର୍ବଦା ବହମାନ ହେଉଅଛି । ଯାହାକି ଗ୍ରହଣ ସମୟରେ ଫେନଯୁକ୍ତ ଗୋଃକ୍ଷୀର ସଦୃଶ ହୋଇ ପ୍ରବାହିତ ହୁଏ । (ଅର୍ଥାତ୍ ବାରୁଣୀ ପତନ ହୁଏ) ॥୧୧॥

କାଳକ୍ରମେ ସରସ୍ୱତୀର ଉପତ୍ତି ଗୋନାଶିକାରେ ଏକ କୁଣ୍ଡ ନିର୍ମାଣ କରାଯାଇ ଏହାର ନାମ ସରସ୍ୱତୀ କୁଣ୍ଡ ରଖାଯାଇଅଛି । ପୂର୍ବଭଳି ଆଜିକାଲି ସରସ୍ୱତୀରେ ବାରୁଣୀ ପଡ଼ୁନାହିଁ ।

(ଚ) କୁହୁଡ଼ିର ଇତିକଥା :—

ଛବିଶତମ ବ୍ୟାସଦେବ ପରାଶର ଋଷି କୋଇଲି-ଝଙ୍କ-ସରସ୍ୱତୀର ସଙ୍ଗମ ମହାସ୍ରୋତ (ଅନ୍ୟନାମ ମହାନଦୀ) ଜଳ ନୌକାରେ କୁହୁଡି ସୃଷ୍ଟିକରି କୁହୁଡ଼ି ବ୍ୟୁହରେ ଯୋଜନଗନ୍ଧାଙ୍କୁ ରମଣ କରିବାରୁ କୃଷ୍ଣ ଦ୍ୱୈପାୟନ ବ୍ୟାସ ଜନ୍ମ ହେଲେ । ବ୍ୟାସଦେବଙ୍କ ଜନ୍ମ ସ୍ମୃତି ବହନ କରି କୁହୁଡ଼ି ପ୍ରତ୍ୟହ ବେଦ ବ୍ୟାସ ଗ୍ରାମ ଏବଂ ସରସ୍ୱତୀ ଉତ୍ପତ୍ତି ଜଳରୁ ବାହାରି ବେଦବ୍ୟାସ ଧାମ ଓ ନଦୀ ଗର୍ଭକୁ ଗ୍ରାସ କରି ଆସୁଥିଲା । ବିଶେଷ କରି ଶୀତ ଋତୁରେ ଦିବା ଦଶ ଘଟିକା ପର୍ଯ୍ୟନ୍ତ କୁହୁଡ଼ି ଦେଖିବାକୁ ମିଳୁଥିଲା । ଅଳ୍ପ କେତେ କାଳରୁ କୁହୁଡ଼ି ଲୀଳା ସଙ୍କୁଚିତ ହୋଇ ବେଦବ୍ୟାସ ଜନ୍ମ ରହସ୍ୟକୁ ଲୁକ୍କାୟିତ କରୁଅଛି । ଏହା ନିରଟ ସତ୍ୟ ଘଟଣା ବୋଲି ନାଗର ରାଜ୍ୟର ବହୁ ବୃଦ୍ଧ ବିଜ୍ଞଜନଙ୍କଠାରୁ ଲେଖକ ଶୁଣି ଅଛିଅଛି । ଏହି ସମ୍ପର୍କରେ ବ୍ୟାସାଶ୍ରମ କହେ ! ଯଥା—

"ଯତ୍ତାତସ୍ୟ ପରାଶରସ୍ୟସ୍ତୁତୟୋଃ ସର୍ବଂସହା ମଣ୍ଡଳେ
ବର୍ଣ୍ଣାନାଂ ପ୍ରାରନ୍ତି ପାତହାୟୈ କୈବର୍ତ୍ତ ପୁତ୍ରୀହୃତୌ
ଆବିର୍ଭବିତ କୁଝଟୀ ବ୍ରଜ ଯଶୋରାଶିସ୍ତ ପାସଂ ଘଟାତ୍
ପ୍ରତ୍ୟବଦଂ ଶିଶିରେ ତଦୀୟ ମହିମାଖ୍ୟାୟୀ ଦିଶଶ୍ୱାଶ୍ନୁତେ ॥୪॥

ଅର୍ଥାତ୍ ଯାହାଙ୍କର ପିତା ପରାଶର ମହର୍ଷି ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଓ ଶୁଦ୍ର ବର୍ଣ୍ଣମାନଙ୍କ ମଙ୍ଗଳ କାମନାରେ ବିଘ୍ନ ପାତକନାଶିନୀ ସ୍ତୁତି ଆବିଷ୍କାର କରିଅଛନ୍ତି (ବର୍ତ୍ତମାନ ପ୍ରଚଳିତ ଶାସ୍ତ୍ର) ଏବଂ ଧୀବର ତନୟା ହରଣ ସମୟରେ ଲଜ୍ଜା ଉପସ୍ଥିତ ହେବାରୁ ଯେଉଁ କୁଝଟୀକାରୂପ ଯଶ କରିଥିଲେ ଶିଶିର ଋତୁରେ ତାହା ବର୍ତ୍ତମାନ ସୁଦ୍ଧା ତଦୀୟ ମହିମାଖ୍ୟାନ ଦିଙ୍ମଣ୍ଡଳ ବ୍ୟାପ୍ତ ହେଉଅଛି ॥୪॥"

(ଛ) ଯମୁନା ପଠା (ଦ୍ୱୀପ) :-

ବେଦବ୍ୟାସ ଧାମ ସମ୍ମୁଖସ୍ଥ ମହାସ୍ରୋତ ରୂପୀ ସଙ୍ଗମଜଳର ଉତ୍ତରରେ ଯମୁନା (ଯାହାର ଅନ୍ୟନାମ କୋଇଲି) ଧାର ମଧ୍ୟରେ ଯମୁନା ପଠା (ଦ୍ୱୀପ) ଅବସ୍ଥିତ ଥିଲା । ଉକ୍ତ ପଠାରେ ପରାଶରଙ୍କ ଔରଷରୁ ଯୋଜନଗନ୍ଧାଙ୍କ ଗର୍ଭରୁ କୃଷ୍ଣ ଦ୍ୱୈପାୟନ ବ୍ୟାସ ଭୂମିଷ୍ଠ ହୋଇଥିଲେ ।

ନବଜାତ ଶିଶୁର ବର୍ଣ୍ଣ କୃଷ୍ଣ ବର୍ଣ୍ଣ ପରି କଳା ଥିଲା । ପରାଶର କୃଷ୍ଣ ବର୍ଣ୍ଣ ଏବଂ ଦ୍ୱୀପର ସ୍ମୃତି ସ୍ମରଣ କରି ତାଙ୍କର ପୁତ୍ରର ନାମ କୃଷ୍ଣ ଦ୍ୱୈପାୟନ ବ୍ୟାସ ରଖିଲେ ।

କାଳକ୍ରମେ ଶଙ୍ଖ ଏବଂ କୋଇଲିର ପ୍ରଖର ସ୍ରୋତରେ ଯମୁନା ପଠା ସଙ୍ଗମ ଗର୍ଭରେ ଲୀନ ହୋଇ ଯାଇଅଛି । ବେଦବ୍ୟାସ ଏବଂ ଛେଣ୍ଡଗ୍ରାମ ମଧ୍ୟସ୍ଥ ବ୍ରାହ୍ମଣୀ ନଦୀ ଗର୍ଭରେ ଅତୀତ ଇତିହାସର ମୁକସାକ୍ଷୀ ହୋଇ ମହାବୀର ଏବଂ ଯମୁନା ଦ୍ୱୀପର ଜରଜୀର୍ଣ୍ଣ କ୍ଷୀଣକାୟ ପଥର ଭେଡ଼ା ଅଦ୍ୟାବଧି ରହିଛି ମାରୁଅଛି ।

(କ୍ର, ଯମୁନା ଡିପ (ଯମୁନା ନାକୀ) :—

କୋଇଲି ଏବଂ ଶଙ୍ଖ ଉଭୟ ନଦୀର ମିଳନ ତଟସ୍ଥ ତ୍ରିକୋଣ ଭୂମିର ନାମ ପ୍ରଥମେ ଯମୁନା ନାକୀ ଥିଲା । ପରେ ଏହାର ନାମ ଯମୁନା ଡିପ ହୋଇଅଛି । ଯମୁନା ଡିପ ନାମକ ଏକ ମଉଜ ଗ୍ରାମ ବହୁକାଳରୁ ଏହି ତ୍ରିକୋଣ ଭୂମିରେ ରହି ଆସିଅଛି । ଯମୁନା ଡିପର ନାମକରଣ ପଛରେ ଉଭୟ ଯମୁନା ନଦୀ ଏବଂ ଯମୁନା ଦ୍ୱୀପର ଗୁଢ଼ ରହସ୍ୟ ଗାଥା ନିହିତ ଥିବା ଭଳି ମନେ ହୁଏ । ଯମୁନା ଡିପ ଗ୍ରାମର ଗଞ୍ଜୁଆନା ସତ୍ତ୍ୱ ଗୌଡ଼ଙ୍କ ଅଧୀନରେ ଥିଲା । ଉକ୍ତ ଗ୍ରାମର ସ୍ୱର୍ଗତ ଯୋଗେନ୍ଦ୍ର ଗୌଡ଼ ବିଶୁ ଗୌଡ଼ ଜନପ୍ରିୟ ଥିଲେ । ଅଧୁନା ଶ୍ରୀ ସୁରଜ ଲାଲ ଗୌଡ଼ ଶ୍ରୀ ଦେବ ଗୌଡ଼ ଏବଂ ଶ୍ରୀ ହୃଷିକେଶ ଗୌଡ଼ ଯମୁନା ଡିପର ପୂର୍ବସୂରୀଙ୍କ ବଂଶଧର ଅଟନ୍ତି ।

(ଖ) ଯମୁନା ପଠା ଦ୍ୱୀପ) ଉପରେ ଦୁଇଗୋଟି ଜନମତ :—

ଯମୁନା ପଠାର ସତ୍ୟତା ପ୍ରତିପାଦନ କରିବାକୁ ଯାଇ ଲେଖକ ବ୍ରାହ୍ମଣୀ ତରଙ୍ଗ ନଦୀ ଟୋଲ ଏବଂ ଗୋପପାଲୀ ଗ୍ରାମର ଶ୍ରୀ ସୋମନାଥ ସିଙ୍ଗ୍ ଓ ଶ୍ରୀ କିଶୋର ଚନ୍ଦ୍ର ନାୟକ (ଭୂୟାଁ ଗଞ୍ଜୁ)ଙ୍କ ଠାରୁ ଦୁଇଗୋଟି କଥିତ ଦ୍ୱୀପ ସମ୍ପର୍କୀୟ ସେମାନଙ୍କ ସ୍ୱହସ୍ତ ଲିଖିତ ବିବରଣୀ ସଂଗ୍ରହ କରି ନିମ୍ନରେ ପ୍ରକାଶ କରୁଅଛି ।

## ପ୍ରଥମ ବିବରଣୀ

ଶ୍ରୀ କିଶୋର ଚନ୍ଦ୍ର ନାୟକ ପି: ✓ ଶ୍ରୀ ରାମ ନାୟକ ଗ୍ରାମ : ଗୋପପାଲି; ମୁଁ ମୋର ପିଲାଦିନେ ଶଙ୍ଖ, କୋଇଲୀ ଏବଂ ସରସ୍ୱତୀର ତିନିଧାରର ସଙ୍ଗମ

ଢଙ୍କରେ ଏକ ଛୋଟ କୁଦ ଥିଲା । କୁଦରେ ପଥର, ମାଟି ଏବଂ ଛୋଟ ଛୋଟ ବୃକ୍ଷ ଥିଲା । କାଳକ୍ରମେ କୁଦଟି ପାଣିରେ ଧୋଇ ହୋଇ ବର୍ତ୍ତମାନ ନଦୀ ମଝିରେ ଥିବା ପଥର ଭେଡ଼ା ଅଛି ।

ଏହି ଛୋଟ କୁଦରେ ବେଦବ୍ୟାସ ମୂନୀ ଜନ୍ମ ହୋଇଥିବା କାହାଣୀ ଶୁଣିଅଛି ।

ତା ୬ - ୧ - ୧୯୮୯ ଇ:
ଗୋପପାଲି

ଶ୍ରୀ କିଶୋର ଚନ୍ଦ୍ର ନାୟକ
ବୟସ—୪୮ ବର୍ଷ
ଗ୍ରାମ—ଗୋପପାଲି

## ଦ୍ୱିତୀୟ ବିବରଣୀ

ବ୍ରାହ୍ମଣୀ ତରଙ୍ଗ ନଦୀ ଟୋଲ ବାସୀନ୍ଦା ଶ୍ରୀ ସୋମନାଥ ସିଙ୍ଗ୍ ତାଙ୍କର ମତ ହିନ୍ଦୀ ଭଷାରେ ଦେଇଅଛନ୍ତି । ତାଙ୍କର ହିନ୍ଦୀ ବିବରଣୀକୁ ଓଡ଼ିଆ ଲିପିରେ ପ୍ରକାଶ କରଯାଇଅଛି ।

"ଶ୍ରୀ ସୋମନାଥ ସିଙ୍ଗ୍ ସ୍ୱରର୍ଗୀ ପିତା ସୋହନ ସିଙ୍ଗ୍ ବ୍ରାହ୍ମଣୀ ତରଙ୍ଗ ମେ ରହତେ ହେଁ । ହମ୍ ବଚପନ୍ ମେ ଥେ ସଙ୍ଖ ସୋର୍ କୋଇଲ୍ ସରସ୍ୱତୀ ତିନୋକା ସଙ୍ଗମ ବିଚ୍‌ମେ ସିଲ ହେଁ । ଉସମେ ଝଡ଼୍-ଜଙ୍ଗଲ-ମିଟି ଥା । ଦୀପ୍ ଉସ୍‌ମେ ହମ୍‌ଲୋଗ୍ ଘୁମ୍ ଥା । ଉସ୍‌ମେ ବ୍ୟାସଜୀକା ଜନ୍ମଭୂମି କହତେ ହେଁ ।

ହମାର ପିଜ୍ (ପିତା) ସ୍ୱରର୍ଗୀ ମୋହନ ସିଙ୍ଗ୍ କହତେ ଥେ କି ବ୍ୟାସଜିକା ଦରଶନ ତୋ ହୁଆ ଥା ; ମଗର୍ କା କରେଁ, ସଗେବର ଔର ଜଟା ଦେଖ୍‌କର ଜାନ୍‌ମେ ଭୟଙ୍କର ରୂପ ଦେଖ୍‌କର ଇନ୍‌କା ଚରଣପର୍ ଜାନେ ନହିଁ ସକା । ତର୍‌ପର୍ ପିଛେ ପିଛେ ହଟକର୍ ୱାପସ୍ ଚଲେ ଆଏ । ଗଡ଼୍‌କା ଗାରେ ବଜେ ଥା । ଓ୍ୱେ ଆଜିକେ ଚରଣୋ କା ନମସ୍କାର କରକେ ଲିଖା ସୋ ସମାପ୍ତ କରତା ।

ଶ୍ରୀ ସୋମନାଥ ସିଙ୍ଗ ; ଉମର—୬୭
ଗାଓଁ—ବ୍ରାହ୍ମଣୀ ତରଙ୍ଗ ନଦୀ ଟୋଲ
ତା ୬ - ୧ - ୧୯୮୯

## ଶ୍ରୀ ସୋମନାଥ ସିଙ୍ଗ୍‌ଙ୍କ ବିବରଣୀର ଓଡ଼ିଆ ଗଦ୍ୟାନୁବାଦ

"ଶ୍ରୀ ସୋମନାଥ ସିଙ୍ଗ ସ୍ୱର୍ଗୀୟ ପିତା ସୋହନ ସିଙ୍ଗ ବ୍ରାହ୍ମଣୀ ତରଙ୍ଗରେ ବାସ କରିଅଛି । ଆମର ପିଲାବେଳେ ଶଙ୍ଖ କୋଇଲି ସରସ୍ୱତୀ ତ୍ରୀଧାର ସଙ୍ଗମ ମଧ୍ୟରେ ଶିଳା ଥିଲା । ସେଥିରେ ବୁଦା ବୁଦା କଣ୍ଟା ଗୁଳ୍ମାଦି ବୃକ୍ଷ ଲତା ଥିଲା । ତାହାକୁ ବ୍ୟାସମୁନିଙ୍କ ଜନ୍ମଭୂମି ବୋଲି କୁହନ୍ତି ।

ଆମର ସ୍ୱର୍ଗୀୟ ପିତା ସୋହନ୍ ସିଙ୍ଗ ବ୍ୟାସକୁଣ୍ଡ ଏବଂ ବ୍ୟାସଦେବଙ୍କ ସ୍ୱରୂପ ରାତ୍ରୀ ଏଗାର ଘଟିକା ସମୟରେ ଦର୍ଶନ କରିଥିଲେ ; ହେଲେ କ'ଣ ହେବ ତାଙ୍କର ଜଟା ମଣ୍ଡିତ ଭୟଙ୍କର ରୂପକୁ ଦେଖି ପ୍ରାଣରେ ଭୟ ଜାତ ହେବାରୁ ସେ ବ୍ୟାସଙ୍କର ଚରଣ ସ୍ପର୍ଶ କରିବାକୁ ସାହାସ ନ କରି ପଛେଇ ପଛେଇ ଅନ୍ୟ ପଥରେ ଗୃହକୁ ଫେରିଆସିଲେ । ଆଜି ତାଙ୍କ ଚରଣରେ ନମସ୍କାର କରି ଲେଖା ସମାପ୍ତ କରୁଅଛି ।

ଶ୍ରୀ ସୋମନାଥ ସିଙ୍ଗ । ବୟସ—୬୭ ବର୍ଷ
ଗ୍ରାମ—ବ୍ରାହ୍ମଣୀ ତରଙ୍ଗ ନଦୀ ଟୋଲା
ତାରିଖ—ତା ୬ - ୧ - ୧୯୮୯

ସ୍ୱର୍ଗତ ବିଶ୍ୱନାଥ ସିଙ୍ଗ ସୋହନ ସିଙ୍ଗ କ୍ରମାନ୍ୱୟରେ ଦୁଇ ପୁରୁଷ ବ୍ରାହ୍ମଣୀ ତରଙ୍ଗ ନଦୀ ଟୋଲାର ବାସିନ୍ଦା ଥିଲେ । ସୋହନ ସିଙ୍ଗ୍‌ଙ୍କ ଦୁଇପୁତ୍ର ଶ୍ରୀ ସୋମନାଥ ସିଙ୍ଗ ଏବଂ ଶ୍ରୀ ନାରାୟଣ ସିଙ୍ଗ ଉକ୍ତ ଗ୍ରାମର ବାସିନ୍ଦା ଅଟନ୍ତି । ଶ୍ରୀ ସୋମନାଥ ସିଙ୍ଗ ଏକଦା ରାତ୍ରର ଚତୁର୍ଥ ପ୍ରହରରେ ବ୍ୟାସଧାମ ପାଦ ଦେଶରେ ବ୍ୟାସମୁନିଙ୍କ କଣ୍ଠର ଶବ୍ଦ ଶୁଣିଥିଲେ ବୋଲି କୁହନ୍ତି ।

(ଙ) ବ୍ରାହ୍ମଣୀ ନଦୀ :—

ବ୍ରାହ୍ମଣୀ ନଦୀର ଉତ୍ପତ୍ତି ସ୍ରୋତର ଆଦିନାମ ଯଥାକ୍ରମେ ମହାସ୍ରୋତ, ମହାନଦୀ ଏବଂ ପୁଣ୍ୟ ନଦୀ ଥିଲା । ପରବର୍ତ୍ତୀ ସମୟରେ ଏହାର ନାମ ବ୍ରାହ୍ମଣୀ ହେଲା । ବ୍ରାହ୍ମଣୀ ନାମକରଣ ଅନ୍ତରାଳରେ ଦୁଇଗୋଟି ଜନଶ୍ରୁତି ଶୁଣାଯାଏ ।

### ପ୍ରଥମ ନାମକରଣ

ଏକଦା ବ୍ରାହ୍ମଣ ପରାଶର ଋଷି ଧୀବର କନ୍ୟା ଯୋଜନଗନ୍ଧା ସହିତ ମହାସ୍ରୋତର ଉତ୍ତର ପାର୍ଶ୍ୱ ଯମୁନା (କୋଇଲି) ସ୍ରୋତରେ ନୌଗ୍ଭଜନ

ବେଳେ ରତିକ୍ରୀଡ଼ାରେ ରତ ହେଲେ । ଫଳରେ ସତ୍ୟବତୀ (ଅପର ନାମ ଯୋଜନଗନ୍ଧା) ଗର୍ଭରୁ କୃଷ୍ଣ ଦ୍ୱୈପାୟନ ବ୍ୟାସ ଜନ୍ମ ହେଲେ । ପୁତ୍ର ଜନ୍ମକରି ସତ୍ୟବତୀ କୈବର୍ତ୍ତରୁ ବ୍ରାହ୍ମଣୀ ହେଲେ । ପରାଶର ପୁତ୍ର ଏବଂ ସ୍ତ୍ରୀଙ୍କ ଗାଥା ଅମର ରଖିବା ପାଇଁ ସଙ୍ଗମ ସ୍ରୋତକୁ ବ୍ରାହ୍ମଣୀ ନଦୀ ନାମରେ ନାମିତ କଲେ । ସେହିକାଳରୁ ଆଜି ପର୍ଯ୍ୟନ୍ତ ବ୍ରାହ୍ମଣୀ ନାମ ଅମର ହୋଇ ରହିଅଛି ।

## ଦ୍ୱିତୀୟ ନାମକରଣ

ଏକଦା ବେଦବ୍ୟାସ ସନ୍ନିକଟ ଜନୈକ ବ୍ରାହ୍ମଣ କୋଇଲି ଶଙ୍ଖ ଏବଂ ସରସ୍ୱତୀର ସଙ୍ଗମ ଜଳସ୍ଥ ପ୍ରାକୃତିକ ପ୍ରସ୍ତର ଶଯ୍ୟା ନିର୍ମିତ ବ୍ୟାସ-ଯଜ୍ଞ କୁଣ୍ଡରେ ଯଜ୍ଞ ସମାପନ କରି କୁଣ୍ଡ ନିକଟରେ ଧ୍ୟାନ ମଗ୍ନଥିଲେ । ଇତିମଧ୍ୟରେ ଧ୍ୟାନରତ ବ୍ରାହ୍ମଣଙ୍କ ଗୃହକୁ ଅନ୍ୟ ଜଣେ ବ୍ରାହ୍ମଣ ଅତିଥିରୂପେ ପଦାର୍ପଣ କଲେ । ବ୍ରାହ୍ମଣୀ ଅତିଥିଙ୍କ ସତ୍କାର କରି ସାରି, ତାଙ୍କ ସହିତ ବ୍ୟାସ ଯଜ୍ଞକୁଣ୍ଡ ଦେଖିବାକୁ ଆସିଲେ । ପହଞ୍ଚିବା ସମୟରେ ସ୍ୱାମୀଙ୍କୁ ଧ୍ୟାନମଗ୍ନ ଥିବାଦେଖି କୁଣ୍ଡର ଅନତି ଦୂରରେ ଅତିଥିଙ୍କ ସହିତ ସାକ୍ଷାତ ପାଇଁ ଅପେକ୍ଷା କଲେ । ଧ୍ୟାନାନ୍ତେ ଯାଜ୍ଞିକ ବ୍ରାହ୍ମଣ ଅତିଥି ବ୍ରାହ୍ମଣଙ୍କ ସହିତ ନିଜ ସ୍ତ୍ରୀଙ୍କୁ ଦେଖି କ୍ରୋଧାନଳ ଦୃଷ୍ଟିରେ ଉଭୟଙ୍କୁ ଭସ୍ମ କରିଦେଲେ । କ୍ରୋଧ ଶାନ୍ତ ପରେ ଅନୁତପ୍ତ ବ୍ରାହ୍ମଣ ଧ୍ୟାନ ଧାରଣାରେ କୁଣ୍ଡ ସ୍ଥଳରେ ଦେହତ୍ୟାଗ କଲେ ।

ଏହି ସମୟରେ ପବନ ବହିବାରୁ ବ୍ରାହ୍ମଣୀଙ୍କର ପତିତ ଚିତାଭସ୍ମ ବ୍ୟାସଯଜ୍ଞ କୁଣ୍ଡରେ ପଡ଼ିଲା । ଭସ୍ମ ପଡ଼ିବାରୁ ସହସା ଏକ ପ୍ରଖର ଜଳସ୍ରୋତ ପାତାଳରୁ ଉର୍ଦ୍ଧ୍ୱକୁ ଉଠି ମହାନଦୀର ପଶ୍ଚିମ ତଟସ୍ଥ ଭୂମିକୁ ଜଳମଗ୍ନ କଲା । ସେହିଦିନଠାରୁ ବ୍ୟାସଯଜ୍ଞ କୁଣ୍ଡ ବ୍ୟାସ ଜଳକୁଣ୍ଡରେ ପରିଣତ ହୋଇଆସି ଅଛି । କେହି କେହି ବ୍ୟାସ ଜଳ କୁଣ୍ଡକୁ ବ୍ୟାସ ସରୋବର ନାମରେ ନାମିତ କରି ପରିଚୟ ଦେଉଅଛନ୍ତି ।

ବ୍ରାହ୍ମଣୀଙ୍କ ଯୋଗୁଁ ବ୍ୟାସ ଯଜ୍ଞ କୁଣ୍ଡରୁ ଜଳସ୍ରୋତ ମହାସ୍ରୋତରେ ମିଳିତ ହେବାରୁ ସଙ୍ଗମ ଜଳକୁ ବ୍ରାହ୍ମଣୀ ନାମରେ ନାମିତ କରଯାଇଅଛି । ବ୍ରାହ୍ମଣୀ ନଦୀର ପଶ୍ଚିମ ତୀରଭୂମିର ଉପରୋକ୍ତ ପ୍ଲାବିତ ଅଞ୍ଚଳକୁ ବ୍ରାହ୍ମଣୀ

ତରଙ୍ଗ ନାମରେ ନାମିତ କରଯାଇଅଛି । ବ୍ରାହ୍ମଣୀ ତରଙ୍ଗ ନଦୀ ତୋଲ ଏବଂ ବ୍ରାହ୍ମଣ ତରଙ୍ଗ ଗ୍ରାମ ଉଭୟେ ଅତୀତ ଇତିହାସ ଗାଥାକୁ ଜୀବନ୍ତ କରି ଅଛନ୍ତି ।

(ଟ) ବ୍ରାହ୍ମଣୀର ଅପର ନାମ ବ୍ରାହ୍ମୀ :—

ବ୍ୟାସ କୁଣ୍ଡର ଜଳକୁ ବ୍ରାହ୍ମୀ ନାମରେ ନାମିତ କରଯାଇଅଛି । ବ୍ରାହ୍ମଣୀର ସଙ୍ଗମ ଜଳ ବ୍ରାହ୍ମୀ ଜଳକୁ ସ୍ପର୍ଶ କରି ବ୍ରାହ୍ମୀ ନାମ ଧାରଣ କରି ଅଛି । ବ୍ୟାସକୁଣ୍ଡ ଏବଂ ବ୍ରାହ୍ମୀ ସମ୍ପର୍କରେ ବ୍ୟାସାଶ୍ରମ ଗାଏ :—

"ମୁନେର୍ବ୍ୟାସ ଦେବସ୍ୟ ରମ୍ୟଂ ପୁରସ୍ତା
ଦଗାଧଂ ତଟିନ୍ୟନ୍ତରେ କୁଣ୍ଡମାସ୍ତେ ।
ବିଧା ବୁଷ୍କରଶ୍ଚୌ ତମୋଗ୍ରସ୍ୟମାନେ
ଜନୋ ଯତ୍ର ଗାତ୍ରଂ ପବିତ୍ରଂ ବିଧତ୍ତେ ।୧୩।

ଅର୍ଥାତ୍ ଯେଉଁ ଆଶ୍ରମରେ ମୁନି ବ୍ୟାସଦେବଙ୍କ କୃତ ରମଣ ୟ ଅସୀମ ଗଭୀର ସେତୁ ଯଜ୍ଞକୁଣ୍ଡ ନଦୀ ଦ୍ୱୟର ସଙ୍ଗମ ସ୍ଥାନରେ ଅଛି । ଯହିଁରେ ସୂର୍ଯ୍ୟ କିମ୍ବା ଚନ୍ଦ୍ରଗ୍ରହଣ ହେଲେ ମନୁଷ୍ୟମାନେ ସ୍ନାନ କରି ନିଜ ନିଜ ଶରୀର ପବିତ୍ର କରନ୍ତି ।୧୩।

ଯତଃ ଶଙ୍ଖନଦ୍ୟା ସ୍ତଥା କୋକିଳାୟାଃ
ପୟାଂସି ମୁନେଃକୁଣ୍ଡ ନିଷ୍ପାତ ବର୍ତ୍ତିଃ ।
ପବିତ୍ରୈ ସ୍ତଥୈବାମ୍ବୁଭି ର୍ଭାରତୀୟେ
ର୍ମିଳିହାପ୍ଲୁବନ୍ ସ୍ୱଧୁନୀହଂ ପୃଥିବ୍ୟାଂ ।୧୪।

ଅର୍ଥାତ୍ ଏହି ଧାମରେ ଶଙ୍ଖ ନଦୀ ଓ କୋକିଳା ନଦୀର ଜଳମାନେ ସରସ୍ୱତୀ ଜଳରେ ପବିତ୍ର ହୋଇ ବ୍ୟାସମୁନିଙ୍କ କୁଣ୍ଡରଜଳରେ ମିଳିତ ହୋଇ ଗଙ୍ଗାଜଳରେ ପରିଣତ ହୋଇଅଛନ୍ତି ।୧୪।

ନବାନାଂ ସ୍ରୋତସାଂ ବିଷ୍ଣୋଃ
ପଦ ପଙ୍କଜ ସମ୍ଭବାଂ ।
ଅଷ୍ଟମୀ ସ୍ୱଧୀନୀ ନାମ୍ନା
ବ୍ରାହ୍ମୀ ପ୍ରାଦୁର ଭୂଦ୍ୟତଃ ।୧୫।

(ଠ) ବେଦବ୍ୟାସ ସନ୍ନିକଟ କୈବର୍ତ୍ତ ସଂସ୍କୃତି :—

ଦାସରଜାଙ୍କ କନ୍ୟା ମତ୍ସ୍ୟବତୀରୁ ମତ୍ସ୍ୟଗନ୍ଧା ନାମ ବହନ କରି ଶିଉଳି କୈବର୍ତ୍ତୀ ଗୃହରେ ବଢ଼ି କୈବର୍ତ୍ତୀ କନ୍ୟା ହୋଇଥିଲେ । ସତ୍ୟରକ୍ଷା କରି ପରାଶର ଋଷିଙ୍କୁ ରତିଦାନ କ୍ଲକରି ବ୍ରାହ୍ମଣୀ ରୂପେ ପରିଚିତ ହେଲେ । ପରିଶେଷରେ ଶାନ୍ତନୁ ମହାରଜା ବିବାହକରି ସୋମବଂଶର ପାଟରଣୀ ହେଲେ ।

ସତ୍ୟବତୀଙ୍କ ସ୍ମୃତି ଗ୍ରହଣ କରି ଅଧୁନା ବେଦବ୍ୟାସର ବ୍ରାହ୍ମଣୀରେ ଜୀବିକା ନିର୍ବାହ କରୁଥିବା ଝଗମାନଙ୍କର (କେଉଟ) ସଂସ୍କୃତି ସଂମ୍ପର୍କରେ; ସେମାନଙ୍କଠାରୁ ଆହରଣ କରିଥିବା ବିବରଣୀ ନିମ୍ନରେ ଉଲ୍ଲେଖ କରୁଅଛି ।

ବ୍ରାହ୍ମଣୀ ତରଙ୍ଗ ନଦୀ ଟୋଲ ଏବଂ ଦାସ ରଜା ଗଡ଼ର ଉତ୍ତର ସୀମାକୁ ଲାଗିଥିବା କୁଆଁରୀ ଅଞ୍ଚଳରେ ଶୁକ୍ରୁ ପ୍ରଧାନ, କେମ୍ପା ପ୍ରଧାନ, ସୁନ୍ଦର ଝଗ ଓ ସୋନୁ ଝଗ ଇତ୍ୟାଦିଙ୍କର ବଂଶଧର ଯଥାକ୍ରମେ ବ୍ରହ୍ମା ପ୍ରଧାନ, ଗଜକୁମାର ପ୍ରଧାନ. ଗଜ କାଲେ, ବୁଟୁ ଝଗ ଓ କେନ୍ଦୁ ଝଗ ଆଦି ଝଗମାନେ ବାସ କରି ଅଛନ୍ତି । ବେହେରା ନାଏକ, ପେଣ୍ଡେଇ ପ୍ରଭୃତି ସଙ୍ଗାଧାରୀ ଝଗ-ମଧ୍ୟ ଏହି ସମାଜରେ ଅଛନ୍ତି । ଏମାନେ ବର୍ଷସାରା ବ୍ରାହ୍ମଣୀରେ ମାଛମାରି, ଡଙ୍ଗା ଘାଟରେ ଡଙ୍ଗା ଚଳାଇ ଏବଂ ଗ୍ରୀଷ୍ମ ଋତୁରେ ନଦୀବାଲିରୁ ସୁନା ସଂଗ୍ରହ କରି ଜୀବୀକା ନିର୍ବାହ କରନ୍ତି । ଏମାନେ ଏପର୍ଯ୍ୟନ୍ତ ଅଶିକ୍ଷିତ ଅନୁନ୍ନତ ଅବସ୍ଥାରେ ବାସ କରୁଅଛନ୍ତି । ଗୁଡଜ ଏମାନଙ୍କର ପ୍ରଧାନ ଖାଦ୍ୟ । ଗୁଡଜ ମଦ, ଦେଶୀ ମଦ, ଖଜୁରୀ ତାଡ଼ି ନିଶାରେ ବୁଡ଼ିରହିବାରେ ବ୍ୟାସ ଧାମର ଝଗମାନେ ବିଶେଷ ତୃପ୍ତି ଲାଭ କରନ୍ତି । ଏମାନଙ୍କୁ ଶିଉଳି ଧୀବର ଶ୍ରେଣୀରେ ଗ୍ରହଣ କରଯାଇ ପାରେ ।

ନୂଆଖାଇ ଦୁର୍ଗାପୂଜା ଦିପାବଳୀ ରକ୍ଷୀ ପୂର୍ଣ୍ଣମୀ (କାର୍ତ୍ତିକ ପୂର୍ଣ୍ଣମୀ) ମକର ପୁଷ ପୂର୍ଣ୍ଣମୀ ଇତ୍ୟାଦିକୁ ଝଗମାନେ ସାମାଜିକ ପର୍ବରୂପେ ପାଳନ କରନ୍ତି । ରକ୍ଷୀ ପୂର୍ଣ୍ଣମୀ ଉପରୋକ୍ତ ଝଗ ସମାଜର ବର୍ଷର ସବୁଠାରୁ ବଡ଼ ପର୍ବ ଅଟେ । ଏହି ପର୍ବରେ ସମସ୍ତେ ନୂଆ ଲୁଗା ପିନ୍ଧନ୍ତି । ଝଗମାନଙ୍କର ପୂଜକଙ୍କୁ କାଲେ କୁହାଯାଏ ।

ରକ୍ଷୀ ପୂର୍ଣ୍ଣମୀ ଦିନ କାଳେ ଝଗମାନଙ୍କ ଉଭୟ ସ୍ତ୍ରୀ ଏବଂ ପୁରୁଷ ଗହଣରେ ଡ଼ଙ୍ଗା ଘାଟକୁ ଯାଏ । ପ୍ରଥମେ ଡ଼ଙ୍ଗାରେ ସମଲେଶ୍ୱରୀଙ୍କୁ ପୂଜା

କରେ । ପୂଜାରେ ଫୁଲ, ଚନ୍ଦନ, ଝୁଣାଧୂପ; କପୂର, ଅରୁଆ ଚାଉଳ ଉଷୁନା ଚାଉଳ, ନଡିଆ, ପାଚିଲ କଦଳୀ, ଗୋଟା ଗୁଆ, କୁକୁଡ଼ା, ଗଞ୍ଜେଇ, ଭାଙ୍ଗ ଇତ୍ୟାଦି ସମର୍ପଣ କରେ । ପୂଜା ଶେଷରେ ସେମାନଙ୍କୁ ଡଙ୍ଗାରେ ପାରି କରାଯାଏ । ଏହାପରେ କାଲେ ଝରମାନଙ୍କର ପିତୃପୁରୁଷଗଣଙ୍କୁ ଭୋଗ ଦିଏ । ଏମାନଙ୍କର ପ୍ରତ୍ୟେକ ପର୍ବରେ ଗାଁ ଶିରୀ (ଗ୍ରାମ ଦେବତୀ ଧରିତି ମାତା ଓ ଧରିତି ପିତା (ଧରଣୀ ମାତା ଓ ଧରଣୀ ପିତା) ଆଦି ଦେବ ଦେବୀଙ୍କର ପୂଜା ହୁଏ ।

ବେଦବ୍ୟାସ ଧାମର ଝରମାନେ ବହୁକାଳରୁ ବ୍ୟାସ ମୁନିଙ୍କ କଣ୍ଠ ଶବ୍ଦ ଏବଂ ଦାସ ରଜା ଗଡ଼ ଶିରୀଙ୍କର ନୂପୁର ଧ୍ୱନି ଗଭୀର ରାତ୍ରୀରେ ଶୁଣି ଆସୁଥିବା ଗାଥା କୁହନ୍ତି । ବ୍ୟାସ ଗୁମ୍ଫା ଏବଂ ସରସ୍ୱତୀ ଧାର ଗୋନାସିକାରୁ କୁହୁଡ଼ି ବାହାରି ସବୁଆଡ଼େ ଖେଳିଯିବା ଦୃଶ୍ୟ ଏମାନେ ଦେଖିଆସିଛନ୍ତି । ପୂର୍ବଭଳି ଆଜିକାଲି କୁହୁଡ଼ି ଦେଖାଯାଉ ନାହିଁ । ପୂର୍ବୋକ୍ତ ଶବ୍ଦ ମଧ୍ୟ ଶୁଣା ଯାଉ ନାହିଁ । କୁହୁଡ଼ି ବାହାରୁଥିବା ପଥକୁ ପଥର ଖଣ୍ଡ ଦ୍ୱାରା ଆବୃତ କରି ଦିଆଯାଇଥିବା ଗାଥା କେତେକ କହୁଅଛନ୍ତି ।

(ଢ) ବେଦବ୍ୟାସ ଗୁମ୍ଫା ଦର୍ଶନ ଗାଥା :—

ବେଦ ବ୍ୟାସ ଗୁମ୍ଫା ପରିଦର୍ଶନ କରିବା ପାଇଁ ଏକ ସ୍ୱତନ୍ତ୍ର ପ୍ରଥା ପ୍ରଚଳିତ ହେଉଥିଲା । ବ୍ୟାସଦେବ ଗୁମ୍ଫାର ପୂଜକ ବ୍ୟାସଦେବଙ୍କ ନିର୍ଦ୍ଦେଶ ଗୁମ୍ଫା ସନ୍ନିକଟ ପୂଜାବେଦୀରେ ତିନିଦିନ ପର୍ଯ୍ୟନ୍ତ ଧ୍ୟାନରେ ବସୁଥିଲେ । ଧ୍ୟାନରତ ସମୟରେ ବ୍ୟାସଦେବଙ୍କ ଦୈବୀବାଣୀ ଅଥବା ସ୍ୱପ୍ନାଦେଶ ହେଉ ଥିଲା । ପୂଜକଠାରୁ ବ୍ୟାସଦେବଙ୍କ ଆଦେଶ ପ୍ରାପ୍ତ ହେବାପରେ ଦର୍ଶନ ଅଭିଳାଷୀ ଦର୍ଶକ; ବ୍ୟାସଦେବଙ୍କ ପୂଜା ନିମିତ୍ତ ନୈବେଦ୍ୟ ଏବଂ ଗବ୍ୟ ଘୃତ ପୂର୍ଣ୍ଣ ଏକ ପ୍ରଜ୍ୱଳିତ ପ୍ରଦୀପ ପୂଜକଙ୍କୁ ଦେଉଥିଲେ । ପୂଜକ ପ୍ରଥମେ ବ୍ୟାସଦେବଙ୍କୁ ଦୀପ ଓ ନୈବେଦ୍ୟ ସମର୍ପଣ କରୁଥିଲେ । ପୂଜା ଅନ୍ତେ ଉକ୍ତ ପ୍ରଜ୍ୱଳିତ ପ୍ରଦୀପ ଧରି ପୂଜକ ବ୍ୟାସଦେବ ଗୁମ୍ଫାରେ ପ୍ରବେଶ କରୁଥିଲେ । ପୂଜକଙ୍କୁ ଅନୁସରଣ କରି ଦର୍ଶକମାନେ ବ୍ୟାସଦେବଙ୍କ ଗୁମ୍ଫା ଅଭ୍ୟନ୍ତର ପରିଦର୍ଶନ କରି ନିରାପଦରେ ଫେରୁଥିଲେ ।

ପ୍ରାୟତଃ ୧୯୫୯ ମସିହାରେ ରାଉରକେଲା ଇସ୍ପାତ କାରଖାନାରେ କାର୍ଯ୍ୟକରୁଥିବା ଦୁଇଜଣ ଜର୍ମାନୀ ପରିଦର୍ଶକ ବେଦବ୍ୟାସ ଦର୍ଶନ କରିବାକୁ ଯାଇଥିଲେ । ବ୍ୟାସଦେବଙ୍କ ଗୁମ୍ଫାଭିତରେ ଦେଖିବାକୁ ଯାଇ ସେମାନେ ତତ୍କାଳୀନ ବ୍ୟାସଦେବ ପୂଜକ ସ୍ୱର୍ଗୀୟ ଜଗନ୍ନାଥ ଦାସ (ଜାତି-ବୈଷ୍ଣବ)ଙ୍କ ହିତୋପଦେଶ ନମାନି ଗୁମ୍ଫା ଭିତରେ ପ୍ରବେଶ କଲେ । ଫଳରେ ଗୁମ୍ଫା ଗହ୍ୱରରେ ସେମାନଙ୍କର ଚିର ସମାଧି ହେଲା । ଘଟଣାଟି ଅନୁସନ୍ଧାନ କରିବାକୁ ଯାଇ ଦୁଇଜଣ ପୁଲିସ କର୍ମଚାରୀ ବ୍ୟାସଦେବ ଗୁମ୍ଫା ଦର୍ଶନ ପଦ୍ଧତିକୁ ପାଳନ କରି ପୂଜକ ସହିତ ଗୁମ୍ଫା ଭିତରେ ପ୍ରବେଶ କଲେ । ଗୁମ୍ଫା ଭିତର ଅନୁସନ୍ଧାନ କରି ପୂର୍ବୋକ୍ତ ଦୁଇ ଜଣ ଜର୍ମାନୀଙ୍କର କୌଣସି ସନ୍ଧାନ ନ ମିଳିବାରୁ; ସରକାରୀ ସିଦ୍ଧାନ୍ତ ଅନୁଯାୟୀ ବ୍ୟାସଦେବ ଗୁମ୍ଫା ପ୍ରବେଶ ଦ୍ୱାର ପଥକୁ ଏକ ବଡ଼ ପଥର ଖଣ୍ଡ ଦ୍ୱାରା ଆବୃତ କରିଦିଆଗଲା । ସେହି ସମୟରୁ ଅଦ୍ୟାବଧି ପର୍ଯ୍ୟନ୍ତ ବେଦବ୍ୟାସ ଗୁମ୍ଫାର ପ୍ରବେଶ ଦ୍ୱାର ଅବରୁଦ୍ଧ ଅଛି । !

ବେଦବ୍ୟାସ ଗୁମ୍ଫା ପରିଦର୍ଶନ କରିଥିବା ସିଂହଭୂମି ଷଢ଼େଇକଳା ସ୍ଥିତ ଗୋପାଳପୁର ଗ୍ରାମର ଶ୍ରୀ ଭୋଳାନାଥ ମିଶ୍ରଙ୍କ ମୁଖରୁ ଲେଖକ ଉପରୋକ୍ତ ଗାଥା ସଂଗ୍ରହ କରି ପ୍ରକାଶ କରିଅଛି ।

ଢ) ବେଦବ୍ୟାସରେ ବ୍ୟାସଦେବ ଦର୍ଶନ :—

କବି ଶ୍ରୀ ପୀତାମ୍ବର ପଣ୍ଡାଙ୍କ ସ୍ୱର୍ଗୀୟ ପୁତ୍ର ଅନନ୍ତ ନାରାୟଣ ପଣ୍ଡା ବେଦବ୍ୟାସ ଧାମରେ ବ୍ୟାସଦେବଙ୍କ ଦର୍ଶନ ଲାଭ କରି ଥିଲେ । ଅନନ୍ତନାରାୟଣ ପଣ୍ଡାଙ୍କ ସ୍ତ୍ରୀ ଶ୍ରୀମତୀ ସରୋଜିନୀ ପଣ୍ଡାଙ୍କଠାରୁ ତାଙ୍କ ସ୍ୱାମୀଙ୍କ କଥିତ ବେଦ-ବ୍ୟାସ ଦର୍ଶନ ସମ୍ପର୍କୀୟ ଏକ ହସ୍ତ ଲିଖିତ ବିବରଣୀ ଲେଖକ ସଂଗ୍ରହ କରି ନିମ୍ନରେ ପ୍ରକାଶ କରୁଅଛି ।

"ପ୍ରାୟ ୧୯୫୭ ଅବା ୧୯୫୮ ମସିହାର କଥା । ମୋର ସ୍ୱାମୀ ସ୍ୱର୍ଗତ ଅନନ୍ତ ନାରାୟଣ ପଣ୍ଡା ବ୍ୟାସଦେବଙ୍କୁ ଦର୍ଶନ କରିବା ମାନସିକରେ ବ୍ୟାସ ଧାମରେ ତିନିଦିନ ଓ ତିନି ରାତି ରହିଥିଲେ ।

ପ୍ରତିଦିନ ନିର୍ମଳ ମନରେ ବ୍ୟାସଦେବଙ୍କୁ କିଛି ସମୟ ଧ୍ୟାନ କରୁଥିଲେ । କିଛି ସମୟ ଶ୍ରୀରାମ ମନ୍ଦିରରେ ରହୁଥିବା ସନ୍ନ୍ୟାସୀଙ୍କ ସହିତ

ରାମାୟଣ ଆଲୋଚନା କରି ସମୟ କଟାଉଥିଲେ । ଏହିପରି ଦୁଇଦିନ ଦୁଇ ରାତି କଟିଗଲା ।

ତୃତିୟ ଦିନ ରାତିରେ ସେ ବ୍ୟାସ ଗୁମ୍ଫାର ତଳ ପାହାଚର ବାମ କଡ଼ରେ ଶୋଇଥିଲେ । ସେହି ରାତ୍ରିର ପାହାନ୍ତିଆବେଳେ ତାଙ୍କ ନିକଟରେ କେହି ଜଣେ କାଠଉ ପିନ୍ଧି ଚାଲିଗଲେ । କାଠଉ ଶବ୍ଦରେ ମୋର ସ୍ୱାମୀଙ୍କର ନିଦ ଭାଙ୍ଗିଗଲା । ସେ ଉଠି ଦେଖିଲେ ଜଣେ ସନ୍ୟାସୀ ବ୍ୟାସ ଗୁମ୍ଫାରୁ ବ୍ରାହ୍ମଣୀ ନଦୀକୁ ପାହାଚରେ ତଳକୁ ଓହ୍ଲାଇ ଯାଉଛନ୍ତି । ଚନ୍ଦ୍ର ରାତିରେ ସେ ଋଷିଙ୍କର ପଛପଟ ଦର୍ଶନ କଲେ । ଋଷି ଶୁକ୍ଳ ବସ୍ତ୍ର ପିନ୍ଧିଥିଲେ । ଦୁଇ କାନ୍ଧରେ ଦୁଇ ଶୁକ୍ଳ ଗାମୁଁଛା ଥିଲା । ତମ୍ବାବର୍ଣ୍ଣ ଶରୀରରେ ମୋଟା ପଇତା ଥିଲା । ଦୀର୍ଘ ଜଟା-ଭାର ଶରୀରରେ ଶୋଭା ପାଉଥିଲା । ପାଦରେ କାଠଉ ପିନ୍ଧି ପୂର୍ବ-ମୁଖା ହୋଇ ଋଷି ନଦୀକୁ ଯାଉଥିବା ଦୃଶ ଦେଖି ସ୍ୱାମୀଙ୍କ କାମନା ପୂର୍ଣ୍ଣ ହେଲା । କିଛିକ୍ଷଣପରେ ସ୍ୱାମୀଙ୍କ ଦୃଷ୍ଟି ପଥରୁ ଋଷି ଉଭେଇ ଗଲେ । ସ୍ୱାମୀ ଘରକୁ ଫେରିଥିଲେ । ପରେ ମୋତେ ବ୍ୟାସଦେବଙ୍କୁ ପଛରୁ ଦେଖିଥିବା ଉପରୋକ୍ତ ଘଟଣା କହିଥିଲେ । ପରେ ବ୍ୟାସଧାମକୁ ମୋତେ ସାଥିରେ ନେଇ ତାଙ୍କର ସାଧନା ଜାଗା ଦେଖାଇଥିଲେ ।"

ତା ୨-୮-୯୦

ସରୋଜିନୀ ପଣ୍ଡା

କ୍ୱାଟର ନମ୍ବର-ବି ୧୨୦/ସେକ୍ଟର-୧୮
ରାଉରକେଲା

(ଣ) ବେଦବ୍ୟାସ ଶ୍ମଶାନ :—

ବେଦବ୍ୟାସ ଧାମର ସଙ୍ଗମ ବାଲୁକା ଶଯ୍ୟା କେତେକୋଟି ମଣିଷର ଚିତା ଏବଂ ଭସ୍ମକୁ ବହନ କରି ପବିତ୍ର ଶ୍ମଶାନ ଘାଟ ନାମ ଧାରଣ କରିଅଛି କଳନା କରିବା ସମ୍ଭବ ନୁହେଁ ମୃତ୍ୟୁ ପରେ ମଣିଷର କ୍ଷଣ ଭଙ୍ଗୁର ପଞ୍ଚଭୂତ ଶରୀର ଶ୍ମଶାନର ମହା ପଞ୍ଚଭୂତକୁ ପ୍ରାପ୍ତ ହୁଏ । କର୍ମାନୁସାରେ ଏଥି ନିହିତ ଆତ୍ମା ନିଜ ପିପାସାର ପୂର୍ଣ୍ଣତା ପାଇଁ ଭିନ୍ନ ରୂପ ଧାରଣ କରି ପୁନଃ ସଂସାରରେ ଜନ୍ମଲାଭ କରେ । ନିଷ୍କାମ କର୍ମଯୋଗୀର ଆତ୍ମା ପରମାତ୍ମା ରୂପୀ

ପରଂବ୍ରହ୍ମରେ ଲୀନ ହୁଏ । ଏଥି ନିହିତ ବ୍ୟକ୍ତ ଅବ୍ୟକ୍ତ ଭାବରାଶି ସମୂହ ଶ୍ମଶାନର ବେଳାଭୂମିକୁ ଚିତା ଜ୍ୱଳନରେ ପ୍ରକମ୍ପିତ କରି ସତ୍ୟ-ଶିବ-ସୁନ୍ଦର ପାଦ ପଦ୍ମରେ ଶରଣ ନିଏ ।

ଉକ୍ତ ପବିତ୍ର ଶ୍ମଶାନ କୋଳରେ ଉଣେଇଶ ଅଣାନବେ ମସିହା ନଭେମ୍ବର ପଚିଶ ତାରିଖ ଗତ୍ର ଦୁଇ ଘଟିକା ସମୟରେ ଲେଖକ ଏକ ଶବ ସଂସ୍କାର କର୍ମରେ ଲିପ୍ତରହି ଆଦର୍ଶ ମାନବବାଦୀ କ୍ରିଷ୍ଣ ବାହାଦୁର ନେପାଳୀ ଭାଇର ଶବ ସଂସ୍କାର କର୍ମ ଜୁଇ ନିଆଁ ଆଲୋକରେ ଲକ୍ଷ୍ୟ କରୁଥାଏ ।

ନିର୍ବିକଳ୍ପ ଯୋଗୀଭଳି ସ୍ଥିର ଚିତ୍ତରେ କ୍ରିଷ୍ଣ ବାହାଦୁର ତାର ଶବ ସଂସ୍କାର କର୍ତ୍ତବ୍ୟ କରୁଥାଏ । ତାର କର୍ତ୍ତବ୍ୟ ବୋଧକୁ ଲକ୍ଷ୍ୟକରି ସହସା ବ୍ୟାସଦେବଙ୍କ କଥା ମନେପଡ଼େ । ବ୍ୟାସଦେବଙ୍କ କେଉଁ ପ୍ରକାର ଆଶିଷ ତା ଜୀବନକୁ ଏଭଳି ମହନୀୟ ନିଷ୍କାମ କର୍ମରେ ଦୀକ୍ଷୀତ କରିଅଛି ଜାଣିବାର ଜିଜ୍ଞାଶା ବାହାଦୁର ଭାଇକୁ ପ୍ରଶ୍ନ କଲେ । ପ୍ରଶ୍ନୋତ୍ତରରେ କ୍ରିଷ୍ଣ ତା ଜୀବନର କେତେକ ସ୍ମରଣୀୟ ଘଟଣାବଳୀ ପ୍ରକାଶ କରେ ।

କ୍ରିଷ୍ଣ ବାହାଦୁର ୧୯୭୨ ମସିହାରୁ ଏପର୍ଯ୍ୟନ୍ତ ବେଦବ୍ୟାସ ଶ୍ମଶାନ ସନ୍ନିକଟ ଝୁମ୍ପୁଡ଼ିରେ ରହି ଶ୍ମଶାନରେ ଶବ ସଂସ୍କାର କାମକରେ ଉକ୍ତ ଶ୍ମଶାନରେ ଶବଦାହ ପାଇଁ ପ୍ରତ୍ୟେକ ଶବ ସଂସ୍କାର କର୍ତ୍ତାକୁ କିଛି ଅର୍ଥ ସରକାରଙ୍କୁ କର ଆକାରରେ ଦେବାକୁ ପଡ଼େ । ବାହାଦୁର ପ୍ରତ୍ୟେକ ମାସ ଆରମ୍ଭରୁ ଶେଷ ଭିତରେ ସଂଗୃହୀତ କର ବାବଦ ଅର୍ଥ ସବୁକୁ ଉଦିତ ନଗର ଅଦାଲତ ଟ୍ରେଜେରୀରେ ଜମାଦିଏ । ଶୋହଳରୁ ଶତର ବର୍ଷ ମଧ୍ୟରେ ସେ ପ୍ରାୟତଃ ଚାରି ହଜାର ଶବଦାହ କର୍ମ ସମ୍ପାଦନ କରିଥିବା କଥା କୁହେ ।

କି ଖରା କି ବର୍ଷା କି ଶୀତ; ଦିନ ଅବା ରାତି; ସମୟ ଅବା ଅସମୟ ଏ ସବୁର ତାରତମ୍ୟକୁ ଲକ୍ଷ୍ୟ ନକରି କ୍ରିଷ୍ଣ ବାହାଦୁର ପ୍ରଫୁଲ୍ଲ ଚିତ୍ତରେ ଶବ ଦାହ କାମରେ ଲାଗିପାଏ । ସଂସ୍କାର ପରେ ଶ୍ମଶାନର ଶବଦାହ ଜନିତ ସକଳ ଆବର୍ଜନାକୁ ଭସ୍ମରେ ପରିଣତ କରି ବାଲିରେ ପୋତି ସିକତା ଶଯ୍ୟାକୁ ସର୍ବଦା ନିର୍ମଳ ରଖେ । ପ୍ରତିଦାନରେ ଶବ କର୍ତ୍ତାଙ୍କଠାରୁ ଯାହା ଉପଢୌକନ

ଏବଂ ସରକାରୀ ଦରମା ପାଏ ସେଥିରେ ତାର ସ୍ତ୍ରୀ କାଳିଦେବୀ ଓ ପିଲା-ମାନଙ୍କର ଭରଣ ପୋଷଣ କରେ । ସୁଖ ଦୁଃଖ ସବୁ ତା ନିକଟରେ ସମାନ ହୁଏ । ଆଜିର ବ୍ୟକ୍ତି ସ୍ୱାର୍ଥବାଦୀ ଚିନ୍ତାଧାର ତାକୁ ଗ୍ରାସ କରି ପାରେ ନାହିଁ । ବ୍ୟାସଦେବ ସ୍ୱପ୍ନ ଏବଂ ଜାଗ୍ରତରେ ତାକୁ ଆଶିଷ ପ୍ରଦାନ କରନ୍ତି ।

ଏକଦା ସ୍ୱପ୍ନରେ କ୍ରିଷ୍ଟ ବ୍ୟାସ ଧାମରେ ବସି ବିଡ଼ି ଟାଣୁଥାଏ । ଏହି ସମୟରେ ଦୁଇଜଣ ସାଧୁ ତା ନିକଟକୁ ଆସିଲେ । ତାହାଠାରୁ ଦୁଇଖଣ୍ଡି ବିଡ଼ି ମାଗି ଟାଣିଲେ । ତାକୁ ଆର୍ଶୀବାଦ ଦେଇ ଚାଲିଗଲେ ।

ଅନ୍ୟ ଏକ ରାତ୍ରର ପ୍ରାୟ ତିନି ଘଟିକା ସମୟରେ କ୍ରିଷ୍ଟ ବାହାଦୁର ଜାଗ୍ରତ ଅବସ୍ଥାରେ ବ୍ୟାସଧାମର ସରସ୍ୱତୀ କୁଣ୍ଡ ନିକଟରେ ବୁଲୁଥାଏ । ବୁଲିବାବେଳେ ହଠାତ୍ ଜଣେ ସାଧୁଙ୍କୁ ସାତ ଜଣ ବାର ଅବା ତେର ବର୍ଷର କନ୍ୟାମାନଙ୍କ ମେଳରେ ଦର୍ଶନ କରିଥିବା ଘଟଣା ଲେଖକକୁ କହେ ।

ଆଶା ବ୍ୟାସଦେବଙ୍କର କୃପାଶୀଷରୁ କ୍ରିଷ୍ଟ ବାହାଦୁର ଭଳିର ମହନୀୟ ଜୀବନ ଅନୁଭୂତିକୁ ଅନୁଭବୀହିଁ ଅନୁଭବ କରି ବ୍ୟାସଦେବଙ୍କ ସ୍ମୃତିକୁ ସମ୍ମାନିତ କରିବେ ।

## (ତ) ବେଦବ୍ୟାସ ଗୁରୁକୁଳ ବୈଦିକ ଆଶ୍ରମ :—

ଓଡ଼ିଶାର ଆର୍ଯ୍ୟ ସମାଜର ପ୍ରତିଷ୍ଠାତା ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀ ଓଡ଼ିଶାର ବାଲେଶ୍ୱର ଜିଲ୍ଲାରେ ପ୍ରାୟତଃ ୧୯୧୮ ମସିହାରେ ଜନ୍ମ ଗ୍ରହଣ କରନ୍ତି । ଆବାଲ୍ୟରୁ ଗୃହତ୍ୟାଗ କରି ଆଗ୍ରାରେ ରହନ୍ତି । ସେଠାରେ ସଂସ୍କୃତ ଶିକ୍ଷା ସମାପନ କରି ସମୟକ୍ରମେ ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କଠାରୁ ସନ୍ନ୍ୟାସ ଦୀକ୍ଷା ନିଅନ୍ତି । ଆର୍ଯ୍ୟ ସମାଜ ମାଧ୍ୟମରେ ସନାତନ ସଂସ୍କୃତିର ବୈଦିକ ଆଶ୍ରମ ଜୀବନକୁ ପୁନରୁତ୍‌ଥାନ କରିବାରେ ନିଜକୁ ଉତ୍ସର୍ଗ କରନ୍ତି ।

ଓଡିଶାର ଜନନାୟକ ସ୍ୱର୍ଗତ ଡକ୍ଟର ହରେକୃଷ୍ଣ ମହତାବଙ୍କ ସାଧୁ ଉଦ୍ୟମ ଓ ପ୍ରେରଣା ଲାଭ କରି ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀ ଓଡ଼ିଶାର ବ୍ୟାସ ଧାମରେ ବେଦବ୍ୟାସ ଗୁରୁକୁଳ ବୈଦିକ ଆଶ୍ରମ ପ୍ରତିଷ୍ଠା କରିବା ସଂକଳ୍ପ ସ୍ଥିର କରନ୍ତି । ୧୯୫୪ ମସିହାରେ ବେଦବ୍ୟାସ ଶିବାଳୟର ମୁଖ୍ୟ ସେବକ

ମାର୍ଫତଦାର ସ୍ୱର୍ଗତ ଗଦାଧର ଦେହୁରୀ ତାଙ୍କ ଅଧୀନରେ ଥିବା ବ୍ୟାସଧାମର ଦେବୋତ୍ତର ଜମିରୁ ଦଶଏକର ଦେବୋତ୍ତର ଜମି ଆଶ୍ରମମଣ୍ଡଳୀକୁ ଆଶ୍ରମ ପ୍ରତିଷ୍ଠା ନିମନ୍ତେ ଦାନ କରନ୍ତି । ପ୍ରଦତ୍ତ ଜମିର ଛଅ ଏକରରେ ଆଶ୍ରମର ନିର୍ମାଣ କାର୍ଯ୍ୟ ୧୯୫୫ ମସିହାରେ ଆରମ୍ଭ ହୁଏ । ୧୯୬୦ ମସିହା ଅକ୍ଷାଁନବମୀ ଦିନ ବେଦବ୍ୟାସ ଗୁରୁକୁଳ ବୈଦିକ ଆଶ୍ରମ ବେଦବ୍ୟାସ ଧାମରେ ଜନ୍ମ ନିଏ । ୧୯୬୨ ମସିହାରୁ ଉକ୍ତ ଆଶ୍ରମ ଆନୁଷ୍ଠାନିକ ଭାବେ ସ୍ୱାମୀ ବ୍ରହ୍ମାନନ୍ଦଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇ କାର୍ଯ୍ୟକାରୀ ହୁଏ । କିଛିକାଳପରେ ଆଶ୍ରମକୁ ଲାଗି ଅବଶିଷ୍ଟ ଚାରି ଏକର ଜମିରେ ଗୋଶାଳା ନିର୍ମିତ ହୁଏ । ଆଶ୍ରମ ଜୀବନ ସହିତ ଗୋଜାତିର ସେବାରେ ସମାଜର ହିତ କର୍ମ ଆଗେର ଚାଲେ ।

ଆଶ୍ରମର ପ୍ରତିଷ୍ଠାତା ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀଙ୍କ ଅଧୀନରେ କ୍ରମାନ୍ୱୟରେ ମୈଥିଳୀ ବିଦ୍ୱାନ ପଣ୍ଡିତ ନଗେନ୍ଦ୍ର ଝା; ପଣ୍ଡିତ ଦୁଃଖିରାମ ବେଦାଚାର୍ଯ୍ୟ ଓ ପଣ୍ଡିତ ବିଶିକେଶନ ଶାସ୍ତ୍ରୀ ଆଶ୍ରମର ମୁଖ୍ୟ ଆଚାର୍ଯ୍ୟ ରୂପେ ଅଧିଷ୍ଠିତ ହୋଇ କର୍ତ୍ତବ୍ୟ କରିଯାନ୍ତି । ଏମାନଙ୍କ ପରେ ଆଚାର୍ଯ୍ୟ ଦେବବ୍ରତ ବେଦ ବ୍ୟାକରଣ ଦର୍ଶନ ମାର୍ଗର ସୁଯୋଗ୍ୟ ଆଚାର୍ଯ୍ୟ ମୁଖ୍ୟ ଆଚାର୍ଯ୍ୟ ରୂପେ ଆଶ୍ରମରେ ଯୋଗଦିଅନ୍ତି । ଏହାଙ୍କ ପ୍ରଚେଷ୍ଟାରେ ଆଶ୍ରମର ବହୁବିଧ କଲ୍ୟାଣ ସାଧିତ ହୋଇ ଚାଲିଅଛି ।

ଦିନ ଚର୍ଯ୍ୟାରେ ବ୍ରହ୍ମଚାରୀମାନେ ପ୍ରାତଃକାଳ ଚାରିରୁ ଛଅ ଘଟିକା ମଧ୍ୟରେ ଶଯ୍ୟା ତ୍ୟାଗ; ସାମୟିକ ବ୍ୟାୟାମ; ସ୍ନାନାଦି କର୍ମ ସମାପନ କରି ଯଜ୍ଞ ମଣ୍ଡପରେ ଯୋଗଦିଅନ୍ତି । ଏହାପରେ ସାମୂହିକ ଆଚାର୍ଯ୍ୟ ଏବଂ ବ୍ରହ୍ମଚାରୀମାନଙ୍କ ଗହଣରେ ଦୈନିକ ହୋମ କରଯାଇ ଅଗ୍ନିଦେବଙ୍କୁ ଘୃତ ଆହୁତି ଦିଆଯାଏ । ଘୃତ ଆହୁତି ଅନ୍ତେ ଏକ ଅଧ୍ୟାୟ ବେଦପାଠ କରଯାଏ । ସାଢ଼େ ସାତରୁ ଜଳଯୋଗ ସାରି ଦଶ ଘଟିକା ପର୍ଯ୍ୟନ୍ତ ଛାତ୍ରାବାସରେ ବ୍ରହ୍ମଚାରୀଗଣ ସେମାନଙ୍କର ବିଦ୍ୟାଳୟ ପଢ଼ା ପଢ଼ନ୍ତି । ସାଢ଼େ ଦଶରୁ ସାଢ଼େ ବାର ଏବଂ ଏକରୁ ଚାରି ଘଟିକା ବିଦ୍ୟାଳୟରେ ଆଚାର୍ଯ୍ୟମାନେ ବ୍ରହ୍ମଚାରୀମାନଙ୍କୁ ବିଦ୍ୟା ପ୍ରଦାନ କରନ୍ତି । ସାଢ଼େ ବାର ଘଟିକାରେ ମଧ୍ୟାହ୍ନ ପଙ୍କ୍ତି ଭୋଜନ ହୁଏ । ସନ୍ଧ୍ୟା ଚାରିରୁ ଛଅ ଘଟିକା ମଧ୍ୟରେ ସନ୍ଧ୍ୟା ନିତ୍ୟକର୍ମ । ଏହାପରେ ସନ୍ଧ୍ୟା ପ୍ରାର୍ଥନା କରଯାଏ । ପ୍ରାର୍ଥନାପରେ ସାଢ଼େ ଆଠ ଘଟିକା ପର୍ଯ୍ୟନ୍ତ ଛାତ୍ରା-

ବାସରେ ବ୍ରହ୍ମଚାରୀଗଣ ନିଜ ନିଜର ପାଠ ପଢ଼ନ୍ତି । ପଢ଼ା ଶେଷରେ ରାତ୍ରୀ ଭୋଜନ ସମାପ୍ତ କରି ନଅ ଘଟିକାରେ ଅନ୍ତେବାସୀଗଣ ନିଦ୍ରା-ଦେବୀଙ୍କ କୋଳରେ ଆଶ୍ରୟ ନିଅନ୍ତି ।

ବିଗତ ଅଠେଇଶ ବର୍ଷର ସଫଳ ଉଦ୍ୟମରେ ସୁଶୋଭିତ ପ୍ରବେଶ ତୋରଣ ସହିତ ଇଟା ପ୍ରାଚୀର ପରିସର ମଧ୍ୟରେ ଆଶ୍ରମର ବେଦଭବନ ଭାରତର ଉପରାଷ୍ଟ୍ରପତି ମାନ୍ୟବର ବାସପ୍ପା ଦାନପ୍ପା ଜତ୍ତିଙ୍କ କରକମଳରେ ୧୯୭୭ ମସିହା ଜାନୁଆରୀ ତେର ତାରିଖ ମାଘ କୃଷ୍ଣାଷ୍ଟମୀ ଗୁରୁବାର ଦିନ ଉନ୍ମୋଚିତ ହୁଏ । ଯଜ୍ଞ ମଣ୍ଡପ ଯଜ୍ଞ ମନ୍ଦିର ରୂପ ନିଏ । ଶିକ୍ଷାଳୟ ଶିକ୍ଷାଃ-ପରିଚାଳନା ଗୃହ ଅତିଥି ଭବନ ଛାତ୍ରାବାସ ଆଚାର୍ଯ୍ୟ ନିବାସ ଖେଳପଡ଼ିଆ ଓ ଉଦ୍ୟାନଗୁଡ଼ିକ ନାନାବିଧ ବୃକ୍ଷ ଇତାଦି ମେଳରେ ମୁଣ୍ଡଟେକି ଗୋଶାଳା ସହିତ ଆଶ୍ରମର ଶୋଭବର୍ଦ୍ଧନ କରେ । ସର୍ବୋପରି ସବୁ କର୍ମରେ ଆଶ୍ରମବାସୀଙ୍କ ଗୈରିକ ବସ୍ତ୍ର ପରିଧାନ ଦର୍ଶକଙ୍କୁ ଦିବ୍ୟାନନ୍ଦ ପ୍ରଦାନ କରେ ।

ବେଦବ୍ୟାସଙ୍କ ସ୍ମୃତି ସ୍ମରଣ କରି ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀଙ୍କ ଆଶିଷ ଆଜି ବ୍ୟାସଧାମର ଲୁପ୍ତ ଗୁରୁକୁଳ ବୈଦିକ ଆଶ୍ରମ ଜୀବନର ଗୌରବକୁ ପୁନଃ ଜାଗରିତ କରିବାରେ ସଫଳ ହୋଇଅଛି । ଉକ୍ତ ଆଶ୍ରମରେ ଜନସାଧାରଣଙ୍କର ବ୍ରତୋପନୟନ କର୍ମ ବିବାହ କର୍ମ ସ୍ୱଳ୍ପ ସୁଲଭ ମୂଲ୍ୟରେ ସମ୍ପନ୍ନ କରଯାଉଅଛି । ଭାରତର ବିଭିନ୍ନ ପ୍ରଜ୍ଞାବାଦୀମାନଙ୍କ ପଦଧୂଳି ସ୍ପର୍ଶରେ ଆଶ୍ରମର ଭୂମି ପବିତ୍ର ହୋଇ ଆଶ୍ରମବାସୀଙ୍କୁ ମହାନ୍ କରି ଗଢ଼ିତୋଳିବାରେ ସହାୟକ ହୋଇଅଛି । ସ୍ୱଧର୍ମ ପରିତ୍ୟାଗ କରି ଅନୁତପ୍ତ ଥିବା ଅଜ୍ଞାନୀ ଭକ୍ତ-ମାନଙ୍କୁ ପୁନଃ ସନାତନ ଦୀକ୍ଷାରେ ଦୀକ୍ଷୀତ କରାଇ, ଆଶ୍ରମ ଏକ ମହାନ୍ ପରମ୍ପରା ସୃଷ୍ଟି କରିଅଛି ।

ନିର୍ମଳ ମନରେ ଜଗତର କଲ୍ୟାଣ କାମନା କରି ଆଶ୍ରମ ତାର ଲକ୍ଷ୍ୟ ପଥରେ ଅଗ୍ରସର ହେଉ । ବେଦବ୍ୟାସ ଗୁରୁକୁଳ ଆଶ୍ରମ ଅଠେଇଶ ବ୍ୟାସ-ଗଣଙ୍କ ଜ୍ଞାନାଲୋକରେ ଜଗତକୁ ଏକ ଦିବ୍ୟ ଆଲୋକ ପ୍ରଦାନ କରୁ ଏହାହିଁ ବ୍ୟାସଦେବ ଗଣଙ୍କ ଚରଣ ପଙ୍କଜରେ ପ୍ରାର୍ଥନା ।

## (ଥ) ବେଦବ୍ୟାସ ଧାମ ଏବଂ ବ୍ୟାସଦେବଙ୍କ ଉପରେ କେତେକ ଜନଶ୍ରୁତି :—

ବେଦବ୍ୟାସ ଧାମ ଓ ବ୍ୟାସଦେବ ଋଷିଙ୍କୁ କେନ୍ଦ୍ରକରି ନାଗେ ରାଜ୍ୟରେ ଅନେକ ଜନଶ୍ରୁତି ପ୍ରଚଳିତ ଥିଲା । ଉକ୍ତ ଜନଶ୍ରୁତି ଗୁଡ଼ିକରୁ ଅନେକ କାଳ ଗର୍ଭରେ ବିଲୀନ ହୋଇଯାଇଅଛି । ଅବଶିଷ୍ଟ ଯେଉଁ କେତେକ ଜନଶ୍ରୁତି ସମାଜରେ ଶୁଣାଯାଉଅଛି; ସେଗୁଡ଼ିକରୁ ଛଅଗୋଟି ଜନଶ୍ରୁତି ପାଠକଙ୍କ ଅବଗତ ପାଇଁ ନିମ୍ନରେ ପ୍ରକାଶ କରାଯାଇପାରେ ।

### ପ୍ରଥମ ଜନଶ୍ରୁତି

ଉସର ଗ୍ରାମର ଗଞ୍ଜୁ ସ୍ୱର୍ଗତ ବିଶ୍ୱେଶ୍ୱର ପତ୍ରୀଙ୍କ ଅଜା (ଜେଜେବାପା) ଜଣେ ବିତ୍ତଶାଳୀ ଧାର୍ମିକ ବ୍ରାହ୍ମଣ ଥିଲେ । ବେଦବ୍ୟାସ ଅଞ୍ଚଳରେ ତାଙ୍କର ଚାଷ ଜମି ଥିଲା । ଉକ୍ତ ଜମିରେ ଭଲ ଧାନ ଏବଂ ମୁଗ ଫସଲ ହେଉଥିଲା ।

ଏକଦା ଉପରୋକ୍ତ ଜମିର ଭାଗୁଆଳି ମୁଗ ଅମଳ କରି ଗୋଟିଏ ଭାରରେ ଦୁଇ ବୋଝ ମୁଗ ଧରି ବେଦବ୍ୟାସରୁ ଉସର ଗଞ୍ଜୁଙ୍କ ଗୃହକୁ ଯିବା ଆରମ୍ଭ କଲା । ଏହି ସମୟରେ ସହସା ଜଣେ ଶ୍ୱେତ ଶ୍ମଶ୍ରୁ, ଦୀର୍ଘ ଜଟାଧାରୀ ସନ୍ନ୍ୟାସୀ ମୁଗ-ବହନକାରୀ ଭାଗୁଆଳୀ ନିକଟରେ ଉପସ୍ଥିତ ହେଲେ । ଭାଗୁଆଳୀ ଠାରୁ କିଛି ମୁଗ ନେବା ପାଇଁ ସନ୍ନ୍ୟାସୀ ନିଜର ଇଚ୍ଛା ପ୍ରକାଶ କଲେ । ମୁଗ ବାହକ ମାଲିକର ବିନା ଅନୁମତିରେ ମୁଗ ଦେବା ଅଧମ ହେବ ଭାବି, ନିଜର ଭାବ ସନ୍ନ୍ୟାସୀଙ୍କ ଆଗରେ ପ୍ରକାଶ କଲା । ସନ୍ନ୍ୟାସୀ ମୃଦୁହସ ଫୁଟାଇ କମଣ୍ଡଳୁରେ ମୁଗ ବୋଝରୁ ଏକ କମଣ୍ଡଳୁ ମୁଗ ନେଇ ଅନ୍ତର୍ଧ୍ୟାନ ହେଲେ । ମୁଗର ପରିମାଣ ବୋଝରୁ କମିବା ପରିବର୍ତ୍ତେ ପୂର୍ଣ୍ଣ ହୋଇ ବୋଝରୁ ଉଛୁଳି ତଳେ ପଡ଼ିବା ଆରମ୍ଭ କଲା । ବେଦବ୍ୟାସରୁ ଉଷର ପର୍ଯ୍ୟନ୍ତ ମୁଗ, ବୋଝରୁ ଉଛୁଳି ପଡ଼ି ପଡ଼ି ସମଗ୍ର ପଥରେ ମୁଗର ଏକ ରେଖା ଟାଣି ହୋଇଗଲା । ଉସର ଗଞ୍ଜୁ ପତ୍ରୀ ମହୋଦୟ ମୁଗ ପଡ଼ିବା ବିବରଣୀ ନିଜ ବିଶ୍ୱସ୍ତ ଭାଗୁଆଳୀ- ଠାରୁ ଶ୍ରବଣ କରି ମୁଗପଥରେ ବେଦବ୍ୟାସକୁ ଆସିଲେ । ସଙ୍ଗରେ ଆଣିଥିବା ମୁଗଭାରଟିକୁ ସନ୍ୟାସୀଙ୍କୁ ଭେଟି ନପାରି ବ୍ୟାସାଶ୍ରମର ଅନ୍ୟମାନଙ୍କୁ ମୁଗ ବିତରଣ କଲେ ମନସ୍ତାପରେ କିଛି ସମୟ ବ୍ୟାସଦେବଙ୍କୁ ଚିନ୍ତାକଲେ ।

ଭଗୁଆଳୀ ବ୍ୟାସମୁନୀଙ୍କ ପ୍ରତ୍ୟକ୍ଷ ଦର୍ଶନ ପାଇଥିବା ଜାଣି ପତ୍ରୀବାବୁ ତାଙ୍କୁ ଭଗ୍ୟବାନ କହି କୋଳାଗ୍ରତ କଲେ । ଶେଷରେ ବ୍ୟାସଧାମକୁ ପ୍ରଣାମ କରି ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ଉକ୍ତ ଜନଗାଥା ଅନେକଙ୍କ ମୁଖରେ ଅଦ୍ୟାବଧି ମୁଖରିତ ହେଉଅଛି ।

## ଦ୍ୱିତୀୟ ଜନଶ୍ରୁତି

ଛେଣ୍ଡ ଗ୍ରାମ ନିବାସୀ ଶ୍ରୀ ବ୍ରଜମୋହନ ପାଢ଼ୀ ବ୍ୟାସଦେବଙ୍କ ଉପରେ ଏକ ଜନଶ୍ରୁତି ସ୍ୱହସ୍ତ ଲିଖିତ ବିବରଣୀରେ ଲେଖକକୁ ପ୍ରଦାନ କରିଅଛନ୍ତି ।

"ମୁଁ ଶ୍ରୀ ବ୍ରଜମୋହନ ପାଢ଼ୀ ପିତା ସ୍ୱର୍ଗତ ପିତାମ୍ବର ପାଢ଼ୀ ଛେଣ୍ଡ ଗ୍ରାମର ବାସିନ୍ଦା ଅଟେଁ ।

ଆମ୍ଭେ ପିଲାଥିବା ଅବସ୍ଥାରେ ଆମ୍ଭର ବାପା ପିତାମ୍ବର ପାଢ଼ୀ ବ୍ୟାସ-ଦେବଙ୍କ ସମ୍ପର୍କରେ ଗୋଟିଏ କୌତୁହଳ ପୂର୍ଣ୍ଣ ଗାଥା ଆମ୍ଭକୁ ଶୁଣାଇଥିଲେ ।

ବ୍ରାହ୍ମଣୀ ନଦୀ ବର୍ଷାଦିନରେ ଦୁଇ କୂଳଖାଇ ବଢ଼ିଥିଲା । ଯଦ୍ୱାରା ଛେଣ୍ଡଗ୍ରାମ ଧାନପୋଷ ବସ୍ତୀ ସେ ସମୟର ବଢ଼ି ଦେଖି ଖୁବ ଭୟ ହୋଇ-ଗଲେ । ବାପା ପ୍ରକାଶ କରିଥିଲେ ଯେ ତାଙ୍କର ବାପା ଦାମୋଦର ପାଢ଼ୀ ମା ଏବଂ ଛୁଆମାନେ ଛେଣ୍ଡ ଗ୍ରାମଛାଡ଼ି ମହାବୀର ପାହାଡ଼କୁ ରହିବା ପାଇଁ ଗଲେ ।

ଗତ ୧୨ ଘଣ୍ଟା (ବାରଘଣ୍ଟା) ସମୟରେ ବ୍ୟାସଦେବ ଏକ ଜାଗର (ଜଳୁଥିବା) ଧରି ବେଦବ୍ୟାସ ଆଡ଼ୁ ନଦୀ ପାରହୋଇ ଆମ୍ଭର ବ୍ରାହ୍ମଣ ବସ୍ତୀକୁ ଆସି ପୁଣି ଗଲେ । ଗତ ପାହିବା ପରେ ଆସି ଦେଖନ୍ତି ଯେ ବଢ଼ିପାଣି ପୂର୍ବ ଅବସ୍ଥାକୁ ଚାଲି ଆସିଛି । ଛୁଆ ପିଲାମାନଙ୍କୁ ଧରି ମୋର ଅଜା (ଦାମୋଦର ପାଢ଼ୀ) ଘରକୁ ଫେରି ଆସିଲେ । ଏହି ଘଟଣା ସତ୍ୟ ବୋଲି ବାପା ଏବଂ ଗ୍ରାମର ଲୋକମାନେ ପ୍ରକାଶ କରିଥିଲେ ।"

ତା ୧୨-୨-୧୯୮୯

ଶ୍ରୀ ବ୍ରଜମୋହନ ପାଢ଼ୀ
ବୟସ—୬୨ ବର୍ଷ
ଗ୍ରାମ —ଛେଣ୍ଡ

# ତୃତୀୟ ଜନଶ୍ରୁତି

ଆଜକୁ ପ୍ରାୟ ଚଉରାଳିଶ ବର୍ଷ ତଳର କଥା । ସେତେବେଳେ ଅବୋଧ ବାବା ନାମଧାରୀ ଜଣେ ସନ୍ୟାସୀ ବେଦବ୍ୟାସ ଧାମରେ ରହୁଥାନ୍ତି । ବର୍ତ୍ତମାନ ବେଦବ୍ୟାସ ଜଗନ୍ନାଥ ମନ୍ଦିରର ପୂଜକ ଶ୍ରୀ ବାମଦେବ ମିଶ୍ରଙ୍କୁ ସେହି ସମୟରେ ତେର ଅବା ଚଉଦ ବର୍ଷ ହୋଇଥାଏ । ସେ ତାଙ୍କ ବାପା ସ୍ୱର୍ଗତ କ୍ଷେତ୍ରବାସୀ ମିଶ୍ରଙ୍କ ସହିତ ସେଠାରେ ରହିଥାନ୍ତି । ବେଦବ୍ୟାସର ପୂର୍ବଭଗ ସମ୍ମୁଖସ୍ଥ ଛେଣ୍ଡ ଗ୍ରାମରେ ଗୋବର୍ଦ୍ଧନ ପାଢ଼ୀ ଏବଂ ହର ପଣ୍ଡା ବାସ କରି ଥାଆନ୍ତି ।

ଥରେ ଶ୍ରୀ ବାମଦେବ ମିଶ୍ର, ✓ ଗୋବର୍ଦ୍ଧନ ପାଢ଼ୀଙ୍କ ପୁତ୍ର ସ୍ୱର୍ଗତ ନିରଞ୍ଜନ ପାଢ଼ୀ ଏବଂ ✓ ହର ପଣ୍ଡାଙ୍କ ପୁତ୍ର ଏମାନେ ସାଙ୍ଗହୋଇ ବ୍ୟାସ କୁଣ୍ଡ ନିକଟସ୍ଥ ଜଳ ସ୍ରୋତରେ ପାଣିରେ ବୁଡି ଲୁଚକାଳି ଖେଳ ଖେଳୁଥାନ୍ତି । ପିଲମାନଙ୍କୁ ଅବୋଧ ବାବା ବ୍ୟାସକୁଣ୍ଡ ନିକଟରେ ଗାଧୋଇବା ପାଇଁ ବାରଣ କଲେ । ତିନି ସାଙ୍ଗ ବାବାଙ୍କ ଉପଦେଶ ନମାନି ପାଣିରେ ବୁଡ଼ି ଲୁଚକାଳି ଖେଳ ଖେଳୁଥାନ୍ତି । ହଠାତ୍ ହର ପଣ୍ଡାଙ୍କ ପୁତ୍ର ପାଣିରେ ବୁଡ଼ିଗଲ । ବାମଦେବ ନିରଞ୍ଜନ ସାଙ୍ଗକୁ ଜଳରୁ ଖୋଜି ନ ପାଇ ସମସ୍ତ ଘଟଣା ଅବୋଧ ବାବାଙ୍କୁ ଜଣାଇଲେ । ବାବା ପାଣିରେ କିଛି ସମୟ ବୁଡ଼ିରହି ହର ପଣ୍ଡାଙ୍କ ପୁତ୍ରକୁ ବ୍ୟାସକୁଣ୍ଡ ଜଳରୁ ଉଦ୍ଧାର କଲେ ।

ଦୁଇ ସାଙ୍ଗ ହର ପଣ୍ଡାଙ୍କ ପୁତ୍ରକୁ ଏତେ ସମୟ ପାଣି ଭିତରେ କିପରି ରହିବା ବିଷୟ ଦୁର୍ଘଟଣାର କିଛିଦିନ ପରେ ପଚାରିଲେ । ହର ପଣ୍ଡାଙ୍କ ପୁତ୍ର କହିଲେ ସେ ପାଣିରେ ବୁଡ଼ିଯାଇ ଏକ ପଥର ଗୁମ୍ଫାରେ ପଶିଗଲ । ଗୁମ୍ଫା ଭିତରେ କେତେକ ଦୀର୍ଘ ଜଟାଧାରୀ ବାବାଜୀଙ୍କୁ ମେଳ ହୋଇ ଗାଇବା ବଜାଇବା ଦେଖିଲ । ପରେ ଅବୋଧ ବାବା ସେଠାରେ ପହଞ୍ଚି ତାକୁ କିପରି ସେଠାରୁ ଉଦ୍ଧାର କଲେ ସେ ବିଷୟ ତାର ମନେ ନାହିଁ ବୋଲି ଦୁଇ ସଖାଙ୍କୁ କହିଲ । ହର ପଣ୍ଡାଙ୍କ ପୁତ୍ର ବ୍ୟାସ କୁଣ୍ଡସ୍ଥ ନିଜର ଅନୁଭୂତି ପ୍ରକାଶ କରିବାର ଅଳ୍ପଦିନପରେ ତାର ମୃତ୍ୟୁ ହୋଇଗଲ ।

ଅଧୁନା ବେଦବ୍ୟାସ ପାହାଡ଼ରେ ଥିବା ବ୍ୟାସ ଗୁମ୍ଫାକୁ କେତେକ ସତ୍ୟବତୀ ଗୁମ୍ଫା ନାମରେ ନାମିତ କରୁଅଛନ୍ତି । ବ୍ୟାସକୁଣ୍ଡ ବ୍ୟାସ ଗୁମ୍ଫା

(ଅନ୍ୟନାମ ସତ୍ୟବତୀ ଗୁମ୍ଫା ଓ ସରସ୍ୱତୀ କୁଣ୍ଡର ଗୋନାସିକା ତ୍ରିସନ୍ଧି ମଧ୍ୟରେ ଅତୀତରୁ ଏପର୍ଯ୍ୟନ୍ତ ଗୁପ୍ତ ରହିଥିବା ଗାଥା ଜନଶ୍ରୁତି ପ୍ରଚାର କରେ । ଲେଖକ ଜନଶ୍ରୁତିଦ୍ୱୟ ବଲଣି ନିବାସୀ ଶ୍ରୀ ବିଶ୍ୱନାଥ ଅମାତ ଏବଂ ବେଦବ୍ୟାସ ଜଗନ୍ନାଥ ମନ୍ଦିର ପୂଜାରୀ ଶ୍ରୀ ବାମଦେବ ମିଶ୍ରଙ୍କଠାରୁ ସଂଗ୍ରହ କରିଅଛି ।

## ଚତୁର୍ଥ ଜନଶ୍ରୁତି

କଟକ ଜିଲ୍ଲା ଜଗତସିଂହ ପୁର ତିହସାଇ ବିରି ଗ୍ରାମର ସ୍ୱର୍ଗତ ବାଇଧର ମିଶ୍ରଙ୍କ କନିଷ୍ଠ ପୁତ୍ର ସ୍ୱର୍ଗତ ପଣ୍ଡିତ ଗଣେଶ ମିଶ୍ର ଏକାଧାରରେ ଜଣେ ବିଶିଷ୍ଟ ପଣ୍ଡିତ, ଜ୍ୟୋତିର୍ବିଦ୍ ଓ କବିରାଜ ରୂପେ ଓଡ଼ିଶାରେ ସୁପରିଚିତ ଅଟନ୍ତି । ତାଙ୍କର ଅଲୌକିକ ସାଧନାର ସିଦ୍ଧି ଅଦ୍ୟାବଧି ଜନ-ମୁଖରେ ମୁଖରିତ ହେଉଅଛି । ତାଙ୍କର ସ୍ୱହସ୍ତ ଲିଖିତ ଏକ ପତ୍ର ଲେଖକ ସଂଗ୍ରହ କରି-ଅଛି । ପତ୍ରଟିରୁ ତାଙ୍କର ଅନାବିଳ ବିଭୁପ୍ରୀତିର ଭାବ ପରିଲକ୍ଷିତ ହୁଏ । ଜଗତସିଂହପୁର ଆଳି ଜଙ୍ଗଲରେ ପଣ୍ଡିତଙ୍କର ଗଣେଶ ଔଷଧାଳୟ ଏବଂ ଆଶ୍ରମ ବର୍ତ୍ତମାନ ଜରାଜୀର୍ଣ୍ଣ ଅବସ୍ଥାରେ ପଡ଼ିରହିଅଛି । ୧୯୭୨ ମସିହାରେ ଅଣାନବେ ବର୍ଷ ବୟସରେ ଶ୍ରାବଣ ପୂର୍ଣ୍ଣମୀ ରାତ୍ରୀର ଚତୁର୍ଥ ପ୍ରହରରେ ପଣ୍ଡିତ ଗଣେଶ ମିଶ୍ର ଯୋଗରେ ବସି ପ୍ରାଣତ୍ୟାଗ କରିଅଛନ୍ତି ।

ପଣ୍ଡିତ ଗଣେଶ ମିଶ୍ର ତାଙ୍କ ଜୀବଦ୍ଦଶାରେ ଅନେକ ଥର ରାଜପୁର ରାଜାଙ୍କ ପଣ୍ଡିତ ସଭାରେ ଯୋଗଦେଇଥିଲେ । ସେ ପ୍ରାୟତଃ ୧୯୩୯ ମସିହାରେ ତାଙ୍କ ଶାଳକ ସ୍ୱର୍ଗତ ବଳରାମ ଆଚାର୍ଯ୍ୟଙ୍କ ସହିତ ବେଦବ୍ୟାସ ଧାମ ବୁଲିବାକୁ ଆସିଥିଲେ । ସେତେବେଳେ ବେଦବ୍ୟାସ ଅଞ୍ଚଳର ବ୍ୟାଘ୍ରଭୟ ଲାଗିରହିଥାଏ । ଦୁର୍ଗାପୁର ଏବଂ ଛେଣ୍ଡବାସୀ ବ୍ରାହ୍ମଣମାନଙ୍କ ମେଳରେ ସେ ବ୍ୟାସଧାମ ପରିଦର୍ଶନ କଲେ । ସ୍ଥାନୀୟ ବ୍ରାହ୍ମଣମାନଙ୍କ ବାରଣ ସତ୍ତ୍ୱେ ପଣ୍ଡିତ ମହୋଦୟ ତାଙ୍କ ଶାଳକଙ୍କ ସହିତ ସେହିଦିନ ରାତ୍ରୀ ବେଦବ୍ୟାସର ବ୍ରହ୍ମବେଦୀରେ ରହିଥିଲେ । ରାତ୍ର ରହଣୀ ସମୟରେ ବଳରାମ ପଣ୍ଡିତଙ୍କ ନିକଟରେ ଶୋଇ-ଥାନ୍ତି । ପଣ୍ଡିତ ଗଣେଶ ମିଶ୍ର ଯୋଗଧ୍ୟାନରେ ନିମଗ୍ନରହି ରାତ୍ରୀ କଟାଇବାରେ ଲାଗିଥାନ୍ତି । ରାତ୍ର ପ୍ରାୟ ତିନି ଘଟିକାରେ ସହସା ଏକ ମହାବଳ ବ୍ୟାଘ୍ର ପଣ୍ଡିତଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଗର୍ଜନ କଲା । ସେ ନିର୍ଭୟରେ ନିଜ

ଇଷ୍ଟ ଚିନ୍ତା କରିବାବେଳେ ଜଣେ ବାରବର୍ଷ ବୟସ୍କା କନ୍ୟା ପଣ୍ଡିତ ସମ୍ମୁଖରେ ବ୍ୟାଘ୍ର ପାଖରେ ଦେଖାଦେଲେ । ବାଳିକାଟି ନିଜର ନାମ ସତ୍ୟବତୀ କହି ବ୍ୟାଘ୍ର କର୍ଣ୍ଣକୁ ଧରି ବ୍ରହ୍ମବେଦୀରୁ ଦୂରକୁ ଯାଇ ଅନ୍ତର୍ଦ୍ଧ୍ୟାନ ହୋଇଗଲେ । ହର୍ଷ ବିସ୍ମୟ ଭବରେ ବୁଢ଼ି ପଣ୍ଡିତ ଗଣେଶ ମିଶ୍ର ଶାଳଙ୍କ ବଳରାମ ବ୍ୟାସଧାମରେ ଘଡ୍ଡୀଟି କଟାଇ ସ୍ୱ ଗ୍ରାମକୁ ପ୍ରତ୍ୟାବର୍ତ୍ତନ କଲେ । ସେ ବ୍ୟାସଧାମର ଅଲୌକିକ ଘଟଣାବଳୀକୁ ତାଙ୍କର ସ୍ୱଜନ ବାନ୍ଧବଙ୍କୁ କହିଥିଲେ ।

ଲେଖକ ଉକ୍ତ ବିବରଣୀ ପଣ୍ଡିତ ଗଣେଶ ମିଶ୍ରଙ୍କ ବଡ଼ଭାଇ ସ୍ୱର୍ଗତ ଗୋକୁଳା ନନ୍ଦ ମିଶ୍ରଙ୍କ ବଡ଼ପୁତ୍ର କବିରାଜ ଶ୍ରୀ ବିଜୟରାମ ମିଶ୍ରଙ୍କଠାରୁ ସଂଗ୍ରହ କରିଅଛି ।

## ପଞ୍ଚମ ଜନଶ୍ରୁତି

ଇଂରଜୀ ଶାସନ ଅମଳରେ ପ୍ରାୟତଃ ୧୯୨୪ ଅବା ୧୯୨୫ ମସିହାର ଏକ ଜନଶ୍ରୁତି । କୁଆଁର ମୁଣ୍ଡା ଜମିଦାରୀ ଅଧୀନରେ ପଦ୍ମପୁର ସନ୍ନିକଟ କେଉଟୁଣୀ ପୋଷ ଗ୍ରାମ ଥାଏ । ଏହି ଗ୍ରାମରେ ଜନୈକ ମୁଣ୍ଡା ଜାତୀୟ ବ୍ୟକ୍ତିଙ୍କର ଘାଖୁଲ୍ ମୁଣ୍ଡା ନାମକ ପିଲାଟିଏ ଥାଏ । ଘାଖୁଲ୍‌ର ବାପ ପୁଅକୁ ପାଠ ପଢ଼ାଇବା ପାଇଁ କୁଆଁର ମୁଣ୍ଡା ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ତାର ନାମ ଲେଖାଇ ଦିଅନ୍ତି ।

ସେହି ସମୟରେ କୌଣସି ପିଲା ବିଦ୍ୟାଳୟରେ ଅନୁପସ୍ଥିତ ରହିଲେ ପିଲାର ଅଭିଭବକୁ ଅନୁପସ୍ଥିତ ଦିନଗୁଡ଼ିକ ପାଇଁ ଜମିଦାର ପାଖରେ ଅବା ବିଦ୍ୟାଳୟରେ ବେଠୀ ଖଟିବା ଦଣ୍ଡ ବିଧାନ ଥାଏ । ଘାଖୁଲ୍ ପାଠ ପଢ଼ିବାକୁ ଡ଼ରୁଥାଏ । ତେଣୁ ପଢ଼ା ଜନିତ ତ୍ରୁଟୀ ପାଇଁ ଶିକ୍ଷକଙ୍କ ଠାରୁ ମାଡ଼ ଗାଳି ଖାଉଥାଏ । ସେ ଘରୁ ପଢ଼ିବା ଆଳରେ ବାହାରି ବିଦ୍ୟାଳୟକୁ ନ ଯାଇ ବାଟରେ ଲୁଚିଯାଏ । ବିଦ୍ୟାଳୟର ଛୁଟୀ ସମୟକୁ ଘରକୁ ଫେରେ । ବିଦ୍ୟାଳୟ କର୍ତ୍ତୃପକ୍ଷ ଘାଖୁଲ୍‌ର ବାପକୁ ପୁଅର ଅନୁପସ୍ଥିତି ନେଇ ଅନେକ ଥର ବେଠୀ ଖଟାଇଲେ । ବେଠୀଖଟି ବାପ ପୁଅକୁ ଘରେ ମାଡ଼ଦେଇ ସ୍କୁଲକୁ ପଠାଉଥିଲା । ଶେଷରେ ଘାଖୁଲ ଉଭୟ ଘରେ ଏବଂ ବିଦ୍ୟାଳୟରେ ମାଡ଼ ଖାଇ ପଢ଼ା ଛାଡ଼ି ଘରଛାଡ଼ି ଅନ୍ୟତ୍ର ଗୁଳିଯିବା ପାଇଁ ମନରେ ଚିନ୍ତା କରୁଥିଲା ।

ଚିନ୍ତାରେ ଘାଖୁଲର କିଛି ଦିନ ବିତିଗଲା । କ୍ରମେ ବର୍ଷାଋତୁ ଆସିଗଲା । ଦିନେ ଆଷାଢ ମାସର ଏକ ଝଡ଼ି ବର୍ଷାରେ ଭିଜି ଘାଖୁଲ୍ କେଉଟୁଣୀ ପୋଷ ପଦାସ୍ତରଣରେ ଶଙ୍ଖନଦୀ କୂଳକୁ ଗୁଳିଗଲା । ଯୋଗକୁ ଡ଼ଙ୍ଗାଘାଟ ଜନଶୂନ୍ୟ ଥିଲା । ସେ ଏକାକୀ ଡଙ୍ଗାଚଢ଼ାଇ ନଦୀ ପାର ହୋଇ ସୂର୍ଯ୍ୟାସ୍ତବେଳକୁ ବେଦ-ବ୍ୟାସ ପାହାଡ଼ର ସରସ୍ୱତୀ ଝରଣା କୂଳରେ ପହଞ୍ଚିଗଲା ।

ବିଚରା ଘାଖୁଲ୍ ମୁଣ୍ଡା ଭେକ ଶୋଷ ଏବଂ ଅନ୍ଧକାରରେ ଡ଼ରି ଡ଼ରି କାନ୍ଦି ପକାଉଥାଏ । କେଉଁଠି ଆଶ୍ରୟ ନେବ କିଛି ଭାବି ପାରୁ ନଥାଏ । ହଠାତ୍ ତା ମୁଣ୍ଡରେ ଏକ ବୁଦ୍ଧି ଆସେ । ସେ ଝରଣାରୁ କିଛି ପାଣି ପିଇ ଭୟରେ ସେଠାରେ ଥିବା ଏକ ଶିଅଳୀ ଲଟା ତଳେ ଆଖିବୁଜି ଶୋଇବାକୁ ଚେଷ୍ଟାକଲା । ପିନ୍ଧା କଉପୀନ ବ୍ୟତୀତ ତା ପାଖରେ ଆଉ କିଛି ସମ୍ବଳ ନଥିଲା । ଭେକ ଜ୍ୱାଳାରେ ତାକୁ ନିଦ ନ ମାଡ଼ିଲେ ସୁଦ୍ଧା ଭୟରେ ଆଖି ବନ୍ଦ କରି ପଡ଼ିଥାଏ । ବର୍ଷା ରାତ୍ରୀ କ୍ରମଶଃ ଗମ୍ଭୀର ହୋଇଉଠେ । ଶୀତରେ ତାର ଦେହ କମ୍ପିବାକୁ ଆରମ୍ଭ କରେ । ସେ କାନ୍ଦିଉଠେ । ହଠାତ୍ ସେହି ବର୍ଷା-ମୁଖର ରାତ୍ରୀରେ ଜଣେ ଜଟାଧାରୀ ସନ୍ୟାସୀ ଘାଖୁଲ୍ ନିକଟରେ ଉପସ୍ଥିତ ହେଲେ । ପିଲାଟିକୁ ବଡ଼ପାଟିରେ ଉଠିବା ପାଇଁ ଡ଼ାକିଲେ । ଡ଼ରରେ ଘାଖୁଲ୍ ଜଟାଧାରୀଙ୍କୁ କିଛି ପ୍ରତ୍ୟୁତ୍ତର ନ ଦେଇ ଶୋଇବାର ଛଳନା କଲା । ଜଟିଆ ବାବା ପିଲାଟିର ମନ ଜାଣି ତାକୁ ସ୍ୱହସ୍ତରେ ଉଠାଇ ତାର ଆଗମନର କାରଣ ବୁଝିଲେ । ଘରେ ବାପ ମା ତାକୁ ନପାଇ କାନ୍ଦୁଥିବେ । ଏ କଥା କହି ସନ୍ୟାସୀ ତାକୁ ଘରକୁ ଫେରି ଯିବାପାଇଁ ଉପଦେଶ ଦେଲେ । ନିର୍ଜନ ଅନ୍ଧକାର ବର୍ଷା ରାତ୍ରୀରେ ନଦୀ ପାରହୋଇ ଘରକୁ ଫେରିବା ପାଇଁ ଘାଖୁଲ୍ ନିଜର ଅସାମର୍ଥ ପ୍ରକାଶ କଲା । ଘରକୁ ଯାଇ ପୁଣି ମାଡ଼ ଖାଇବା ଅପେକ୍ଷା ବ୍ୟାସଧାମରେ ନ ଖାଇ ନ ପିଇ ମରିବା ସିଦ୍ଧାନ୍ତ ବାବାଙ୍କୁ ଜଣାଇ ଦେଲା । ସନ୍ୟାସୀ ଦୟା ପରବଶ ହୋଇ ତାକୁ ଏକ ମୁଦ୍ରିକା ଦେଇ ଘରକୁ ଫେରିଯିବା ପାଇଁ ଆଦେଶ ଦେଲେ । ପୁନଶ୍ଚ ଆଶୀର୍ବାଦ ଦେଇ କହିଲେ ଏହି ମୁଦ୍ରିକା ଯେତେଦିନ ତୋ ପାଖରେ ଥିବ, ସେତେଦିନ ତୋତେ ଖରା, ବର୍ଷା, ଶୀତ ଭେକ ଏବଂ ଶୋଷରେ ଦାଉ ବାଧିବ ନାହିଁ । ନଦୀ ପାଣିରେ ଆଣ୍ଠୁ ବୁଡ଼ିବ ନାହିଁ । ତୁ ଅକ୍ଳେଶରେ ଉରନଦୀରେ ଗୁଲିଯାଇ ପାରିବୁ । ଯେଉଁଦିନ ଏହି ଗୋପନ

ରହସ୍ୟ ପ୍ରକାଶ କରିବୁ ସେହିଦିନୁଁ ଉକ୍ତ ମୁଦ୍ରିକା ତୋ ପାଖରୁ ଉଭେଇଯିବ । ମୋର ଆଶୀର୍ବାଦରୁ ବଞ୍ଚିତ ହେବୁ । ଜଟିଆ ବାବାଙ୍କ ସ୍ପର୍ଶରେ ଘାଖୁଲ୍‌ର ସମସ୍ତ ଦୁଃଖ ଗ୍ଲିଯାଏ । ସେ ସନ୍ୟାନୀଙ୍କୁ ପ୍ରଣାମ କରି ନଦୀରେ ଗ୍ଲି ସେହି ରାତ୍ର ପାହାନ୍ତିଆ ପ୍ରହରରେ ନିଜ ଘରକୁ ଫେରିଗଲ ।

ପ୍ରତ୍ୟୁଷରୁ ଘାଖୁଲ୍‌କୁ ଦେଖି ତାର ବାପ ମା ଖୁସି ହୁଅନ୍ତି । ରାତ୍ରୀର ରହସ୍ୟ ବାପ ମାଙ୍କୁ ଗୋପନ ରଖି ବିଦ୍ୟାଳୟକୁ ପଢିବାକୁ ଗଲ । ହେଲେ ପାଠପଢାରେ ତାର ମନ ରହେ ନାହିଁ । ପୂର୍ବଭଳି କେତେକ ଦିନ ଘରେ ବାପା ଏବଂ ବିଦ୍ୟାଳୟରେ ଶିକ୍ଷକଙ୍କଠାରୁ ମାଡ଼ଗାଳି ଖାଇ ପାଠ ପଢ଼ାରେ ଡ଼ୋରୀବାନ୍ଧେ । ଏହାପରେ ଘରେ ରହି ବାପାଙ୍କୁ ଘର କାମରେ ସାହାଯ୍ୟ କରୁଥାଏ । କ୍ରମେ ବଡ଼ି ଯୁବକ ହୁଏ । ଜଟିଆ ବାବାଙ୍କ ଆଶିଷରୁ ଘାଖୁଲ୍ ଜମିଦାର ଘରେ ଚଉକିଦାର ଗ୍ଳକିରୀ କରେ ।

ଗ୍ଳକିରୀ ସମୟରେ ଘାଖୁଲ୍ ତାର ଜନୈକ ସାଙ୍ଗ ମହିନନ୍ଦ ସହିତ ସହ୍ୟାବସେ । ସେତେବେଳେ ଜମିଦାରମାନଙ୍କ ଘରେ ଚଉକିଦାରମାନଙ୍କ ମଧ୍ୟରେ ପ୍ରତି ତିନି ତିନି ଘଣ୍ଟା ବ୍ୟବଧାନରେ ଜଗିବା ପାଳି ବଦଳୁଥିଲ । ଘାଖୁଲ୍ ତାର ସାଙ୍ଗମାନଙ୍କ ସହିତ କିଛିଦିନ ଗ୍ଳକିରୀ କରେ ।

ଏକଦା ଭାଦ୍ରବ ଶୁକ୍ଳ ଏକାଦଶୀ ବର୍ଷା ମୁଖର କରମା ପର୍ବରେ ଘାଖୁଲ୍‌ର ଜଗିବା ପାଳି ଅପରାହ୍ନ ତିନି ଅବା ଗ୍ଳରି ଘଟିକାବେଳକୁ ପଡ଼େ । ସେ ବିନା ଛତାରେ ନିଜର ଗାମୁଛାଟି ମୁଣ୍ଡରେ ପକାଇ ଜମିଦାରଙ୍କ ଘରକୁ ଯାଇ କର୍ମସ୍ଥଳୀରେ ପହଞ୍ଚିଲ । ପୂର୍ବରୁ ସହ୍ୟ ମହିନନ୍ଦା ଜଗୁଥାଇ ଥିଲ । ବର୍ଷାରେ ଆସିଥିବା ସହ୍ୟା ଏବଂ ତାର ଗାମୁଛା ସୁଖା ଥିବା ଦେଖି ମହିନନ୍ଦ ଆଶ୍ଚର୍ଯ୍ୟ ହେଲ ଏହାର କାରଣ ଜାଣିବା ପାଇଁ ସହ୍ୟାକୁ ଜିଜ୍ଞାସ କଲ । ପ୍ରତ୍ୟୁ-ତ୍ତରରେ ଘାଖୁଲ୍ ସନ୍ୟାସୀଙ୍କର ବାରଣ ଭୁଲି ମୁଦ୍ରିକା ରହସ୍ୟ ପ୍ରଗ୍ଳର କର୍ଲ । ଫଳରେ ଜଟିଆ ବାବାଙ୍କ ଅହେତୁକ କୃପାର ଦାନ ମୁଦ୍ରିକା ଘାଖୁଲ୍ ନିକଟରୁ ଉଭେଇ ଗଲ । ସେ କ୍ରମଶଃ ଶ୍ରୀହୀନ ହୋଇ ଅନୁତାପରେ ପାଗଳ ଭଳି ଏଣେ ତେଣେ ବୁଲିବାରେ ଲଗିଲ । ପରିଶେଷରେ ପାଗଳଅବସ୍ଥାରେ ଘାଖୁଲ୍ ମୁଣ୍ଡାର ମୃତ୍ୟୁହେଲ ।

ଉକ୍ତ ଜନଗାଥା ଲେଖକ ବଲଣି ନିବାସୀ ଶ୍ରୀ ବିଶ୍ୱନାଥ ଅମାତଙ୍କ ମୁଖରୁ ଶ୍ରବଣ କରି ବେଦବ୍ୟାସର ମହିମା ପ୍ରକାଶ କରିଅଛି ।

## ଷଷ୍ଠ ଜନଶ୍ରୁତି

ନାଗରର ପୂର୍ବତନ ଦିଓ୍ୱାନ ସ୍ୱର୍ଗତ ନର ବେହେରଙ୍କ ଅମଳରେ ତାଙ୍କର ପୁତ୍ରର ସ୍ୱର୍ଗତ ରେଙ୍ଗେଟା ବେହେର ବାତ ରୋଗରେ ପୀଡ଼ିତ ହୋଇ ଶାରୀରିକ ଅକ୍ଷମତା ଯୋଗୁଁ ଘରେ ପଡ଼ି ରହିଥିଲେ । ଚଳ ପ୍ରଚଳ ବିନା ବଞ୍ଚିବା ଆଶା ତାଙ୍କର କ୍ଷୀଣ ହେବାକୁ ଲଗିଲା ।

ସେହି ସମୟରେ ବେଦବ୍ୟାସରେ ଜନୈକ ଅସାଧାରଣ ସିଦ୍ଧ ସାଧକ ରହିଥିଲେ । ସେ ପାଣିରେ କଠାଉ ପିନ୍ଧି ଚାଲିବା, ଅଦୃଶ୍ୟରେ ଇଚ୍ଛାନୁଯାୟୀ ଯିବା ଆସିବା କରିବା ଏବଂ ବାକ୍‌ସିଦ୍ଧି ଆଦି ସାଧନାରେ ସିଦ୍ଧି ଲାଭ କରିଥିଲେ ।

ନର ବେହେର ଉକ୍ତ ସିଦ୍ଧ ସନ୍ୟାସୀଙ୍କୁ ଦର୍ଶନ କରି ତାଙ୍କର ପୁତ୍ରର ଆରୋଗ୍ୟ ନିମିତ୍ତ ତାଙ୍କୁ ନିଜର ହମିରପୁର ଗୃହକୁ ଯିବା ପାଇଁ ପ୍ରାର୍ଥନା କରିଥିଲେ । ସାଧୁ ନର ବେହେର ଘରକୁ ଆସି ବେହେରଙ୍କ ଗୃହରେ ଏକ ହୋମ କଲେ । ହୋମର ବିଭୁତି ରେଙ୍ଗେଟା ବେହେରଙ୍କ ଦେହରେ ସ୍ୱହସ୍ତରେ ବୋଳି ତାଙ୍କୁ ଆରୋଗ୍ୟ ହେବାପାଇ ଆଶୀର୍ବାଦ ଦେଇ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ । ଫଳରେ ରେଙ୍ଗେଟା ବେହେର ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇ ସୁଖରେ କାଳାତିପାତ କରି ଯଥା ସମୟରେ ପରଲୋକକୁ ଗଲେ ।

### (ଦ) ବେଦବ୍ୟାସର ପ୍ରଭାବ :—

ମହାବୀର, ବ୍ରାହ୍ମଣୀ, ମୁଦ୍ରା, ବାଉତି ଏବଂ ରାମପୁର ନିକଟସ୍ଥ ପାହାଡ଼ଗୁଡ଼ିକରେ ଅନେକ ପଥର ଗୁମ୍ଫା ଥିଲା । ସେଗୁଡ଼ିକ ମଧ୍ୟରୁ କେତେକ ଧ୍ୱଂସ ସ୍ତୂପରେ ପରିଣତ ହୋଇଗଲାଣି । କେତେକ ଅଦ୍ୟାବଧି ଦେଖିବାକୁ ମିଳେ ।

ଅତୀତରେ ନାଗରର ଗୁମ୍ଫା ଏବଂ ଗୁମ୍ଫା ସନ୍ନିକଟ ବନଭୂମିରେ ମୁନି ଋଷିମାନେ ରହୁଥିଲେ । ବେଦବ୍ୟାସ ଏମାନଙ୍କର ସାମୁହିକ ଯଜ୍ଞ, ଉପାସନା

ଓ ଶାସ୍ତ୍ର ଚର୍ଚ୍ଚାର ମୁଖ୍ୟ ପୀଠ ଥିଲା । ବେଳେବେଳେ ଏହି ମୁନିମାନଙ୍କ ସଂସ୍ପର୍ଶରେ ବନବାସୀମାନେ ଆସି ଦିବ୍ୟଜ୍ଞାନ ଲାଭ କରୁଥିଲେ ।

ବନପୋଷର ପୂଡ଼ା ଖାଡ଼ିଆ ଓ ଖୁର୍ଜନ ସା (ଭୂୟାଁ) ଦୁଇଜଣ ମହାପ୍ରସାଦ ମିତ ଥିଲେ । ପିଲାଦିନେ ଏମାନେ କୋଇଲି ନଦୀ ଖଣ୍ଡିରେ ପ୍ରତିଦିନ ଗାଇ ଚରଉଥିଲେ ।

ଥରେ ଗୋଚାରଣ ସମୟରେ ଜନୈକ ସାଧୁ ଗୋଚାରଣ ସ୍ଥଳରେ ଆବିର୍ଭୂତ ହୋଇ ପୂଡ଼ା ଖାଡ଼ିଆକୁ ମନ୍ତ୍ର ବଳରେ ଆକର୍ଷିତ କରି ତାଙ୍କର ନିବାସ ସ୍ଥଳ ବ୍ରାହ୍ମଣୀ ଓ ମୁଦ୍ରା ପାହାଡ଼ ମଧ୍ୟସ୍ଥ ଗୁମ୍ଫାକୁ ନେଇଗଲେ । ସାଧୁମାନଙ୍କ ମେଳରେ ପୂଡ଼ାର ପ୍ରାୟ ଦେଢ଼ ବର୍ଷ ଅତିବାହିତ ହୋଇଗଲା । ସେ ସାଧୁ ସାନିଧ୍ୟ ଲାଭକରି ବ୍ରହ୍ମଚର୍ଯ୍ୟ ଏବଂ ସନ୍ୟାସ ବ୍ରତ ଗ୍ରହଣ କଲା । ସାଧୁଙ୍କ କୃପାରୁ ଈଶ୍ୱର ଉପାସନା ସହିତ ଅନେକ ଲୋକହିତକର ମନ୍ତ୍ରରେ ସିଦ୍ଧିଲାଭ କଲା । କିଛିଦିନ ଅନ୍ତେ ସାଧୁମାନଙ୍କ ଠାରୁ ବିଦାୟ ମାଗି ନିଜ ଗ୍ରାମ ବନ୍‌ପୋଷକୁ ଫେରି ଅସିଲା ।

ଗ୍ରାମ ସୀମାରେ ଗୋଟିଏ କୁଟୀର ନିର୍ମାଣ କରି ତହିଁରେ ବାସ କରିଥାଏ । ସାଧୁମାନଙ୍କ ପ୍ରଦତ୍ତ ବନୌଷଧି ଏବଂ ମନ୍ତ୍ରୌଷଧି ପ୍ରୟୋଗ କରି ସମାଜକୁ ନାନା ରୋଗର ପ୍ରକୋପରୁ ମୁକ୍ତ କଲା । କୁକୁର, ବିଲୁଆ ଓ ସର୍ପାଦି ବିଷ ଝାଡ଼ିବା କର୍ମରେ ପୂଡ଼ା ବିଶେଷ ସୁନାମ ଅର୍ଜନ କଲା ।

ସେହି ସମୟରେ ନାଗରରେ (ପ୍ରାୟତଃ ୧୯୧୫ ମସିହା) ଖ୍ରିଷ୍ଟାନୀ ଧର୍ମଯାଜକମାନେ ଖ୍ରୀଷ୍ଟଧର୍ମ ପ୍ରଚାର କରି ହିନ୍ଦୁ ସମାଜକୁ ପ୍ରଭାବିତ କରୁଥାନ୍ତି । ସମୟ ଚକ୍ରରେ ପୁଡ଼ା ଖାଡ଼ିଆ ଖ୍ରୀଷ୍ଟ ଧର୍ମ ଗ୍ରହଣ କରି ସଂସାରୀ ହେଲା । ଦୁଷ୍କର୍ମ ଜନିତ କର୍ମରେ ପୁଡ଼ା ଲିପ୍ତ ହେବାରୁ ତାର ପୂର୍ବ ଖ୍ୟାତି ଲୁଲୁଣ୍ଠିତ ହେଲା । ପ୍ରାୟତଃ ୧୯୪୬ ମସିହାରେ ତାର ମୃତ୍ୟୁ ହେଲା ।

ପୁଡ଼ା ଖାଡ଼ିଆର ମହାପ୍ରସାଦ ମିତ ✓ ଦୁର୍ଜନ ସାଙ୍କ ଠାରୁ ଉପରୋକ୍ତ ସତ୍ୟ ଗାଥା ହମିରପୁର ନିବାସୀ ଶ୍ରୀ ବୃନ୍ଦାବନ ବେହେରା ଶୁଣିଥିଲେ । ଲେଖକ ତାଙ୍କଠାରୁ ଗାଥାଟି ଉଦ୍ଧାର କରି ପ୍ରକାଶ କରିଅଛି ।

ଏତିକିରେ ସ୍ପଷ୍ଟୀକରଣ ଅଭିଯାନ ବନ୍ଦ ରଖି, ଆଲୋଚ୍ୟ ବିଷୟ (ବ୍ୟାସ ଜନ୍ମ)ର ପଥ ଉନ୍ମୋଚିତ କରଯାଇପାରେ ।

ଉପସଂହାର :—

କେଉଁ ଦ୍ୱାପର ଯୁଗରୁ ମହାବୀରର ଅଂଶ ବିଶେଷ ବେଦବ୍ୟାସ ଧାମ ଛବିଶତମ ବ୍ୟାସଦେବ ଋଷି ପରାଶର ବ୍ୟାସଦେବ ଧୀବର ପାଳିତ କନ୍ୟା ସତ୍ୟବତୀ (ଯାହାଙ୍କର ଅପର ନାମଗୁଡ଼ିକ ଯଥାକ୍ରମେ ମତ୍ସ୍ୟ ଗନ୍ଧା ଯୋଜନ ଗନ୍ଧା ଓ ଭଗ୍ୟବତୀ) ଏବଂ ଏମାନଙ୍କର ଔରଷଜାତ ସନ୍ତାନ ଅଠେଇଶତମ ବ୍ୟାସଦେବ କୃଷ୍ଣ ଦ୍ୱୈପାୟନ ବ୍ୟାସଙ୍କ ସ୍ମୃତି ସ୍ମରଣ କରି ବ୍ରାହ୍ମଣୀ (ବ୍ରହ୍ମୀ) ନଦୀର ପଶ୍ଚିମ ତଟରେ ଠିଆ ହୋଇଅଛି ତାହା କଳନା କରିବା ଏ ଲେଖକ ପକ୍ଷେ ସମ୍ଭବ ନୁହେଁ । ଏଥି ନିହିତ ବ୍ୟାସ ଗୁମ୍ଫା (ଯୋହାକି ଅତୀତରେ ସତ୍ୟବତୀ ଗୁମ୍ଫା ନାମ ବହନ କରିଥିଲା), ବ୍ରହ୍ମବେଦୀ, ପଦତଳ ବ୍ରାହ୍ମଣୀ କୂଳରେ ଥିବା ବ୍ୟାସ ଯଜ୍ଞକୁଣ୍ଡ ପରେ ଜଳକୁଣ୍ଡରେ ପରିଣତ ହୋଇ ଅଦ୍ୟାବଧି ବ୍ରାହ୍ମଣୀ ସହିତ ଅତୀତର ଯଶଗାନକରୁଅଛି ।

ଏତଦ୍‌ବ୍ୟତୀତ ଦାସରଜା ଗଡ଼ ବ୍ରାହ୍ମୀ ଦେବୀ ଇନ୍ଦ୍ର ସହସ୍ର ଯୋନୀ ପଥର (କୋଠି ଟାଙ୍ଗର) ଯମୁନା ଦ୍ୱିପ ବ୍ରାହ୍ମଣୀ ଉପତ୍ତି ଜଳସ୍ଥ ପଥରଭେଡ଼ା (ଯମୁନା ଦ୍ୱୀପର ଶେଷ ସନ୍ତକ). ଝରିଆର ପରାଶର ଗୁମ୍ଫା କୃଷ୍ଣ ଦ୍ୱୈପାୟନ ବ୍ୟାସଙ୍କ ଜନ୍ମୋତ୍ସବ ଏବଂ ଜନ୍ମ ଭୂମିର ମୂକସାକ୍ଷୀରୂପେ କାଳର ଗର୍ଭରେ ନିଜର କ୍ଷୀଣ ଅସ୍ତିତ୍ୱ ବଜାୟ ରଖି ଠିଆ ହୋଇଅଛି ।

ପୁରାଣ ବର୍ଣ୍ଣିତ ଗିରିରାଜର କନ୍ୟା ଗିରିମାକୁ ଦାସରଜା ବିବାହ ହୋଇଥିଲେ । ଗିରିରାଜ ନିଜ ର କନ୍ୟା ସହିତ କେତେକ ଦୁଧିଆଳି ଗାଈ ଏବଂ ବାଙ୍କିଆ ପଲଙ୍କ ଦାସରଜାଙ୍କୁ ଉପହାର ପ୍ରଦାନ କରି ବରକନ୍ୟାଙ୍କୁ ବିଦାୟ ଦେଇଥିଲେ । ବ୍ୟାସଧାମ ନିକଟସ୍ଥ ଦାସରଜା ଗଡ଼ର ପଶ୍ଚିମ ଦିଗରୁ ବହି-କୋଇଲି ନଦୀ କୂଳରେ ବାଙ୍କିଆ ଗ୍ରାମ ଅବସ୍ଥିତ । ବୋଧହୁଏ ସେହିକାଳୁଁ ଦାସରଜାଙ୍କ ବିବାହ ସ୍ମାରକୀ ବାଙ୍କିଆ ପଲଙ୍କ ସ୍ମୃତି ସ୍ମରଣ ବାଙ୍କିଆ ଗ୍ରାମ କରି ଆସୁଅଛି । ଯଥା :—

ଦୁଧିଆଳି ଗାଈ ଦେଲ ଗିରିମା ଜନକ ।
ବାଙ୍କିଆ ପଲଙ୍କ ରଜା ଦେଲଟି ଅନେକ ॥

(କୈବର୍ତ୍ତ ପୁରାଣ)

ବାହୁକାଙ୍କୁ ନାଗଗର ଉପରୋକ୍ତ ବେଦବ୍ୟାସ ଧାମ ପ୍ରକୃତିର ଘନ ଜଙ୍ଗଲ ଆବେଷ୍ଟନୀରେ ରହି ମୁନି ଋଷି ଦେବତାମାନଙ୍କର ଗ୍ଚରଣ ଭୂମି ଥିଲା । ପ୍ରକୃତିର ଶାନ୍ତ-ସ୍ନିଗଧ-ମଧୁର ପରିବେଶରେ ବେଦବ୍ୟାସ ଇତା ଦ୍ରୁମରେ ପରିପୂର୍ଣ୍ଣ ହୋଇ ନିଜର ଗୋପନ ସୌନ୍ଦର୍ଯ୍ୟ ଦେବଲୋକଙ୍କୁ ଅର୍ପଣ କରୁଥିଲା । ତାପସ କବି ଭବୁକ ଏହାର ରୂପ ରସ ଭୋଗକରି ସର୍ବଦା ବିଭୁ ପ୍ରୀତିରେ ମଗ୍ନ ଥିଲେ ।

କାଳଚକ୍ରର ଆବର୍ତ୍ତନରେ ଗାଙ୍ଗପୁର ରଜା ସ୍ୱର୍ଗତ ରଘୁନାଥ ଶେଖର ଦେଓ, ନାଗଘ ଜମିଦାର ବାଲିଙ୍କି ସିଂହ ମହାପାତ୍ର ଏବଂ ହରିହର ସିଂହ ମହାପାତ୍ର ତତ୍ତ୍ୱାବଧାନରେ କ୍ରମଶଃ ବେଦବ୍ୟାସର ନଦୀଧାରରେ ପଥର ବନ୍ଧ, ପଥର ଗମ୍ବୁଜ, ପଥର ପାବଛ ଏବଂ ବାଲେଙ୍କିଶ୍ୱର ଶିବାଳୟ ଗଢ଼ାଯାଇ ଦର୍ଶକ-ମାନଙ୍କ ଦୃଷ୍ଟି ଆକର୍ଷଣ କରଗଲା । ଶିବରାତ୍ରୀ ମେଳା ବ୍ୟାସ ଶ୍ରମର ଯଶ ପ୍ରଗ୍ଚରର ସହାୟକ ହେଲା ।

ରଉରକେଲା ଇସ୍ପାତ୍ ଶିଳ୍ପ ସସ୍ଥିତିର ଅଭ୍ୟୁତ୍ଥାନ ପ୍ରାରମ୍ଭରୁ ଇତି ମଧ୍ୟରେ ବଦାନ୍ୟ ଭକ୍ତମାନଙ୍କ ଦ୍ୱାରା ବେଦବ୍ୟାସର ସରସ୍ୱତୀ କୁଣ୍ଡ ମର୍ଦ୍ଧଶାଳା ସଂକୀର୍ତ୍ତନ ମଣ୍ଡପ ନଦୀଧାରର ପଥର ପାବଛ ଛୋଟ ମନ୍ଦିର ଚନ୍ଦ୍ରଶେଖର ସମ୍ମୁଖସ୍ଥ ବେଦୀ ଶିଖରରେ ଯଜ୍ଞକୁଣ୍ଡ ପ୍ରଭୃତିର ନିର୍ମିତ ହୋଇ-ଅଛି । ରଉରକେଲା ପୌର ସମିତି ତରଫରୁ ସ୍ଥାନୀୟ ବିଧାନ ସଭର ସଦସ୍ୟ ଶ୍ରୀ ଦୀଲିପ ରାୟଙ୍କ ତତ୍ତ୍ୱାବଧାନରେ ଶ୍ମଶାନ ଘାଟ ସରସ୍ୱତୀ କୁଣ୍ଡ ଧାରର ରମ୍ୟ ଉଛଳା ସରୋବର ନିର୍ମିତ ହୋଇଅଛି । ବ୍ୟାସାଶ୍ରମସ୍ଥ ଚତୁଃପାର୍ଶ୍ୱର ରାସ୍ତା ଘାଟର ଅନେକ ସଂସ୍କାର କାର୍ଯ୍ୟ ଆଗେଇ ଗ୍ଚଲିଅଛି ।

ରାଜଗାଙ୍ଗପୁର ସିମେଟ କାରଖାନା କର୍ତ୍ତୃପକ୍ଷଙ୍କ ଦ୍ୱାରା ପୂର୍ବଦିଗର ପ୍ରସ୍ତର ପାବଛ ସନ୍ନିକଟ ପ୍ରସ୍ତର ଶଯ୍ୟା ଡ଼ିନାମାଇଟ ଦ୍ୱାରା ଭଙ୍ଗାଯାଇ ସେ ଯାଗାରେ ପଥର ଇଟା ସିମେଣ୍ଟ ଦ୍ୱାରା ନୂତନ ପାବଛ ଶ୍ରେଣୀ ଗୌରଙ୍ଗ ମନ୍ଦିରଠାରୁ ନଦୀ ଶଯ୍ୟା ପର୍ଯ୍ୟନ୍ତ ବିସ୍ତାରିତ କରଯାଇ ଅଛି । ପ୍ରସ୍ତର ଶଯ୍ୟା ଭଙ୍ଗାଯିବାବେଳେ ଆଶ୍ରମ ପାଦଦେଶର ନଦୀକୂଳରେ ଥିବା ପ୍ରାକୃତିକ ପ୍ରସ୍ତର ନିର୍ମିତ ବ୍ୟାସକୁଣ୍ଡ ସ୍ୱରୂପ ପରିବର୍ତ୍ତିତ ହୋଇଅଛି । ଏହି ଗାଥା ତୀର

ବାସିନ୍ଦାଙ୍କଠାରୁ ଶୁଣିବାକୁ ମିଳେ । ଏବେ ପାବଚ୍ଛର ପାଦଦେଶ ଏବଂ ଏହାର ଦକ୍ଷିଣରେ ଥିବା ତିନୋଟି ଅର୍ଜୁନ ବୃକ୍ଷ ସନ୍ନିକଟ ଜଳ ଭଉଁରୀରେ ବ୍ୟାସକୁଣ୍ଡର ମୁଖ୍ୟ ଅଂଶ ବୁଡି ରହିଅଛି । ଉକ୍ତ କୁଣ୍ଡର ଭଗ୍ନାଂଶ ଗତବର୍ଷ ଦେଖିବା ସୁଯୋଗ ଲେଖକ ପାଇଥିଲ ।

ପୂର୍ବରେ ଶଙ୍ଖ-କୋଇଲି-ସରସ୍ୱତୀର ମିଳନରେ ବ୍ରାହ୍ମଣୀ । ବ୍ରାହ୍ମଣୀର ଉତ୍ତରରେ କୋଇଲି କୂଳରେ ଦାସରଜା ଗଡ଼ । ଗଡ଼କୁ ଲଗି ବ୍ରହ୍ମଣୀର ପୂର୍ବରେ ଛେଣ୍ଡ ରଘୁନାଥ ପାଲି ଏବଂ ପାନପୋଷ ଅବସ୍ଥିତ । ଉପତ୍ତି ଜଳର ଦକ୍ଷିଣରେ ପାନପୋଷରୁ ବ୍ରାହ୍ମଣୀ ଉପର ଦେଇ ରେଳ ଓ ମୋଟରର ପୋଲ ବ୍ରାହ୍ମଣୀ ତରଙ୍ଗ ସହିତ ମିତ୍ରତା ସ୍ଥାପନ କରିଅଛି । ପଶ୍ଚିମରେ ବ୍ରାହ୍ମଣୀ ତରଙ୍ଗ ବେଦବ୍ୟାସ ଛକ, ବେଦବ୍ୟାସ ଗୁରୁକୁଳ ବୈଦିକ ଆଶ୍ରମ ଗୋପ ପଲ୍ଲୀକୁ ସ୍ପର୍ଶ କରିଅଛି । ଉତ୍ତରରେ ଗୋପପାଲ୍ଲୀରୁ ନୌପଥରେ କାଠିଟାଙ୍ଗର (ଇନ୍ଦ୍ର ସହସ୍ର ଯୋନୀ ପଥର) ଯମୁନା ଦ୍ୱୀପ କୁଆଁରୀ ଅଞ୍ଚଳ ଦାସରଜା ଗଡ଼ ସହିତ ହାତ ମିଳାଇ ବେଦବ୍ୟାସଙ୍କୁ ପ୍ରଣତି କରୁଛି । ଏହି ଚକ୍ରବ୍ୟୂହରେ ଦେହୁରୀ ପଡ଼ା, ବ୍ରାହ୍ମଣ ପଡ଼ା, ଡ଼ାକବଙ୍ଗଳା ଶ୍ମଶାନ ଘାଟ ବେଦବ୍ୟାସ ପୁଲିସ ଥାନା ବେଦ-ବ୍ୟାସ ଶିବରାତ୍ରୀ ମେଳା ପଡ଼ିଆ ବ୍ୟାସାଶ୍ରମର ଚତୁର୍ଦ୍ଦିଗକୁ ମୁଖରିତ କରୁ ଅଛନ୍ତି ।

ବର, ଅଶ୍ୱତ୍ଥ, ଅର୍ଜୁନ, କୁରୁମ, ଶାଳ, କୁଆଗୁଣ୍ଡୁରୁ (ଗର୍ଧେଇ) କାଠ ଚମ୍ପା, ଭେରୁଆଁ, ଡ଼କା, ଶିମିଳି, ଲିମ୍ବ, ବେଲ, ପଳାସ, ମହୁଲ, ଜାମୁ କେନ୍ଦୁ, ବାହାଡ଼ା, ତେନ୍ତୁଳୀ ତାଳ ଖଜୁରୀ, ବଢ଼ିଆଳ, ଲତା, ଓ ଗୁଳ୍ମାଦି ମେଳରେ ନଦୀ ଗର୍ଭରୁ କ୍ରମାନ୍ୱୟରେ ସଙ୍ଗମ ଜଳସ୍ଥ ପ୍ରସ୍ତର ଭେଡ଼ା, ପାବଚ୍ଛ ଶ୍ରେଣୀ ତଟବନ୍ଧ ଗମ୍ବୁଜ ନିତାଇ ଗୌର ଶ୍ରୀରାମ ଚନ୍ଦ୍ରଶେଖର ଧର୍ମଶାଳା ପ୍ରାଚୀର ମଧ୍ୟରେ ବାଲୁଙ୍କେଶ୍ୱର ପାର୍ବତୀ ବ୍ରାହ୍ମବେଦୀ ଯଜ୍ଞକୁଣ୍ଡ ବେଦବ୍ୟାସ ଗୁମ୍ଫ । ଏହାର ଉପର ଶ୍ରେଣୀରେ ହନୁମାନ ଦ୍ୱିତୀୟ ଶ୍ରୀରାମ ମଙ୍ଗଳା ଏବଂ ସର୍ବୋଚ୍ଚ ଶିଖରରେ ଜଗନ୍ନାଥ ଆଦି ଦେବଦେବୀମାନଙ୍କର ଛୋଟ, ବଡ଼ ମନ୍ଦିରଗୁଡ଼ିକ ଦଣ୍ଡାୟମାନ ହୋଇଅଛି । ଏହାର ପଛରେ ଯଜ୍ଞକୁଣ୍ଡ ଓ ଯଜ୍ଞ ମଣ୍ଡପ ବ୍ୟାସା-ଶ୍ରମକୁ ମଣ୍ଡିତ କରିଅଛି । ସରସ୍ୱତୀ କୁଣ୍ଡର ପବିତ୍ର ସ୍ୱଚ୍ଛ ଜଳ ବ୍ୟାସାଶ୍ରମର ତୃଷାହରଣ କରୁଅଛି ।

ଦିନରେ ଦିବାକର ରାତ୍ରୀରେ ଚନ୍ଦ୍ର, ତାରା ଓ ବିଜୁଳୀ ବତୀ ଆଶ୍ରମର ଉଭୟ ନୈସର୍ଗୀକ କୃତ୍ରିମ ସୌନ୍ଦର୍ଯ୍ୟକୁ ଆଲୋକରେ ଉଦ୍‌ଭାସିତ କରି ଦର୍ଶକକୁ ଚରମ ଆନନ୍ଦ ପରମ ତୃପ୍ତି ପ୍ରଦାନ କରୁଅଛି । ବ୍ୟାସାଶ୍ରମର ମଧୁର ସଙ୍ଗୀତ ଏବେ ବି ବେଦବ୍ୟାସକୁ ମୁଖରିତ କରେ । ଯଥା :—

"ନାନା ଲତା କୁସୁମ ରାଜି ବିରାଜିତଂ ତତ୍
ପାରାଶରସ୍ୟ ମଧୁପାବଳି ଗୁଞ୍ଜରମ୍ୟଂ
ଧାମାବନୀ ରୁହ ସମୁହ ପତତ୍ରୀ ଶିଞ୍ଜଂ
ପ୍ରୀତି ପଦଂ ଭବତି ତତ୍ ସମାଗତାନାଂ" ।୨୭।

ଅର୍ଥାତ୍ ବେଦବ୍ୟାସଙ୍କ ସେହି ଆଶ୍ରମ ପଦ ନାନା ପ୍ରକାର ଲତା ଓ କୁସୁମ ରାଜିରେ ବିରାଜିତ ହୋଇଅଛି । ଭ୍ରମରମାନଙ୍କ ଗୁଣୁଗୁଣୁ ଶବ୍ଦ ଦ୍ୱାରା ରମଣୀୟ ବୃକ୍ଷ ଶ୍ରେଣୀରେ ପକ୍ଷୀମାନେ ଅବ୍ୟକ୍ତ ମଧୁର ଧ୍ୱନି କରୁଅଛନ୍ତି । ସେଠାରେ ଉପାଗତ ବ୍ୟକ୍ତିମାନଙ୍କର ସର୍ବତୋଭାବେ ସେହି ଆଶ୍ରମ ଆନନ୍ଦପ୍ରଦ ହୋଇଅଛି ।

**ବେଦବ୍ୟାସର ସ୍ଥାୟୀ ସେବକ :—**

ଗାଙ୍ଗପୁର ରଜା ଏବଂ ନାଗରା ଜମିଦାରଙ୍କ ନିଯୁକ୍ତି ପାଇ ନିମ୍ନୋକ୍ତ ସେବକ ବଂଶ ବେଦବ୍ୟାସ ଧାମର ସେବା କରି ଆସୁଅଛନ୍ତି ।

**ବେଦବ୍ୟାସ ଗୁମ୍ଫା :—** ପୂର୍ବେ ଏହି ଗୁମ୍ଫା ସତ୍ୟବତୀ ଗୁମ୍ଫା ନାମରେ ପରିଚିତ ଥିଲା । ପରବର୍ତ୍ତୀ ସମୟରୁ ଉକ୍ତ ଗୁମ୍ଫାର ନାମ ବେଦବ୍ୟାସ ଗୁମ୍ଫା ହୋଇଅଛି । ସ୍ୱର୍ଗତ ଜଗନ୍ନାଥ ଦାସ ଜାତିରେ ବୈଷ୍ଣବ ଥିଲେ । ଏହାଙ୍କର ପୂର୍ବପୁରୁଷମାନେ ବେଦବବ୍ୟାସ ଗୁମ୍ଫାରେ ବ୍ୟାସମୁନିଙ୍କୁ ସେବା କରୁଥିଲେ । ଜଗନ୍ନାଥ ଦାସଙ୍କ ଅନ୍ତେ ଏହାଙ୍କର ଏକମାତ୍ର ଝିଅ ଶ୍ରୀମତୀ ବ୍ୟାସଦେବଙ୍କର ପୂଜା କରି ଆସୁଅଛନ୍ତି ।

**ବେଦବ୍ୟାସ ଶିବାଳୟ :—**

ଭୂୟାଁ ବଂଶର ସ୍ୱର୍ଗତ ଗଦାଧର ଦେହୁରୀ ଓ ଦୁର୍ଗାଚରଣ ଦେହୁରୀ ବେଦବ୍ୟାସ ସ୍ଥିତ ଚନ୍ଦ୍ରଶେଖର ଓ ବାଲୁଙ୍କେଶ୍ୱର ଶିବ ବିଗ୍ରହମାନଙ୍କ ସେବା

କରୁଥିଲେ । ଏମାନଙ୍କ ସ୍ୱର୍ଗବାସ ପରଠାରୁ ଏମାନଙ୍କ ବଂଶଜ ଉଭୟ ଶିବଙ୍କର ପୂଜା କରୁଅଛନ୍ତି ।

## ବେଦବ୍ୟାସ ଜଗନ୍ନାଥ ଓ ଶ୍ରୀରାମ ମନ୍ଦିର :—

ସ୍ୱର୍ଗତ ଚିନ୍ତାମଣି ମିଶ୍ର, ସ୍ୱର୍ଗତ କ୍ଷେତ୍ରବାସୀ ମିଶ୍ର ଏବଂ ଶ୍ରୀ ବାମଦେବ ମିଶ୍ର ବେଦବ୍ୟାସ ସ୍ଥିତ ଜଗନ୍ନାଥ ଓ ଶ୍ରୀରାମ ମନ୍ଦିର ଦ୍ୱୟର ବିଗ୍ରହମାନଙ୍କର ସେବା ତିନି ପୁରୁଷ ଧରି କରି ଆସୁଅଛନ୍ତି ।

ଏତଦ୍ ବ୍ୟତୀତ ଅନ୍ୟାନ୍ୟ ଗଢ଼ି ଉଠିଥିବା ଛୋଟ ଛୋଟ ମନ୍ଦିରଗୁଡ଼ିକରେ ଥିବା ଦେବ ଦେବୀମାନେ ବଦାନ୍ୟ ବ୍ୟକ୍ତିମାନଙ୍କର ସ୍ଥାୟୀ ଅସ୍ଥାୟୀ ସେବକ ତଥା ପରିବ୍ରାଜକମାନଙ୍କ ଦ୍ୱାରା ପୂଜିତ ହେଉଅଛନ୍ତି ।

ଅଧୁନା ଓଡ଼ିଶା ସରକାରଙ୍କ ଦେବୋତ୍ତର ବିଭାଗ ଅଧୀନରେ ଗଠିତ ବେଦବ୍ୟାସ ଉନ୍ନୟନ ସେବାକାରୀ ସମିତି ଜରିଆରେ ବ୍ୟାସାଶ୍ରମ ଉପରୋକ୍ତ ସେବକମାନଙ୍କୁ ନେଇ ପରିଚାଳିତ ହେଉଅଛି । ବର୍ଷର ବିଭିନ୍ନ ସମୟରେ ସାମାଜିକ ବିବାହ ବ୍ରତ ଯଜ୍ଞାଦି ଉତ୍ସବଗୁଡ଼ିକ ବେଦବ୍ୟାସରେ ପାଳିତ ହୋଇ ଏହାର ଯଶ ପ୍ରସାରିତ ହେଉଅଛି ।

ଅଧୁନା କଳିର କରାଳ ମାୟାରେ ଆମ୍ଭେମାନେ ଅହମିକାର ଚରମ ସୀମାରେ ଉପନୀତ ହୋଇ ବାହ୍ୟାଡମ୍ବର ପୂର୍ବକ ସ୍ୱାର୍ଥ ସିଦ୍ଧି ନିମିତ୍ତ ଉକ୍ତ ଧାମରେ ନାନାବିଧ ଧର୍ମ କର୍ମ କରିଚାଲିଛୁ । ଫଳରେ ଅତୀତର ସତ୍ୟ-ଶିବ-ସୁନ୍ଦର ସରଳ ଜୀବନର ସଦାଚାର ଚିନ୍ତନ ଆଉ ଅନୁଭୂତ ହେଉନାହିଁ । ନାନାବିଧ ସଂସ୍କାର ଜନିତ ନିର୍ମାଣ କର୍ମ କରିବା ସମୟରେ ଧାର୍ମିକ ଐତିହାସିକ ତଥ୍ୟାବଳୀ ନିହିତ ବସ୍ତୁଗୁଡ଼ିକର ସୁରକ୍ଷା ପ୍ରତି ସୁଦୃଷ୍ଟି ଦିଆଯାଉ ନ ଥିବାରୁ ସେଗୁଡିକ କ୍ରମେ ଭିନ୍ନ ରୂପ ଧାରଣ କରି ସତ୍ୟାନୁସନ୍ଧାନକୁ ବ୍ୟାହତ କରୁଅଛି । ଏଥିପ୍ରତି ସଚେତନ ହୋଇ ବ୍ୟାସଧାମର ପବିତ୍ର ଧୂଳି ଶିରରେ ବହନ କଲେ ; ଏହାର ପବିତ୍ର ସ୍ପର୍ଶ ଆମର ଅହମିକାକୁ ଧ୍ୱଂସ କରି ଆମକୁ ସତ୍ୟ ଶାନ୍ତି ଦୟା କ୍ଷମା ପ୍ରଭୃତି ଦେବଗୁଣର ଭବ ପ୍ରଦାନ କରିବ । ଏଗୁଡ଼ିକ ପାଇ ଜୀବନ ସାର୍ଥକ ହେବ ଅନ୍ୟଥା ଜନ୍ମ ଅକାରଣ ହେବ ।

ପରମାତ୍ମାରୂପୀ ଅଠେଇଶ ବ୍ୟାସଦେବଗଣଙ୍କ ଚରଣପଙ୍କଜରେ ଭକ୍ତିପୂତ ପ୍ରଣତି ଜଣାଇ, ଅଧୁନା ବ୍ରାହ୍ମଣୀ ଉପତ୍ତି କକରେ ଦେଖାଯାଉଥିବା ଯମୁନା ଦ୍ୱୀପର ଜରାଜୀର୍ଣ୍ଣ ପ୍ରସ୍ତର ଶଯ୍ୟାକୁ କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ଜନ୍ମଭୂମି ରୂପେ ଗ୍ରହଣ କରୁଅଛି । ଏଭଳି ମହାନ ସାଧକଙ୍କୁ କୋଳରେ ଜନ୍ମ ଦେଇ ନାଗଗ ଉତ୍କଳ ଭରତ ତଥା ବିଶ୍ୱକୁ ତାର ସନ୍ତାନର ଜ୍ଞାନାଲୋକରେ ଆଲୋକିତ କରି ନିଜେ ଅନ୍ଧକାରରେ ପଡ଼ି ରହି ଆତ୍ମସନ୍ତୋଷ ଲାଭ କରୁଅଛି ।

**ଉତ୍କଳୀୟ କବିମାନଙ୍କ ରଚିତ ବ୍ୟାସଦେବ ଜନ୍ମର ଉଦ୍ଧୃତ କେତେକ ପଦ୍ୟାଂଶ :—**

ଅଠେଇଶତମ ବ୍ୟାସଦେବ କୃଷ୍ଣ ଦ୍ୱୈପାୟନ ବ୍ୟାସ ମୁନିଙ୍କୁ କେନ୍ଦ୍ରକରି ଉତ୍କଳୀୟ ଭଷାରେ ଅନେକ ପ୍ରସିଦ୍ଧ କବିଙ୍କ କବିତା ଦେଖିବାକୁ ମିଳେ । ତନ୍ମଧ୍ୟରୁ ଯେଉଁ କବିମାନଙ୍କର ରଚନା ଲେଖକର ଦୃଷ୍ଟିପଥାରୂଢ଼ ହୋଇଅଛି ସେଗୁଡ଼ିକରୁ ବ୍ୟାସଦେବଙ୍କ ଜନ୍ମ ସମ୍ପର୍କୀୟ ମଧୁର ପଦ୍ୟାବଳୀଗୁଡ଼ିକୁ ନିମ୍ନରେ ଉଲ୍ଲେଖ କରି ପରିଶେଷରେ ନିଜସ୍ୱ ରଚନାର କେତେକ ପଦ ତାଙ୍କର ଶ୍ରୀଚରଣରେ ଅର୍ପଣ କରୁଅଛି ।

ମୁନିଶ୍ରେଷ୍ଠ ବ୍ୟାସଦେବଙ୍କ ସମ୍ପର୍କରେ ଶ୍ରୀମଦ୍ ଭଗବତ ଗୀତା ଗାଏ :—

"ନମୋସ୍ତୁତେ ବ୍ୟାସ ବିଶାଳ ବୁଧେ
ଫୁଲ୍ଲର ବିନ୍ଦାୟ ତପତ୍ର ନେତ୍ର
ଯେନ ତ୍ୱୟା ଭରତ ତୈଳପୂର୍ଣ୍ଣଃ
ପ୍ରଜ୍ୱଳିତୋ ଜ୍ଞାନମୟ ପ୍ରଦୀପ ।"

( ଶ୍ରୀମଦ୍ ଭଗବଦ୍ ଗୀତା ପାଠାରମ୍ଭ )

ବେଦବ୍ୟାସ ଉପରେ ଆଧାରିତ "ବ୍ୟାସାଶ୍ରମ" ନାମକ ସଂସ୍କୃତ ପାଣ୍ଡୁଲିପି ଉତ୍କଳୀୟ ଲିପିରେ ନାଗଗର ପଣ୍ଡିତ ସତ୍ୟାନନ୍ଦ ପଣ୍ଡା ଏବଂ ପଣ୍ଡିତ ନିଶାକର ପଣ୍ଡା ଉଭୟଙ୍କ ମିଳିତ ପ୍ରଚେଷ୍ଟାରେ ଲେଖାଯାଇଥିଲା । ପଣ୍ଡିତ ସତ୍ୟାନନ୍ଦ ପଣ୍ଡାଙ୍କର ଉତ୍ତରାଧିକାରୀ ଶ୍ରୀ ସୋମଶେଖର ପୁରୋହିତ ଉପରୋକ୍ତ ବ୍ୟାସାଶ୍ରମ ପାଣ୍ଡୁଲିପିକୁ ପ୍ରକାଶିତ କରାଇ ବେଦବ୍ୟାସର

ଯଶକୁ ପ୍ରସାରିତ କରିଅଛନ୍ତି । ବ୍ୟାସାଶ୍ରମ ବ୍ୟାସଦେବଙ୍କ ସମ୍ପର୍କରେ ଗାଏ, ଯଥା :—

"ବିଷ୍ଣୁ ସ୍ୱରୂପାୟ ତ୍ରୟୀ ମହାୟ
ନିରସ୍ତ ବ୍ୟାହ୍ୟାନ୍ତର ଶାରବାୟ
ଭୂୟୋ ନମୋ ବ୍ରହ୍ମ ବିଦେ ଶୁଭୟ
ବ୍ୟାସାୟ ତସ୍ମୈ ମୁନି ପୁଙ୍ଗବାୟ । ୨ ।

ଅର୍ଥାତ୍ ବିଷ୍ଣୁରୂପୀ ଋକ ଯଜୁ ସାମ ବେଦ ତ୍ରୟଦର୍ଶୀ ଅଂତର୍ବାହ୍ୟଶତ୍ରୁ ଦମନକାରୀ ବ୍ରହ୍ମଜ୍ଞ ମଙ୍ଗଳମୟ ମୁନିଶ୍ରେଷ୍ଠ ବ୍ୟାସଦେବଙ୍କୁ ରଚୟିତାର ବାରମ୍ବାର ନମସ୍କାର । ୨ ।

ସ୍ୱାୟ ପ୍ରଭବ ବିହିତାତି ତପୋଗରିମ୍ନା
ସାକ୍ଷାତ୍ କୃତାଚ୍ୟୁତ ପଦାବ୍ଜଗ ନିରସ୍ତପାପଃ
ନାଶାତ୍ମନେ ଜଗତି ଯଃ ସ୍ଥିରତାମପାଦି
ଯୋବିଷ୍ଟା ପତ୍ରୟ ମିଦଂ ପରିବିଷ୍ୟଭତି । ୩ ।

ଅର୍ଥାତ୍ ଯେ ଶକ୍ତି ଅନୁରୂପ ଗୁରୁତର ତପସ୍ୟା ହେତୁ ଶ୍ରୀବିଷ୍ଣୁଙ୍କ ପଦକମଳ ସାକ୍ଷାତକାରରେ ସମସ୍ତ ପାପ ନିଚୟ ନିରସ୍ତ କରି କ୍ଷଣଭଙ୍ଗୁର ସଂସାରରେ ଚିରଜୀବି ହୋଇ ରହିଅଛନ୍ତି ଏବଂ ତ୍ରିଭୁବନରେ ମଧ୍ୟ ରହି ଅଛନ୍ତି । ୩ ।"

।। ବ୍ୟାସାଶ୍ରମ ।।
ପଣ୍ଡିତ ସତ୍ୟାନନ୍ଦ ପଣ୍ଡା

ଶୂଦ୍ରମୁନି ସାରଳା ଦାସଙ୍କ ରଚିତ ମହାଭରତ ଆଦ୍ୟପର୍ବ ବ୍ୟାସ ଧୃତରାଷ୍ଟ୍ର ପଣ୍ଡୁ ଓ ବିଦୁର ଜନ୍ମ ଅଧ୍ୟାୟରେ ବ୍ୟାସଦେବଙ୍କ ଜନ୍ମଗାଥା ଦେଖିବାକୁ ମିଳେ । ଯଥା :—

× × ×

ତତକ୍ଷଣେ ମାୟା କଲେ ସେହି ବ୍ରହ୍ମଗ୍ଭରୀ
ବଇଶାଖ ମାସରେ ଯେ ଘୋଟିଲା କୁହୁଡି

"ପରାଶର ବୋଇଲେ ଯେ ନ ଦିଶୁ ବହନ
ଧାତିକାରେ ଅନ୍ତରୀକ୍ଷେ ରହିଲେ ତପନ ॥
× × ×
ଧର୍ମକୁ ଛାଡ଼ିଣ ମୋତେ ଧଇଲେ ମହର୍ଷି
ମୋର ସଙ୍ଗ କୌତୁକରେ ଆଦିରସେ ପଶି ॥
ବିଶେଷ ମହତ୍ମା ରତି ଶାସ୍ତ୍ରେ ସେ ନିର୍ଜିତ
ଅନେକ ରସେ ଶୃଙ୍ଗାର ମୁଖେ ଅକଥିତ ॥
× × ×
ମାହେନ୍ଦ୍ର ଯୋଗେ ଉପତ୍ତି ହୋଇଲ ସେ ବଳା
ଅତ୍ୟନ୍ତ ସୁନ୍ଦର କୃଷ୍ଣପ୍ରାୟେ ବର୍ଣ୍ଣକଳା ॥
ଆଗେ ସଇନ୍ଦୁ ପୁତ୍ରେକ ହେଲ ଉତପତ୍ତି
ଦେଖି ସାନନ୍ଦ ହୋଇଲି ମୁହିଁ ସତ୍ୟବତୀ ॥
ପୁତ୍ରକୁ କୋଳେ ଧଇଲେ ପରାଶର ଋଷି
ମାହେନ୍ଦ୍ର ଯୋଗ ରୋହିଣୀ ଋକ୍ଷ ବୃକ୍ଷରଶି ॥
ପୁତ୍ରକୁ କୋଳେ ଧରିଣ ନିରେଖି ତାପସ
ବିରଳ ରୂପ ଦେଖିଣ ନାମ ଦେଲେ ବ୍ୟାସ ॥ ଇତ୍ୟାଦି

ମହାଭାରତ ଆଦ୍ୟପର୍ବ
ଶୂଦ୍ରମୁନି ଶାରଳା ଦାସ

ଭକ୍ତ କବି ✓ ଜଗନ୍ନାଥ ଦାସଙ୍କ ବିରଚିତ ଗୁପ୍ତ ଭାଗବତ ବା ସ୍ମେଛି
ଚବିଶ ଗାଏ : —

"ମହାନଦୀ ଉତ୍ତର ତଟେ । ପରାଶରଙ୍କ ତପମଠେ ॥
ଦିନେ ସେ ଋଷି କାମ ଘାତେ । ଯୋଜନଗନ୍ଧାର ସହିତେ ॥
ବିଗ୍ରହ କଲେ ମୁନିବର । ପୃଥ୍ୱୀରେ ନାହିଁ ବେଦସାର ॥
× × × ×
ଏ ରୂପେ ଭଳି ତପୀମଣି । କହନ୍ତି ଶୁଣରେ ତରୁଣୀ ॥
ତୋ ଗର୍ଭେ ଦେବା ବ୍ରହ୍ମବୀର୍ଯ୍ୟ । ଉଚ୍ଛୁର ହେଲେ ନୋହେ କାର୍ଯ୍ୟ ॥
ଯୋଜନଗନ୍ଧାକୁ କହିଲେ । ଆମ୍ଭକୁ ରତି ଦିଅ ଭଲେ ॥

ତାଶୁଣି କଇବର୍ତ୍ତ କହି । ତୁମ୍ଭେ ତ ବିଷ୍ଣୁ ଅଂଶା ହୋଇ ॥
ମୋ ଛାରେ ମନ କିପାଁ କରି । ତୁମ୍ଭ ଚରଣେ ମୁଁ କିଙ୍କରୀ ॥
ନ ଶୁଣି ତାହା ତପୀସାଇଁ । ତା ସଙ୍ଗେ ପ୍ରୀତି କଲେ ତହିଁ ॥
ତାହାର ଗର୍ଭରୁ ସମ୍ଭୁତ । ହୋଇଲା ଏକଇ ବାଳୁତ ॥
ନାମ ତା ଦେଲେ ବେଦବ୍ୟାସ । ବେଦ ସେ କରିଲା ପ୍ରକାଶ ” ॥

ଶ୍ରୀମଦ୍ ଭଗବତ; ଚତୁର୍ଥ ସ୍କନ୍ଧ
ନବମ ଅଧ୍ୟାୟ;
॥ ଜଗନ୍ନାଥ ଦାସ ॥

ପୁନଶ୍ଚ :

“କୈବର୍ତ୍ତ ବୃଦ୍ଧକାଳ ହେଲା । ଦୁହିତା ।ବ ଯେ ବାହିଲା ॥
ଶୁଣ ଗଜନ ତୋଷ ଚିତ୍ତେ । ତଦନ୍ତ ହେଲା ଯେଉଁମତେ ॥
ପରଶର ତପସ୍ୟା ଅର୍ଥେ । ପ୍ରବେଶ ପୁଣ୍ୟ ନଦୀ ତଟେ ॥
ଦେଖିଲେ ନଦୀ ଅଛି ପୁରି । ମୁନି ଭାବନା ମନେକରି ॥
ନାବରେ ତକ୍ଷଣେ ଚଢ଼ିଲେ ॥ କୈବର୍ତ୍ତୀ ସଙ୍ଗେ ସଙ୍ଗ ହେଲେ ॥
କୈବର୍ତ୍ତୀ ଗର୍ଭେ ବୀର୍ଯ୍ୟ ଦେଲେ । ବ୍ୟାସ ଯେ ଜନମ ହୋଇଲେ ॥”

ଶ୍ରୀମଦ୍ ଭଗବତ; ଚତୁର୍ଥ ସ୍କନ୍ଧ;
ଦଶମ ଅଧ୍ୟାୟ;
॥ ଜଗନ୍ନାଥ ଦାସ ॥

✓ ଦୀନକୃଷ୍ଣ ଦାସଙ୍କ ରଚିତ ବୃହତ ନାମରତ୍ନ ଗୀତା ଅଷ୍ଟମ ଅଧ୍ୟାୟରେ ବ୍ୟାସ ଦେବଙ୍କ ଜନ୍ମ ଚରିତ ଦେଖିବାକୁ ମିଳେ;—

“ମୁନିବରଙ୍କ ବଚନ ଆନ ନୁହେ ଯେଣୁ
ଘୋଟିଲା କୁହୁଡ଼ି ତାଙ୍କ କଥା ନ ସରୁଣୁଁ ॥
ନଦୀ ବେନି କୂଳେ ଯହୁଁ ନ ଦିଶିଲା ଲୋକ
ଯୋଜନଗନ୍ଧାର ତୁଲେ କଲେ ରତି ସୁଖ ॥
ଗର୍ଭଗତେ ବୀର୍ଯ୍ୟ ଯହୁଁ ହୋଇଲା ପ୍ରବେଶ
ସେହିକ୍ଷଣି ଜନମ ହୋଇଲେ ବେଦବ୍ୟାସ ॥

ଗର୍ଭରୁ ପଡ଼ିଣ ଯେ ହୋଇଲେ ନବଯୁବା
କନ୍ଦର୍ପ ହିଁ ସମନୋହେ କିସ ଲକ୍ଷ୍ୟ ଦେବା ॥
ବେଦ ଆଦି ପୁରାଣ ମୁଖରେ କଲେ ଜାତ
ଦେଖି ପରାଶର ହର୍ଷ ହୋଇଲେ ଉନ୍ନତ ।" ଇତ୍ୟାଦି

ବୃହତ୍ ନାମରତ୍ନ ଗୀତା ଅଷ୍ଟମ ଅଧ୍ୟାୟ
ଦୀନକୃଷ୍ଣ ଦାସ

କୈବର୍ତ୍ତ ପୁରାଣ ରଚୟିତା ଶ୍ରୀ ବୁଦ୍ଧିମନ୍ତ ପ୍ରଧାଣ ବ୍ୟାସଙ୍କ ବର୍ଣ୍ଣନା କରିବାକୁ ଯାଇ ବେଦବ୍ୟାସଙ୍କ ଜନ୍ମ ବିବରଣ ଶ୍ରୀ ଭଗବାନଙ୍କ ମୁଖଶ୍ରୀରେ କୁହାଇ ଲେଖିଅଛନ୍ତି ।

ଶ୍ରୀ ଭଗବାନୁବାଚ

× × ×

"ଆନନ୍ଦ ହୋଇବି ଦେଖି ପୁତ୍ରର ବଦନ
ଆନନ୍ଦତେ ତୁମ୍ଭ ସେବା କରୁ ସେ ନନ୍ଦନ ॥
ଏତେ ବୋଲି ମତ୍ସ୍ୟବତୀ ସନମତ କଲା
ଜଳ ପୁଷ୍ପ ଧରି ସତ୍ୟ କରୁଛି ବୋଇଲା ॥
ମୁନି ବୋଲନ୍ତି ସଖିରେ ଅସ୍ତୁକଲି ମୁହିଁ
ଜନେ ପ୍ରକଟିବ କଥା ଯୁଗ ଯୁଗ ପାଇଁ ॥
ଋଷିବାକ୍ୟେ ନବଯୁବା ହେଲା ମତ୍ସ୍ୟବତୀ
ଦେଖିମନେ ଖୁସି ହେଲେ ପରାଶର ଯତି ॥

+ × +

ନାବ ଅଟକିଲା ଯାଇ ଦ୍ୱିପଦର୍ଣ୍ଣ ଠାରେ
ନାନାରଙ୍ଗେ ରତିକଲେ ଚୈଷଠି ବନ୍ଧରେ ॥
ଉପଲକ ବିଦ୍ରୁମଚକ ଇନ୍ଦ୍ରଣିକ ବନ୍ଧ
ସମ୍ପୁଟକ ପିଡ଼ିତକ ଆଦି କର୍କଟକ ॥
ନାନାବିଧ ରଙ୍ଗେ ସେ ଯେ ରତିକ୍ରୀଡ଼ା କଲେ
ପରମାନନ୍ଦ ସେ ଦୁହେଁ ଅନ୍ତରେ ଲଭିଲେ ॥
ସର୍ବାଙ୍ଗ କମ୍ପାଇ ମହାବୀର୍ଯ୍ୟ ଯେ ପଡ଼ିଲା
ଗାଢ଼େ ଭିଡ଼ି ଧରିଅଛି ଦାସରଜା ବାଳା ॥

ବ୍ରହ୍ମବୀର୍ଯ୍ୟ ଗର୍ଭଗତେ ହୋଇଲ୍ଲ ପତନ
ତତକ୍ଷଣେ ଜାତ ହେଲ ଏକଲ୍ଲ ନନ୍ଦନ ।।
ଜାଜ୍ୱଲ୍ୟମୟ ଜ୍ୟୋତି ତା ଅପୂର୍ବ ଘଟଣ
ଭ୍ରୁଲତା ନିନ୍ଦା କରଇ କାମର କମାଣ ।।
ମହା ହରଷରେ ପୁତ୍ର କୋଳରେ ଧରିଲେ
ବେଦବ୍ୟାସ ବୋଲି କରି ତାଙ୍କ ନାମ ଦେଲେ" ।।

ବେଦବ୍ୟାସ ଜନ୍ମ ବିବରଣ ; କୈବର୍ତ୍ତ ପୁରଣ
।। ରଚୟିତା ଶ୍ରୀ ବୁଦ୍ଧିମନ୍ତ ପୁହାଣ ।।

✓ ସ୍ୱଭବ କବି ଗଙ୍ଗାଧର ମେହେର ତାଙ୍କ ରଚିତ କବିତା କଲ୍ଲୋଳର ବେଦବ୍ୟାସ ଗୀତିରେ ବ୍ୟାସଦେବଙ୍କ ଜନ୍ମ ସମ୍ପର୍କରେ ଉଲ୍ଲେଖ କରିଅଛନ୍ତି :—

"କାହିଁ ଜନ୍ମି ବ୍ୟାସ କେଉଁଠି ବଢ଼ିଲ
କେତେ କେତେ ବେଦ ପୁରାଣ ରଚିଲ ।।
ଜନମ କାସାରେ ପଙ୍କଜ ଯେସନ
ତେଜି କରେ ଦେବ ମସ୍ତକେ ଆସନ ।।
ଏ କ୍ଷୁଦ୍ର ଶଇଳ ଶୃଙ୍ଗେ ହୋଇ ଜାତ
ହିମାଦ୍ରି ମସ୍ତକେ ଶୋଭି ହେଲେ ଖ୍ୟାତ" ।।

୧ମ

ବ୍ରାହ୍ମଣୀ ନଦୀର ଅପ୍ରଶସ୍ତ ଧାର
କୁମାରୀ ନାବିକ କରୁଥିଲ ପାର ।।
ମୁନି ଦାସ ସୁତା ନଉକାରେ ବସି
ମୁଗ୍ଧ ହେଲେ ତାର ରମ୍ୟ ରୂପେ ରସି ।।
ବାଞ୍ଛିଲେ ସଙ୍ଗମ ବିଧାନ ନ ହୁଡ଼ି
ଅନ୍ଧକାର ପାଇଁ ସୃଜିଲେ କୁହୁଡ଼ି ।।
ଅଦ୍ୟାପି ଏଠାରେ ଗାଢ଼ କୁଜଝଟୀକା
ଶୀତ ପ୍ରାତେ ନିତି ରହେ ତ୍ରିଘଟିକା ।।

ଯେ ପୁଣ୍ୟ ଭୂମିରେ ପର୍ବତ ବ୍ରହ୍ମଣୀ
ବ୍ରାହ୍ମଣୀ ହୋଇଛି ପଥର ରମଣୀ ।।
ପବିତ୍ର ସଲିଳା ସରିତ ବ୍ରାହ୍ମଣୀ
ମୁନି ସେ ସ୍ଥଳକୁ ବ୍ରହ୍ମମୟ ମଣି ।।
ଦାସ କନ୍ୟା ବୋଲି ନକରି ବିଚାର
ବ୍ରହ୍ମଜ୍ଞାନେ କଲେ ପୀରତି ସଞ୍ଚାର ।।
ବ୍ରହ୍ମକ୍ଷଣେ କଲେ ବ୍ରହ୍ମରେତ ନ୍ୟାସ
ଜାତ ହେଲେ ତହିଁ ବ୍ରହ୍ମ ବିଦ ବ୍ୟାସ ।।
ଚାହିଁ ନବଜାତ ଶିଶୁ ବ୍ୟାସ ମୁଖ
ଭାରତ ଭାରତୀ ଉପେକ୍ଷିଲା ଦୁଃଖ ।।

× × ×

ଅନ୍ୟ

କିନ୍ତୁ ଯେ ତୁମ୍ଭର ଜନମ ଆଗାର
ନ ପଡ଼ିଲା ତାର ନାମେ ଏକ ଗାର ।।

ସଫଳ କଲ କି ବୋଲେ ଯା ସଂସାର
ପ୍ରଦୀପର ତଳ ଦିଶଇ ଅନ୍ଧାର ।।

କବିତା କଲ୍ଲୋଳ; ବେଦବ୍ୟାସ ଗୀତି
ସ୍ୱଭାବ କବି ଗଙ୍ଗାଧର ମେହେର

ଭୂୟାଁ କବି ଶ୍ରୀ ଅର୍ଜୁନ ଗଜ ତାଙ୍କ "ନାଗର ମାତା ମହାତ୍ମ୍ୟ" ନାମକ ଅପ୍ରକାଶିତ କବିତା ସଂକଳନରେ "ନାଗର ମାତା ମହିମା" ନାମକ ଏକ କବିତା ଏବଂ "ନାବେ ନାବିକର କୀର୍ତ୍ତି ଉଦନ୍ତ" ନାମକ ଏକ ଖଣ୍ଡକାବ୍ୟ ଉଭୟ ରଚନା ଦୃଷ୍ଟି ଗୋଚର ହୁଏ । କବିତାଟିରେ ବେଦବ୍ୟାସର ପ୍ରାଚିନ ଐତିହ୍ୟରେ ବର୍ଣ୍ଣନା ଦେଖିବାକୁ ମିଳେ । କବି ଖଣ୍ଡ କାବ୍ୟଟି କୌଶିକ, ଶ୍ରେଖି, ଦେଶାକ୍ଷ, କଉଶିକ, ବଗଡ଼ି, ରସକୁଲ୍ୟା ଆଷାଢ଼ ଶୁକ୍ଳ, କଳହଂସ କେଦାର ଇତ୍ୟାଦି ରାଗରେ କ୍ରମାନୁଯାୟୀ ଆଠଗୋଟି ଛାନ୍ଦରେ ରଚନା କରିଅଛନ୍ତି । ପରାଶର ଋଷି ଏବଂ ଧୀବର କନ୍ୟା ସତ୍ୟବତୀଙ୍କ କଥୋପକଥନ, ମିଳନ,

ବ୍ୟାସଦେବଙ୍କ ଜନ୍ମ ତାଙ୍କର ସାଧନା ପରିଶେଷରେ ମହାଭାରତ ଗ୍ରନ୍ଥରଚନାର ସୂଚନା ଇତ୍ୟାଦି ବିଷୟଗୁଡ଼ିକୁ ଚମତ୍କାର ଭାବେ ଚିତ୍ରଣ କରି ନାଗର ଲୋକରେ ପ୍ରଚଳିତ ଉତ୍କଳୀୟ ଭାଷା ସଂସ୍କୃତିର ସ୍ୱରୂପକୁ ମୂଲ୍ୟାଙ୍କିତ କରିବାରେ ତାଙ୍କ ଲେଖନୀ ସଫଳ ହୋଇଅଛନ୍ତି ।

ନାବେ ନାବିକର କୀର୍ତ୍ତି ଉଦନ୍ତରେ କବି ଶ୍ରୀ ଅର୍ଜୁନ ରାଜ ସତ୍ୟବତୀଙ୍କୁ ଚାରୋଟି ନାମରେ ଯଥାକ୍ରମେ ମତ୍ସ୍ୟଗନ୍ଧା ସତ୍ୟବତୀ ଭାଗ୍ୟବତୀ ଏବଂ ଯୋଜନଗନ୍ଧା ନାମରେ ପରିଚିତ କରାଇଅଛନ୍ତି । ପ୍ରଥମ ଛାନ୍ଦର ଆଦ୍ୟ ପଦରେ କବି ଗାଇଅଛନ୍ତି:—

ରାଗ—କୌଶିକ

ବେନି କୂଳ ଖାଇ ଯମୁନା ବହଇ ଖେଳାଇ ଲହରୀ ଭଉଁରୀ ।
ତହିଁ ରୂଲେ ତରୀ ଚଳାଏ ଚତୁରୀ ଅଙ୍ଗବାସକୁ ଅଙ୍ଗେ ଘେରି ।
ଚୂର୍ଣ୍ଣ କୁନ୍ତଳ,
ଉଡ଼େ ପବନେ ଫର ଫର,
ନୌଚାଳନା ଶ୍ରମ ଜନିତର ସ୍ୱେଦ ଗଣ୍ଡ ମଣ୍ଡଳେ ଜର ଜର ।୧।

× × ×

ଚତୁର୍ଥ ଛାନ୍ଦରେ ପରାଶର ସତ୍ୟବତୀଙ୍କୁ ସେମାନଙ୍କ ମିଳନର ଭବିତବ୍ୟ ସୂଚନା ଦେଇ ମିଳନ ଚିତ୍ର ଆଙ୍କି ଅଛନ୍ତି ।

ଯଥା :—

ରାଗ—କଉଶିକ

ତପିଙ୍କ ଉଦନ୍ତ ଘେନି ମତ୍ସଗନ୍ଧା ବିସ୍ମୟେ ପରାଶରେ ଚାହିଁ ।
ଅପଲକ ନେତ୍ରେ ଚାହିଁ ରହିଥାନ୍ତି ବଚନ ନ ପାରନ୍ତି କହି ।
ମୁଖେ କେବଳ, ଘୋଷୁଥାନ୍ତି ମହାଭାରତ,
ମହାଭାରତ ମହାଭାରତ କହି ହେଉଥାନ୍ତି ସେ ବିହ୍ୱଳିତ ।୨୦।
ବିହ୍ୱଳିତେ ବାଳୀ ଚାଳି କେଉଁଆଳି ଅପଲକ ନେତ୍ର ପାନ୍ତରେ ।
ସମ୍ମତି ପ୍ରକାଶି ତପିରେ ନିରେଖି ବାହୁଥାଏ ନାବ ସଧିରେ ।
ସମ୍ମତେ ତପି,
ପାଣିରେ ପାଣି ନିବେଶିଲେ,
ହୃଦୟେ ହୃଦୟ ମିଳନ୍ତେ ଗନ୍ଧର୍ବେ ଆକାଶୁଁ ପୁଷ୍ପ ବରଷିଲେ ।୨୧।

ଦେଖନ୍ତି ଗନ୍ଧର୍ବେ ରହି ଅର୍ଦ୍ଧ ସ୍ୱର୍ଗେ ନାବ ଘେନି ଯାନ୍ତେ ଚତୁରୀ ।
ଅପଲକ ନେତ୍ରେ ଗୁହିଁ ରହିଁଥାନ୍ତି ମୁଖେ ଧନ୍ୟ ଧନ୍ୟ ଉଚ୍ଚାରି ।
ଲଗନ୍ତେ ନାବ ;
ଯମୁନା ଦ୍ୱିପ କୂଳେ ଯାଇ ;
ହେଲେ ଅନ୍ତର୍ଦ୍ଧ୍ୟାନ ସର୍ବ ଦେବଗଣ ଏ ଗୀତେ ଦୀନାର୍ଜ୍ଜୁନ କହି । ୨୨ ।

ପଞ୍ଚମ ଛାନ୍ଦରେ ବ୍ୟାସଦେବଙ୍କ ଜନ୍ମ ଚରିତ ବର୍ଣ୍ଣନା କରିବାକୁ ଯାଇ ଲେଖିଅଛନ୍ତି :—

## ରାଗ—ବରାଡ଼ି

ଯୋଗମାୟାଙ୍କ ଶକ୍ତିରେ ଯୋଜନଗନ୍ଧା ସତ୍ୱରେ
ପ୍ରସବିଲେ ନବୀନ କୁମାର
ମୁଖ ଜ୍ଞାନ ପୂର୍ଣ୍ଣ ଜ୍ୟୋତି ରୂପ ଶ୍ୟାମଳ ମୂରତୀ
ଦେଦୀପ୍ୟମାନେ ପୂରେ ଶରୀର ସେ
ଭଗ୍ୟବତୀ
ପୁତ୍ରମୁଖ ନିରେଖୁଣ ଥାନ୍ତି ।
ସଙ୍ଗେ ଜାତ କାୟାହିଁ ବଢ଼ାନ୍ତି ସେ । ୫ ।

× × ×

ବେଦ ସହିତେ ଜନମ ହେତୁ ବ୍ୟାସଦେବ ନାମ
ଦ୍ୱିପେ ଜନ୍ମ ଯେଣୁ ଦ୍ୱୈପାୟନି
ନାମ ବହୁ ଏ ନନ୍ଦନ ଜଗତେ ବୋଲାଇ ଧନ୍ୟ
ଆଧ୍ୟାତ୍ମିକ ଶକ୍ତି ହେଉ ପୂର୍ଣ୍ଣ ଗୋ
ପ୍ରିୟ ସହି
ଜଗତରେ ରହୁ ଗୋ କୀରତି
ଯୁଗେ ଯୁଗେ ଯୁଗ ଥାଉ ଘୋଷି ଗୋ । ୮ ।

ସପ୍ତମ ଛାନ୍ଦର ଶେଷ ପଦରେ କବି ଲେଖିଅଛନ୍ତି :—

ରାଗ - ଆଷାଢ଼ ଶୁକ୍ଳ

ହେବାରୁ ମହାଭାରତ ଉଦୟ ; ଆର୍ଯ୍ୟାବର୍ତ୍ତ ହେଲା ଆଲୋକମୟ ।
ଶ୍ରୁତି ଯୁଗେ ଘେନ ହେ ବିଦ୍ୱଜ୍ଜନ ; କୈବର୍ତ୍ତୀ କୀରତୀ ହେଲା ସମ୍ପୂର୍ଣ୍ଣ ।
ଭଣେ ଦୀନାର୍ଜ୍ଜୁନ
ହୃଦରେ ଧିଆଇ ବିଭୁ ଚରଣ । ୩୮ ।
।। ନାବେ ନାବିକର କୀର୍ତ୍ତି ଉଦନ୍ତ ; କବି ଶ୍ରୀ ଅର୍ଜ୍ଜୁନ ରଜ ।।

କବି ଶ୍ରୀ କବିବର ପରିଡ଼ା "ବେଦବ୍ୟାସ ନାମକ" କବିତା ରଚନା କରିଅଛନ୍ତି । କବିତାଟି ତିନି ଭାଗରେ ବିଭକ୍ତ କରି ପ୍ରଥମରେ ସତ୍ୟବତୀର ପୂର୍ବାଭାଷ, ଦ୍ୱିତୀୟରେ ମିଳନ ଏବଂ ତୃତୀୟରେ ବ୍ୟାସଦେବଙ୍କ ଜନ୍ମ ସହିତ ଶଙ୍ଖ କୋଇଲି ବ୍ରାହ୍ମଣୀର ସ୍ମୃତି ସ୍ମରଣ କରିଅଛନ୍ତି । ନିମ୍ନରେ ଦୁଇ ଓ ତିନିର କେତେକ ପଙ୍‌କ୍ତିରୁ କବିଙ୍କ ଭାବ ଆହରଣ କରାଯାଇପାରେ ।

ଦୁଇ

—ପରାଶର ତହୁଁ ନିମିଷକେ ସ୍ମରୁଁ
ସୃଜିଲେ କୁହେଳି ଘନ ।
ମନ୍ତ୍ର ବଳରେ ଦିଗ ଭାଗ ହେଲା
ନିବିଡ଼ ତମସାଛନ୍ନ ।
ସତ୍ୟବତୀର ପୁଲକିତ ତନୁ
ମିଶିଗଲା ମୁନି ଅଂଗେ ।
ପ୍ରୀତି ବିହ୍ୱଳା ଅର୍ପିଲା ମନ
ପ୍ରଣୟ ମଦୀର ରଂଗେ ।

ତିନି

କାଳ-ବିତିଗଲା ସତ୍ୟବତୀର
ଉଦରୁ ଜନମି ବ୍ୟାସ ।
ଶାସ୍ତ୍ର ଅବଧି ମନ୍ଥନ କରି
ରଖିଲେ ଅପାର ଯଶ ।

ଲେଖିଲେ ଅନେକ ଶାସ୍ତ୍ର ପୁରାଣ
କାଳ କୋଳେ ମହାୟାନ ।
ଶଂଖ କୋଇଲି ଗାଏ ସେହି ଗାଥା
ବ୍ରାହ୍ମଣୀ ତୋଟ୍ଳେ ତାନ ।
ଅତୀତ ସ୍ମୃତି ଉଠେ ସିନା ମାତି
ବ୍ରାହ୍ମଣୀ ଦେଖେ ଗ୍ରହି ।
କୁହେଳିକା ଛାଏ ଏବେ ବି' ତାଟେ
ପରାଶର କୁଡି ନେଇ ।
ତୀର ଦେଶେ ଉଭ ଶଇଳ କହଇ
ବେଦବ୍ୟାସ ନାମ ସୁଖେ ।
ବ୍ୟାସ ଗୀତି ଯହିଁ ଚର୍ଚ୍ଚିତ ହୁଏ
ଅସୀମ ଜନତା ମୁଖେ
କାଳ ନଈ ଯାଏ ବହି
କୀର୍ତ୍ତି ଅଲିଭ ଜାତିର ଜୀବନେ
ଯୁଗ ଯୁଗ ଅଛି ରହି ।
ରଚନା କାଳ ୧୯୬୮ ମସିହା
(କବି ଶ୍ରୀ କବିବର ପରିଡ଼ା)

ନାରାୟଣ ସ୍ୱରୂପ ମୁନି ଶ୍ରେଷ୍ଠ କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ପାଦ ପଦ୍ମରେ ଲେଖକ ସଭକ୍ତିକ ପ୍ରଣତି ଜଣାଇ ନିଜସ୍ୱ-ରଚିତ ବ୍ୟାସଦେବ ଜନ୍ମ କବିତାର କେତେକ ପଙ୍କ୍ତି ନିମ୍ନରେ ଉଦ୍ଧାର କରିଅଛି ।

## ବ୍ୟାସଦେବ ଜନ୍ମ

ଏକଦା ପରାଶର ଋଷି । ବ୍ରାହ୍ମଣୀ ତୀରରେ ପ୍ରବେଶି ॥
ପାରି ହେବାକୁ ଚିନ୍ତା କଲେ । ନାବରେ କନ୍ୟାଏ ଦେଖିଲେ ॥
ନାମ ତାହାର ମତ୍ସ୍ୟବତୀ । ଘାଟେ ନଉକା ଓ୍ୱଳେ ନିତି ॥
ଡାକି କହିଲେ ପରାଶର । ଆମ୍ଭକୁ ନଦୀ ପାରିକର ॥

ହରଷେ ନମି ମୁନି ପଦେ । କହଇ ବସ ନିଘପଦେ ॥
ନାବରେ ଋଷିଙ୍କୁ ବସାଇ । ମଝିର ଗତିରେ ବାହଇ ॥

× × ×

ସଂସାରୀ ବ୍ରତ ଇଛାକଲେ । ମଉନେ ଗୈଁଦିରେ ଗୁହିଲେ ॥
ସ୍ୱଭବେ ଅଳପ ବୟସ । ଅଙ୍ଗ ସୌନ୍ଦର୍ଯ୍ୟ ପରକାଶ ॥

× × ×

କୁହୁଡ଼ି ନାମ ଦେଇ ତାର । କହିଲେ ଯଶସ୍ୱୀ ଧୀବର ॥
ରମିବା ଅର୍ଥେ ଦଶଦିଗ । ଆଛାଦି ରଖ ମହାଭଗ ॥

× × ×

ବ୍ରାହ୍ମଣୀ ନାବ ଶଯ୍ୟାପରେ । ଶୃଙ୍ଗାରେ ମଜ୍ଜି ହରଷରେ ॥
ବ୍ରହ୍ମ ଶକତି ଦାନ କଲେ । ସମ୍ଭୋଗ ପ୍ରୀତି ବଢ଼ାଇଲେ ॥

× × ×

ଋଷିଙ୍କ ଔରଷୁ ସମ୍ଭୂତ । ସତ୍ୟବତୀର ନିଜ ସୁତ ॥
ବାଳ ଆଦିତ୍ୟ କୃଷ୍ଣ ବର୍ଣ୍ଣ । ଦ୍ୱୀପରେ ଲଭିଲେ ଜନମ ॥
ଜନମି ବେଦ ଉଚ୍ଚାରିଲେ । ବ୍ୟାସ ପଦବୀ ଲଭକଲେ ॥
ପୁତ୍ରକୁ କୃଷ୍ଣ ଦ୍ୱୈପାୟନେ । ବ୍ୟାସଦେବ ନାମ ଦେଇଣ ॥
ଯୋଗମାୟାଙ୍କ କୃପାଫଳେ । ଜାତ ସଂସ୍କାର କର୍ମ କଲେ ॥
ପୁତ୍ରକୁ ଧରି ପରାଶର । କୁହୁଡ଼ି କରଇଲେ ଦୂର ॥
ଯଉବନୀକୁ କୁମାରୀତ୍ୱ । ପ୍ରଦାନ କଲେ ତପୋବନ୍ତ ॥
ବିଦାୟ ମାଗି ସତ୍ୟବତୀ । ଗଲେ ସେ ଧୀବରର ପୁତ୍ରୀ ॥
ସେଦିନୁ ପ୍ରତ୍ୟହ ସେଠାରେ । ଶିଶିର ଲୀଳା ଖେଳାକରେ ॥
ବେଦକୁ ବିଭଜନ କରି । ବ୍ୟାସଦେବ ପଦବୀ ଧରି ॥
ଜଗତେ ହୋଇଣ ଅମର । ବେଦକୁ କରନ୍ତି ପ୍ରଚାର ॥
ଦେଖାଇ ମୁକ୍ତି ପଥ ଦ୍ୱାର । ପାପୀଙ୍କୁ କରନ୍ତି ଉଦ୍ଧାର ॥
ଭକତି ଭବ ଦାନ କରି । ଭକ୍ତଙ୍କୁ ସଙ୍ଗତରେ ଧରି ॥
ଅଦୃଶ୍ୟେ ବେଦବ୍ୟାସେ ରହି । ଧର୍ମ ପାଳନ୍ତି ବିଷ୍ଣୁ ଧ୍ୟାୟୀ ॥
ଚରଣେ ଶରଣ ତାଙ୍କର । ପାପ ହରନ୍ତୁ ସଂସାରର ॥

ଏତିକି ଭିକ୍ଷା ଘେନାକର । ଆନନ୍ଦ ମୟ ମୁନିବର ।।
ଗୋକୁଳ ଇଚ୍ଛା ପୂର୍ଣ୍ଣ ହେଉ । ବେଦବ୍ୟାସର କୀର୍ତ୍ତି ରହୁ ।।

—୦—

## ପଞ୍ଚମ ପରିଚ୍ଛେଦ

ନାଗଗର ଐତିହ୍ୟ ସମ୍ପର୍କୀୟ ପରିଚ୍ଛେଦ ସଂଖ୍ୟା ପୁସ୍ତକର କଳେବର ବୃଦ୍ଧି ଦୃଷ୍ଟିରୁ ଏତିକିରେ ସୀମିତ କରି ଆଲୋଚ୍ୟ ପୁସ୍ତକର ଉପସଂହାରରେ ଉପନୀତ ହେବାପାଇଁ ଏହାର ବର୍ତ୍ତମାନ ଭବିଷ୍ୟତ ଉପରେ ସାମାନ୍ୟ ଆଲୋକ-ପାତ କରିବା ଅସଙ୍ଗତ ହେବନାହିଁ ।

ବିଂଶ ଶତାବ୍ଦୀର ଶେଷ ପାଦରେ ଅତ୍ୟାଧୁନିକ ବିଜ୍ଞାନର ଅଭିନବ ଅଭ୍ୟୁତ୍ଥାନ ହୋଇ ଚାଲିଅଛି । ଉକ୍ତ ଅଭ୍ୟୁତ୍ଥାନରେ ଆଧ୍ୟାତ୍ମିକ ଶକ୍ତିର ବିକାଶକୁ ବିଶେଷ ପ୍ରାଧାନ୍ୟ ଦିଆନଯିବାରୁ; ହେତୁବାଦ; ଜଡ଼ବାଦ ମାନବ ସମାଜକୁ ଗ୍ରାସ କରି ବ୍ୟକ୍ତି ସ୍ୱାର୍ଥବାଦକୁ ଚରମ ସୀମାରେ ଆସୀନ କରାଉଛି । ଫଳରେ ହିଂସା ଦ୍ୱେଷ ରକ୍ତ ପାତରେ ସମଗ୍ର ମାନବ ସମାଜ ହନ୍ତସନ୍ତ ହେଉଅଛି ।

ବିଶ୍ୱରେ ଶାନ୍ତି ସ୍ଥାପନ କରିବା ପାଇଁ ଜାତିସଙ୍ଘର ଭୂମିକାକୁ ମାନବ-ବାଦୀ ଚିନ୍ତା ଚେତନା ଦ୍ୱାରା ଉଦ୍‌ବୁଧ କରାଇବା ପ୍ରତ୍ୟେକ ଧର୍ମର ପରମ କର୍ତ୍ତବ୍ୟ । ହିନ୍ଦୁଧର୍ମର ସନାତନ ସଂସ୍କୃତି ଏହି ଦିଗରେ ଯୁଗେ ଯୁଗେ ମାନବ ସମାଜରେ ମୁଖ୍ୟ ନେତୃତ୍ୱ ବହନକରି ଆସିଅଛି ଏବେ ମଧ୍ୟ ବହନ କରିଅଛି । କାରଣ ହିନ୍ଦୁ ହେଉଛି ମାନବବାଦର ସୁଯୋଗ୍ୟ ଉପାସକ । ମହାପୁରୁଷ ଋଷିପ୍ରାଣ ପୁଣ୍ୟାତ୍ମା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶଙ୍କ ଉକ୍ତିରୁ ଏହାର ସତ୍ୟତା ଅନୁମେୟ କରାଯାଇ ପାରେ । ଯଥା :—

"ନିଜ ସ୍ୱାର୍ଥପାଇଁ ଜାତ ନୁହେଁ ହିନ୍ଦୁ ।
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ ।।"

(ଉତ୍କଳମଣି ଗୋପବନ୍ଧୁ ଦାଶ)

ପ୍ରତ୍ୟେକ ମନୁଷ୍ୟ ମାନବ ବାଦ ସମ୍ପର୍କୀୟ ଜ୍ଞାନ ଆହରଣ କରିବା ପାଇଁ ପ୍ରାଥମିକ ଶିକ୍ଷା ନିଜର ମାତୃଭାଷା ଏବଂ ଧର୍ମରୁ ଅର୍ଥାତ୍ ସଂସ୍କୃତିରୁ ଶିକ୍ଷା କରିଥାଏ । ଏହି ବିଧାନକୁ ଛାଡ଼ି ବିଶ୍ୱକଲ୍ୟାଣ ଚିନ୍ତାମନରେ ଜାଗ୍ରତ ହେବା କଷ୍ଟକର । ସନାତନ ସଂସ୍କୃତିର ମୂଳାଧାର ପିତା ମାତାଙ୍କ ସେବାରେ ନିହିତଥିବା ବିଷୟ ମହର୍ଷିମାନଙ୍କ ଦ୍ୱାରା ଘୋଷିତ ହୋଇଆସିଅଛି । ଯଥା :—

"ପିତା ସ୍ୱର୍ଗ ପିତା ଧର୍ମ ପିତାହି ପରମଂ ତପଃ
ପିତରି ପ୍ରୀତିମାପନ୍ନେ ପ୍ରୀୟନ୍ତେ ସର୍ବ ଦେବତାଃ ।"

ଅପର ଶ୍ଳୋକ

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।"

ଅତୀତର ନାଗର ଗାଙ୍ଗପୁର ବର୍ତ୍ତେଇ ଆଜିର ସୁନ୍ଦରଗଡ଼ ଜିଲ୍ଲା ନାମ ବହନ କରି ଉତ୍କଳ ଜନନୀ ଭାରତ ଜନନୀ ସହିତ ବିଶ୍ୱ ଜନନୀର ସେବା କରି ଆସୁଅଛି । ଏହାର ମୁଖ୍ୟପୀଠ ରାଉରକେଲା ଶିଳ୍ପନଗରୀ ବିଶ୍ୱ ସଂସ୍କୃତିକୁ କୋଳରେ ଧରି ଧନ୍ୟ ହୋଇଅଛି । ଏହାର ସରଳତା ଅଜ୍ଞତା ଏବଂ ସହିଷ୍ଣୁତାର ସୁଯୋଗ ନେଇ କେତେକ ଅଣଓଡ଼ିଆ ସଂସ୍କୃତି ସୁନ୍ଦରଗଡ଼ ଜିଲ୍ଲାର ପ୍ରାଚୀନ ଐତିହ୍ୟକୁ ପ୍ରତାରିତ କରି ନିଜର ପ୍ରାଧାନ୍ୟ ବିସ୍ତାର କରିବାରେ ଯେଉଁ ଅହରହ ସଂଗ୍ରାମ କରି ଆସୁଅଛନ୍ତି; ଏଥିରୁ ସେମାନେ କ୍ଷାନ୍ତ ହେବା ଉଚିତ ।

ଲେଖକ ପ୍ରଥମେ ଉତ୍କଳୀୟ ତାପରେ ଭାରତୀୟ ଶେଷରେ ମାନବ-ବାଦର ଜଣେ ମାନବ । ଉତ୍କଳମାତାର ପଦସେବା ତାର ପ୍ରଥମ କର୍ତ୍ତବ୍ୟ । ସେ ଉତ୍କଳର ଜନନୀର ସୁଖ ଦୁଃଖରେ ଭାଗୀଦାର ହୋଇ ଭାରତ ତଥା ବିଶ୍ୱଜନନୀର ସେବାରେ ନିଜକୁ ନିୟୋଜିତ କରି ଚାଲିଅଛି ।

ବ୍ୟକ୍ତି ସ୍ୱାର୍ଥବାଦୀ ମଦିରାପାନରେ ଉନ୍ମତ୍ତ ହୋଇଥିବା ସନ୍ତାନମାନଙ୍କ ନିର୍ଯ୍ୟାତନାରେ ଉତ୍କଳ ଜନନୀର ଦୁଃଖ ମାତ୍ରାଧିକ ବଢ଼ି ଚାଲିଅଛି । ବିଗତ କେତେବର୍ଷର କୁଶାସନରେ ମାତାର ଶୋକାତୁର ମଳିନ ମୁଖରେ ଦୁଃଖାଶ୍ରୁ ଅବିରମ ଗତିରେ ଗଡ଼ି ଚାଲିଛି । ପରିସ୍ଥିତିର ସୁଯୋଗ ନେଇ କେତେକ ଓଡ଼ିଆ ବିଧ୍ୱଂସୀ ଚକ୍ରାନ୍ତକାରୀ ଗୋଷ୍ଠୀ ଓଡ଼ିଶାର ଉପାନ୍ତ ଅଞ୍ଚଳଗୁଡ଼ିକରେ ଯେଉଁ ଓଡ଼ିଆ ମାରେଣୀ ଚକ୍ରାନ୍ତ ଚଳାଇ ଆସୁଅଛନ୍ତି ତାହା ଆମେ ଅଳ୍ପ ବହୁତ ଅନୁଭବ କରୁଅଛୁଁ । ସମୟକ୍ରମେ ଆଜି ଜନମତରେ ଯେଉଁ ପରିବର୍ତ୍ତନ ଆସିଅଛି

ଏହି ପରିବର୍ତ୍ତନକୁ ସଠିକ ଦିଗରେ ପରିଚାଳିତ କରି ଶାସକ ଜନନୀର ଦୁଃଖ ମୋଚନ କରନ୍ତୁ । ଏହାହିଁ ଶାସକ ନିକଟରେ ଅର୍ଜି ।

ଉପାନ୍ତ ଅଞ୍ଚଳର ଯେଉଁ ଭାଇମାନେ ଅଜ୍ଞାନ ବଶତଃ ଚକ୍ରାନ୍ତକାରୀ ଓଡ଼ିଆ ବିଧ୍ୱଂସୀ ଗୋଷ୍ଠୀଙ୍କ ଚକ୍ରାନ୍ତର ଶିକାର ହୋଇ ନିଜ ଗୌରବମୟ ଐତିହ୍ୟକୁ ଭୁଲିଯାଉଅଛନ୍ତି ସେମାନଙ୍କୁ ଉକ୍ତ ଦାସତ୍ୱକାରୀ ଚକ୍ରାନ୍ତରୁ ଉଦ୍ଧାର କରି ମାତୃସେବାରେ ବିମଳ ଆନନ୍ଦ ଦେବା ନିମିତ୍ତ ଲେଖକର 'ନାଗରଗାଙ୍ଗପୁର ଉପରେ ଆଧାରିତ ତିନୋଟି କବିତା ନିମ୍ନରେ ଅବତାରଣା କରଯାଇପାରେ ।

## ମହାବୀରର ସ୍ମୃତି ସ୍ମରଣ

(ରାଗ–ଶ୍ରେଣି)

ତ୍ରେତୟାର ମହାବୀର ନାମ ବହିଛ ଭୂଧର
ସୁବିସ୍ତୃତ କାୟା ତୋର ଚିର-ସୁନ୍ଦର ।
ନଦୀ ନିର୍ଝରିଣୀ ଧାର ତୋ କୋଳୁଁ ହୋଇବାହାର
ନାନାଛନ୍ଦେ ବହିନୀର ଛୁଁଏ ସାଗର ।
ଭୂଚର ଖେଚର ସକଳ;
ବନ କନ୍ଦରେ ବିହରୀ ରଚନ୍ତି ଖେଳ ।୧।
ପରାଶର ସତ୍ୟବତୀ ବ୍ୟାସ ଗଉତମ ଯତୀ
ତପ ପ୍ରଭବ ବିଭୂତି କରି ଧାରଣ ।
ବହୁ ଦେବଦେବୀ ମେଳ ବେଦବ୍ୟାସ ପୀଠସ୍ଥଳ
ତୋ ବକ୍ଷେ ରାଜି ମଞ୍ଜୁଳ ହରେ ନୟନ ।
ଭକତର ଭବକୁ ଘେନି;
ଅଭୟ ପ୍ରଦାନ କରି ହୋଇଛ ମୌନୀ ।୨।
ଦାସ, ଚେଦି, ନାଗ ନୃପ କେଶରୀ ଗାର୍ଗବ ଭୂପ
ଶେଖର ଦେଓ ବଂଶଜ ରଜା ହୋଇଣ ।
ନାଗର ଗାଙ୍ଗପୁରରେ ଯେ କୀର୍ତ୍ତି ରଚି ମଞ୍ଚରେ
ଯାଇଛନ୍ତି ଦେଖିଥିବ ତବ ନୟନ ।

ଏବେ ଗଣତନ୍ତ୍ର ଶାସନ;
ଦେଖି ନିଜ ଭବ କହି ତୋଷ ପରଣ ।୩।
ତୋ ବକ୍ଷ ଆଦ୍ୟ ଚୁଲରେ   ଦେବୀଙ୍କୁ ତୋଷି ଭକ୍ତିରେ
ମାଦ୍ରିକାଲେ ଦେବୀବରେ ହୋଇଲେ ବୀର ।
ଉଭୟ ରଜା ଇଂରେଜ   ଦେଖାଇ ନିଜର ତେଜ
ହରଇ ନିଜର ଓଜଃ ମାଦ୍ରିବଚନେ ।
ଶାନ୍ତି ଚୁକ୍ତି କରି ପାଳନ;
ସୀମା ନ ଲଙ୍ଘି ମାଦ୍ରିର ତୋଷିଲେ ମନ ।୪।
ଗାଙ୍ଗପୁର ନାଗରର   ମହାନ ସ୍ୱାଧୀନ ବୀର
ତବ ପ୍ରିୟ ବନଦେଶ ତା ଗାଥା ଗାଏ ।
ମାଦ୍ରିକାଲେ ଜମପଦେ   ବଞ୍ଚିଛି ଦେଖେ ବିଷାଦେ
ବିର୍ସା କିପରି ତୋ ପଦେ ସମ୍ମାନ ପାଏ ।
ବେନି ବୀର ଗୁଢ଼ ରହସ୍ୟ
ପ୍ରଶ୍ୱରୀ ସନ୍ତାନ ଯଶେ ଜନନୀ ତୋଷ ।୦।
ପଲ୍ଲୀ ସରଳ ଜୀବନ   ଗୋ-ସମ୍ପଦ ଶସ୍ୟେ ପୂର୍ଣ୍ଣ
ହୋଇ ସତ୍ୟକୁ ଧାରଣ କରି ତୋ କୋଳେ ।
ଥିଲା ଯେଉଁ ବଣଦେଶ   ତୋ ଝରିଆ ବେନି ଅଂଶ
ଆଜି ନାହିଁ ସେଇ ବେଶ କାଳ କବଳେ ।
ବିବିଧ ସୌଧରେ ସୁବେଶ;
ହୋଇ ବିଂଶ ଶତାବ୍ଦୀର ଘୋଷୁଛି ଯଶ ।୬।
ଆତ୍ମଗର୍ବେ ମତ୍ତ ହୋଇ   ତୋର ଯଶ ନ-କଳଇ
ସୁନେଲୀ ସ୍ୱପ୍ନ ଆଙ୍କଇ ତାମସେ ବୁଡ଼ି ।
କଳାଧନ କାରବାର   ନାନାବିଧ ବ୍ୟଭିଚାର
ଚଳାଇ ସତ୍ୟ ଧର୍ମର ପଥିକୁ ଛୁଡ଼ି ।
ସତ୍ୟ ପରେ ଯାତନା ଦେଇ;
ଗଣତନ୍ତ୍ର ଶାସକର ଛତ୍ରେ ରହଇ ।୭।
ରାଉରକେଲା ନଗରୀ   ଶିଳ୍ପ ସଂସ୍କୃତି ପ୍ରସାରି
ବିଜ୍ଞାନୀମାନଙ୍କୁ ଧରି କୋଳ ମଣ୍ଡଇ ।

ସର୍ବ ଧର୍ମ ଦେବ ଦେବୀ ତାର-ତାରିଣୀଙ୍କୁ ସେବି
ବିଭିନ୍ନ ଉତ୍ସବେ କବି-କୁଳ ଡ଼କାଇ ।
କବିତା ଝଙ୍କାର ଉଠାଇ;
ସମାଜର ଭଲ ମନ୍ଦ ଚିତ୍ର ଆଙ୍କଇ ।୮।
ଜୟ ମା ଝଗଡ଼େଶ୍ୱରୀ ଦକ୍ଷିଣ-କାଳୀଙ୍କୁ ଧରି
ଗାୟତ୍ରୀ ବରଣ କରି ଅଜ୍ଞାନ ହର ।
ଉତ୍କଳୀୟ ଭବ ଦେଇ ମାନବ ସେବା ଶିଖାଇ
ବ୍ରହ୍ମ ଦର୍ଶନ କରଇ ସତ୍ୟ ବିଗ୍ରହ ।
ଦିଆଇ ମହାବୀର ପଦ;
ବନ୍ଦନା କରଇ ମାତଃ ହର ବିଷାଦ ।୯।

ଲେଖକ—ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର

---

## ଜନନୀର ପଦସେବା (ରାଗ-ଶଙ୍କର ଭରଣ)

ବିଶ୍ୱ ବନ୍ଦନୀୟ ମାଗୋ ଉତ୍କଳ ଜନନୀ
ସତ୍ୟ ଶାନ୍ତି ଦୟା କ୍ଷମା ଗୁଣରେ ଅଗ୍ରଣୀ
ହୋଇ ମାନବ କଲ୍ୟାଣ;
ନୀରବେ କରୁଛ ମାଗୋ ଦେଖଇ ନୟନ ।୧।
ଗିରି ଦରି ନିର୍ଝରିଣୀ ସୁରମ୍ୟ କାନନ
ସରିତ ହ୍ରଦ ସରସୀ କୂପ ଜଳମାନ
ଝରି ତୋ କୋଳୁଁ ଜନନୀ;
ସକଳ ଜୀବନ ରଖେ ତୋର ଭବ ଘେନି ।୨।
ବ୍ରହ୍ମମୟ ଦାରୁବ୍ରହ୍ମ ତୋ କୋଳେ ରହିଣ
ମହୋଦଧି ଶଙ୍ଖ କ୍ଷେତ୍ର କରିଛନ୍ତି ଧନ୍ୟ
ବିଶ୍ୱେ ସରଜି ପାଳଇ;
ତୋର ପୁଣ୍ୟ ଯଶ ମାଗେ ବିଶ୍ୱେ ବିକଶାଇ ।୩।

ଦ୍ୱାପରେ ବନ ଦେବତା ଗିରି ଗୋବର୍ଦ୍ଧନ
କୀର୍ତ୍ତି ସୁନ୍ଦରରେ ବିଜେ ହୋଇ ନାରାୟଣ
ରହି ଅଗୁରୁ ବୃକ୍ଷରେ;
ଅଜପତି ଇଷ୍ଟଦେବ ହେଲେ ହରଷରେ ।୪।
କ୍ରମେ ବୃକ୍ଷରୁ ଶିଳାରେ ହୋଇ ପରିଣତ
ଶବରୀ ନାରାୟଣର ନାମରେ ବିଖ୍ୟାତ
ପୁଣି ସେ ନୀଳମାଧବ
ବିଶ୍ୱା ବସୁ ଶବରର ଘେନିଛନ୍ତି ଭବ ।୫।
ଶବର ଅନ୍ନ ବ୍ୟଞ୍ଜନେ ହୁଅନ୍ତି ତୃପତ
ନିଜ ଇଚ୍ଛାରେ ସ୍ୱରୂପ କରଇ ଗୁପତ
ଦାରୁବ୍ରହ୍ମ ରୂପ ଧରି
ଜଗନ୍ନାଥ ନାମ ବହିଛନ୍ତି ଚକ୍ରଧାରୀ ।୬।
କନ୍ଧ ଭତର ଶବର କିସାନ ଖରିଆ
କୋନ୍ଧା ଗାଦବା ପରଜା ବଣ୍ଡା ମୁଣ୍ଡା କୋୟା
ଗଣ୍ଡ ଭୂୟାଁ ସାନ୍ତାଳ;
ଜୁଆଙ୍ଗ ବାଥୁଡ଼ି ଶୁଣ ମୋ ଅଳି ସକଳ ।୭।
ଅଗୁରୁ ଶାଳ ମହୁଲ ଜନଙ୍ଗମ ଦେବ ।
ବୁଢ଼ା ଦେଓ ବୁଢ଼ାବାରେଁ ପେନୁ ଧର୍ମ ଦେବ ।
ଭୂମ ଦନ୍ତେଶ୍ୱରୀ ଦେବୀ;
ଥାନପତି ସିନବୋଙ୍ଗା ଓରକ୍‌ବୋଙ୍ଗା ଆଦି ।୮।
ବରୁଣେଇ ଲକ୍ଷ୍ମେଶ୍ୱରୀ ବାଉତି କନ୍ଧୁଣୀ
ଦ୍ୱାରସେହୀ ବିନିକେଇ ନାକିଟି ନିଶାଣୀ
ପୋଲକାଶୁଣୀ ପ୍ରବଳା;
ଧର୍ମ ଶୁଣୀ ଝାଡ଼େଶ୍ୱରୀ ଢ଼ାଳଖାଇ ଲୀଳା ।୯।
ଶବରୀ ନାରାୟଣୀର ବହିଣ ବିଭୂତି ।
ବଣ କନ୍ଦରେ ଖେଳନ୍ତି ଯୁଗଧାରୀ ମୂର୍ତ୍ତି ।
ବନ ଜ୍ୟୋତିକୁ ବିସ୍ତାରି;
ମାତା କୋଳେ ଖେଳୁଛନ୍ତି ଗୋଲକ ବିହାରୀ ।୧୦।

ବନଦେବୀ ମେଳେ ବଣ କନ୍ଦରେ ରହିଛ
ବନ ଫଳ ମୂଳ ମାଂସ ଦେବତା ସେବୁଛ
କୃଷି ଗୋ-ରକ୍ଷଣ ପାଇଁ;
ନାନା ପର୍ବ ପାଳୁଅଛ ପରମ୍ପରା ବହି ।୧୧।

ଆଦିକାଳୁଁ ଆଜିଯାଏଁ ଉତ୍କଳ ଜନନୀ
ଚରଣ ସେବାରେ ସର୍ବେ ହୋଇଛ ଅଗ୍ରଣୀ
ମାତା ସୁଖ ଦୁଃଖ ବେନି
ଭବକୁ ଆଦରି ଭଲ ତୋଷୁଛ ଜନନୀ ।୧୨।

ଜନନୀ ସେବାରେ ଏବେ ନୀରବ କିମ୍ପାଇଁ
ସ୍ୱାଧୀନ ସରଗ ସୁଖ ମଳିନ ଦେଖାଇ
କାହା ମନ୍ତ୍ରଣାରେ ପଡ଼ି;
କୁପଥେ ଗ୍ଲଳିଛ ଭଲ ସୁଜ୍ଞାନକୁ ଛାଡ଼ି ।୧୩।

ମାତା କୋଳ ଛାଡ଼ି କେଉଁ ଯଶ ଅରଜିବ
ମାତା ସୁଧା ସ୍ନେହ ଆଉ କେଉଁଠୁ ପାଇବ
ମାତା ଲଭିଲେ କଷଣ;
ଦେବ ଦେବୀ ଅଭିଶାପ କରିବେ ବର୍ଷଣ ।୧୪।

ଅଭିଶାପେ ଏ ଜୀବନ ହୋଇଯିବ ବ୍ୟର୍ଥ
କାନକୁହା ଲୋକେ ପରେ ସାଧି ନିଜ ସ୍ୱାର୍ଥ
ବଣ ସଂସ୍କୃତିକୁ ହରି;
ପରାଧୀନେ ରଖାଇବେ କ୍ରୀତଦାସ ପରି ।୧୫।

ଏଣୁ ଆମେ କାନକୁହା ଦଳକୁ ବରଜି
ସ୍ୱାଧୀନ ମତ ଦାନରେ ସୁ ଶାସକ ଖୋଜି
ଦୁଃଖ ପରଦା ହଟାଇ;
ସ୍ୱାଧୀନତା ପୂତ ଯଶ ପାରିବା ଜଗାଇ ।୧୬।

ଜନନୀ ହରଷେ ଆମେ ହୋଇବା ହରଷ
ସର୍ବ ଦେବଦେବୀ ତୋଷେ ବିହିବେ ଆଶିଷ

ଜନ୍ମ ହୋଇବ ସଫଳ
ସ୍ୱର୍ଗୁଁ ଗରୀୟସୀ ହେବ ଜନନୀ ଉତ୍କଳ ।୧୭।

ଜନନୀ ଭୂଷିତ ଗୁଣେ ହୋଇ ଗରୀୟାନ
ଦାରୁବ୍ରହ୍ମ ପଦ ସେବି ଗାଇ ତାର ଗାନ
ବିଶ୍ୱ-ଜନ-ମନ ହରି
ଜନନୀ ପଦ ସେବା ଧରମ ଆମରି ।୧୮।

ଉତ୍କଳର ସୁଖେ ସୁଖି ଭରତ ଜନନୀ
ଉତ୍କଳର ଦୁଃଖେ ଅଶ୍ରୁ ଗଡାଏ ଜନନୀ
ଉତ୍କଳକୁ କୋଳେ ଧରି
ମାନବ ସେବା କରୁଛି ଯୁଗ ଯୁଗ ଧରି ।୧୯।

ଆବର ଯେତେକ ସୁତାଛନ୍ତି ମାତା କୋଳେ
ସୁତା ଦୁଃଖେ ଭରତ ଜନନୀ ଅଶ୍ରୁଢ଼ାଳେ
ଶୁଣ ମୋ ଭଇ ଭଉଣୀ
ଖଳ ତୃତୀୟ ପୁରୁଷ ବାଣୀକୁ ନଶୁଣି ।୨୦।

ଏକ ମନ ଏକ ଧ୍ୟାନ ଭରତ ରକ୍ଷଣ
ମାନବ କଲ୍ୟାଣ ନୀତି ସତ୍ୟରେ ପାଳନ
କରି ତୋଷିଲେ ଜନନୀ
ବିଶ୍ୱେ ଶାନ୍ତି ବିତରିବେ ମାତା ସନାତନୀ ।୨୧।

ପଦସେବା ମନୋଭବ ହୋଇବ ସାର୍ଥକ
ସୁଜ୍ଞାନ ପାଇବେ ସର୍ବ ଅବିବେକୀ ଲୋକ
ଖଳ ଖେଳ ଶେଷ ହେବ
ସତ୍ୟ ଜ୍ଞାନାଲୋକେ ବିଶ୍ୱ ଆଲୋକିତ ହେବ ।୨୨।

ଲେଖକ—ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର

—□—

# ଉଦ୍‌ବୋଧନ

ଜାଗରେ ଜାଗରେ ସୁପ୍ତ କେଶରୀ
ଜାଗି ଉଠି ଗୁହଁବାରେ ।
ତୋ ଜାତି ଗୌରବ ଭୂଲୁଣ୍ଠିତ ହୋଇ
ମିଶୁଛି ଧୂଳି ମାଟିରେ ।
ସୁପ୍ତ ବାଣିନୀ ସ୍ୱପ୍ନରେ ;
ତୋ ଉନ୍ନତ ଚିନ୍ତା ମଉଳି ଯାଉଛି
ଦକା ନ-ପଶେ ଚିତ୍ତରେ । ୧ ।

ଗୋ-ମାତା ଅବଳା ପରେ ଅତ୍ୟାଗ୍ରର
ନ-କରୁ ତା ପ୍ରତିକାର ।
ମାଟି ମାତା ପଦ ବନ୍ଦନା ଭୁଲି
ଗୋଡ଼ାଣିଆ ହେଉ କାର !
ସ୍ୱାଧୀନତା ଆଲୋକରେ ;
ଦେଖୁନାହିଁ ତୋର ଦୀପ୍ତିମନ୍ତ ତେଜ
ପଡ଼ିଛୁ ତୁ ଅନ୍ଧକାରେ । ୨ ।

ଥିଲା ରାଜନୀତି ସହ ଧର୍ମନୀତି
ସାମ୍ୟବାଦ କରି ଗାନ ।
ମହିୟସୀ ମାତା ଉତ୍କଳେ ଜନମି
ତେଜି ହେଲୁ କି ଅଜ୍ଞାନ ?
ଦେଖ ଦିବ୍ୟ ନୟନରେ
ଘଟେ ସିଂହ ନୀତି ଲୁଚି ରହିଅଛି
ଜଡ଼ ଭୌତିକ ଅନ୍ଧାରେ । ୩ ।

ତୋ ପିତୃ ପୁରୁଷ ଆଶ୍ରିତ ଜନେ
ଆଜି ହୋଇ ମହାଜନ ;
କୁଟ କଉଶଳେ ତୋ ରକ୍ତ ଶୋଷୁଛି
ତୋଷିତ କରି ହାକିମାନ ।
ଶୃଗାଳର ଶୃଙ୍ଖଳରେ ;
ଶବ ସମ ପଡ଼ି ଜାତି ଇତିହାସ
ବୁଡ଼ାଉ କେଉଁ ଲେଭରେ ? ।୪।

ବୀର କୁଶ ମାତ୍ର ବିପ୍ର ଅମାତ
ମେଣ୍ଢା ଫତ୍‌କାର ଦଳ ।
ସ୍ୱାଧୀନତା ରଣେ ଅସ୍ତ୍ର ଉଠାଇ
ରଚିଥିଲେ ଯେଉଁ ଖେଳ ।
ଗାଥା ଲୁଚି ଉର୍ଦ୍ଦ୍ଧମାରେ ;
କବି ଦୀନାର୍ଜ୍ଜୁନ ଗାଏ ଜାତି ଗାଥା
ରଚି ତାହା କବିତାରେ । ୫ ।

ସେଇ ପ୍ରେତ ଆତ୍ମା ଘୁରି ବୁଲୁଅଛି
ଉତ୍କଳ-ଜନନୀ କୋଳେ ।
ତୁମ ଅପକର୍ମ ଦେଖି ନୟନରୁ
ଅଶ୍ରୁ ଢାଳନ୍ତି ବିକଳେ ।
ହାତ ଯୋଡ଼ି କପାଳରେ ;
ତୁମ ହିତ ପାଇଁ ଜଣାଣ କରନ୍ତି
ଜଗନ୍ନାଥ ଶ୍ରୀପୟରେ । ୬ ।

ତୋ ପୂର୍ବ-ପୁରୁଷ ଓଡ଼ିଶାର ଯଶ
ରଚି ପୋଥି ପତରରେ ।
ଅମଳିନ ଭକ୍ତି ଅରପି ଥିଲେ ଯା ;
ଦାରୁ ବ୍ରହ୍ମ ଶ୍ରୀପୟରେ ।
ପଡ଼େନି କି ନୟନରେ ;
ଅଜ୍ଞାନର ବଶେ ହଗଇଛ ରତ୍ନ
ଏବେ ତା ଚିନ୍ତ ମନରେ । ୭ ।

କାହିଁଗଲା ତୋର ଅସ୍ତ୍ର ଝଙ୍କାର
କାହିଁ ନ୍ୟାୟ କରିବାଲା ?
ଇଷ୍ଟ ସ୍ମରି ଜାଗି ଉଠ ବୀର
ଉଡ଼ାଇ ଧର୍ମ ଚିଗଲା ।
ନମି ପିତୃ ଚରଣରେ ;
ଅନ୍ୟାୟ ନାଶି ଜୀବନ ସଫଳ
କର ଏ ମର-ଶରୀରେ । ୮ ।

ମହତ ସ୍ମରି କୁ-ମାର୍ଗକୁ ଛାଡ଼ି
ପ୍ରଭୁ ପଦେ ଆଶା କର ।
ଶୃଗାଳର ଛଳେ ଧର୍ମକୁ ନ-ଭୁଲି
ଜନନୀର ସେବା କର ।
ଦୁର୍ଦ୍ଦଶା ଯିବ ଅଚିରେ ;
ନବ ଇତିହାସେ ଉତ୍କଳର ଯଶ
ସ୍ଥାପନା କର ଧଗରେ । ୯ ।

ଲେଖକ ;—ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର



ପରିଶେଷରେ ମାତୃଭୂମି ଓ ମାତୃଭାଷା ପ୍ରତି କବି ଶେଖର ଚିନ୍ତାମଣି ମହାନ୍ତିଙ୍କର ଅନାବିଳ ଶ୍ରଦ୍ଧା ଓ ଭକ୍ତି ଭାବନା ଆଜି ଆମ୍ଭମାନଙ୍କର ଧ୍ୟେୟ ହେଉ ଯଥା :

"ମାତୃଭାଷା ମୋର ଛଣା ସୁଧା କିଣା ।
ଲାଗଇ ମଧୁର ମୋ କାନକୁ ସିନା ॥

ଆନ ଭାଷା ମୋତେ ଭଲ ଲାଗେନାହିଁ ।
ସୁଧା ସଙ୍ଗେ ଗୁଡ଼ ସରି ହେବ କାହିଁ ?

× × ×

ମାତୃଭାଷା ପ୍ରତି ଯେ ରଖେ ମମତା
ନର ନୋହେ ସେହୁ ସ୍ୱର୍ଗର ଦେବତା ॥

ମାତା ମାତୃଭାଷା ମାତୃଭୂମି ତିନି
ସ୍ୱର୍ଗୁଁ ଗରୀୟସୀ ତ୍ରୈବର୍ଗ-ଦାୟିନୀ ॥

॥ କବି ଶେଖର ଚିନ୍ତାମଣି ମହାନ୍ତି ।





ବିଶେଷ ଦ୍ରଷ୍ଟବ୍ୟ :—

ଉପରୋକ୍ତ ଗାଙ୍ଗପୁର ନାଗର ରାଜ୍ୟରୁ ସଂଗୃହୀତ ପ୍ରାଚୀନ ତାଳପତ୍ର ପୋଥି ପତ୍ର ଚିତ୍ରର ଏକ ଫଟ ଲେଖକ

**Dr. N R. SRINIVASAN**
**Research Fellow**

Steel Authority of India Ltd. ମହୋଦୟଙ୍କୁ ରାଉରକେଲା ଷ୍ଟିଲ ପ୍ଲାଣ୍ଟର Guest House, Section-20ରେ ସାକ୍ଷାତ କରି ୧୯୯୧ ମସିହାରେ ଦେଇଅଛି ।

———

# ନାଗବ୍ରର ସଂଗୃହୀତ ତାଳପତ୍ର ପୋଥିର ସୂଚନା

| କ୍ରମିକ ସଂଖ୍ୟା | ସଂରକ୍ଷିତ ଗ୍ରାମ | ପୋଥିର ନାମ | ରଚୟିତାର ନାମ | ପୋଥି ଲିଖନକାରର ନାମ | ପୋଥି ଲେଖାଯାଇଥିବା ସ୍ଥଳର ନାମ ଓ ରଚନାକାଳ |
|---|---|---|---|---|---|
| ୧ | ବାର୍ଙ୍କିଆ | ବିରାଟ ଗୀତା | ବଳରାମ ଦାସ | ସୁଦ୍ରକେତ ପ୍ରଧାନ | ଲୁଆକଲ (ଲୁହାକେରା) |
| | ବାର୍ଙ୍କିଆ | ନାମରତ୍ନ ଗୀତା | ଦୀନକୃଷ୍ଣ ଦାସ | ହାଡ଼ିପା କାଲେ | ବିତିନାକି ବନ୍ଧଂ ପୋୟେସେ |
| | ବାର୍ଙ୍କିଆ | ବୈଦ୍ୟ ଶାସ୍ତ୍ର | — | ଅରକ୍ଷିତ ବିନଦ | — |
| ୨ | ହମିରପୁର } | ଯିମୁତବାହାନ ବ୍ରତ କଥା | — | ଭଗବତ ସାହୁ | ଝାଡ଼ ତରଙ୍ଗ |
| | ଝାଡ଼ତରଙ୍ଗ | ଗୁପତ ବିଦ୍ୟା | — | — | — |
| ୩ | ଦୁର୍ଗାପୁର | ସପ୍ତଶତୀ ଚଣ୍ଡୀ | — | ଗୋବିନ୍ଦ ପଣ୍ଡା | { ଦୁର୍ଗାପୁର ଶାସନ ମୁକୁନ୍ଦଦେବଙ୍କ ୧୮ ଅଙ୍କରେ |
| | ଦୁର୍ଗାପୁର | ଶ୍ରୀମଦ୍ ଭଗବତ ଗୀତା ଓ ବିଷ୍ଣୁ ସହସ୍ର ନାମ | — | ରତ୍ନାକର ଶର୍ମା | { ଢଡ଼ାଗୋଳା ମହାଶାସନ ମସିହା ୧୮୧୩ ମୁକୁନ୍ଦ ଦେବଙ୍କ ୧୫ ଅଙ୍କରେ |
| | ଦୁର୍ଗାପୁର | ହଂସ ଦୂତାଖ୍ୟ ଖଣ୍ଡକାବ୍ୟ (ଓଡ଼ିଆ ଲିପିରେ'ସଂସ୍କୃତ ରଚନା) | ଶ୍ରୀ ମଦ୍ରୂପଦ ଗୋସ୍ୱାମୀ | ଗୋବିନ୍ଦପଣ୍ଡା | ଦୁର୍ଗାପୁର ଶାସନ |
| | ଦୁର୍ଗାପୁର | ଜ୍ୟୋତିଷ ଶାସ୍ତ୍ର | — | — | — |

| କ୍ରମିକ ସଂଖ୍ୟା | ସଂରକ୍ଷିତ ଗ୍ରାମ | ପୋଥିର ନାମ | ରଚୟିତାର ନାମ | ପୋଥି ଲିଖନକାରର ନାମ | ପୋଥି ଲେଖାଯାଇଥିବା ସ୍ଥଳର ନାମ ଓ ରଚନାକାଳ |
|---|---|---|---|---|---|
| ୪ | ବଲ୍ଲଣି | ମାଳଶ୍ରୀ ଲେଖନ | ମାଛି ଏବଂ ଗୋବିନ୍ଦାଇ | — | — |
| | ବଲ୍ଲଣି | ବେଣ୍ଡ ପୋଥି ଲେଖନ | — | — | — |
| | ବଲ୍ଲଣି | ଶ୍ରୀ ଲକ୍ଷ୍ମି ପୁରାଣ | ବଳରମ ଦାସ | ବିପ୍ର ଚୂଡ଼ାମଣି ପାଢ଼ି | ରିଙ୍ଗ: ଗଜପତି ମୁକୁନ୍ଦ ଦେବଙ୍କ ଗଜୁତିରେ । |
| | ବଲ୍ଲଣି | ଗୁଣକ୍ୟ ସାର ସଂଗ୍ରହ | ଗୁଣକ୍ୟ | ଦ୍ୱିଜଗଜ ପତି | — |
| ୫ | ବିର୍କେଗ | କାର୍ତ୍ତିକ ମହାତ୍ମ୍ୟ | ମହାଦେବ ଦାସ | — | — |
| ୬ | ଟିମ୍ବୋର୍ | ଶ୍ରୀ ସତ୍ୟନାରାୟଣ ଦୁର୍ଯ୍ୟତ ପାଲ | କବି କର୍ଣ୍ଣ | ନୀଳକଣ୍ଠ ପଣ୍ଡା | — |
| ୭ | ତୁମ୍ବକେଲ | ବୈଦ୍ୟ ସାହାସ୍ର | — | — | — |
| | ତୁମ୍ବକେଲ | ମାଧବ କରେ ବୈଦ୍ୟ ସାହାସ୍ର | — | — | — |
| ୮ | ଛେଣ୍ଡ | କାର୍ତ୍ତିକ ମହାତ୍ମ୍ୟ ଲେଖନ | ମହାଦେବ ଦାସ | ବିପ୍ର ଭଗବାନ ଦାସ | — |
| ୯ | ଉସର | ବିବିଧ ବ୍ରତକଥା ଉପରେ ଆଧାରିତ ତାଳପତ୍ର ପୋଥି | — | ଦିନବନ୍ଧୁ ପଣ୍ଡି | ଗାଙ୍ଗପୁର ରଜା ରଘୁନାଥ ଶେଖରଦେଓ ଶାସନ ସମୟ । |

| | | | | |
|---|---|---|---|---|
| କଗ୍ରନ୍ଥ | ଭଗବତ ଦସମ ସ୍କନ୍ଧ ଗସକ୍ରିଡ଼ା | ବିପ୍ର ଜଗନ୍ନାଥ | ବିପ୍ର ଗୋପିନାଥ କର | — |
| କଗ୍ରନ୍ଥ | ଭରତେ ସାବେତ୍ରି ଲିଖିତ | ବିପ୍ର ବଳଭଦ୍ର | — | — |
| କଗ୍ରନ୍ଥ | ଶ୍ରୀମାହା ଭରଥ ତାଗାର୍ଜୁନୀ | ମାଧେବ ଦାସ | ଭଦୋଉ-ଇକା | ହାଥିବାରି |
| କଗ୍ରନ୍ଥ | ଶ୍ରୀ ତୁଳାଭିଣା ଲେଖନ | ଜଗନ୍ନାଥ ଦାସ | ଭେଦୋନାଇକା | ହାତିବାରି |
| କଗ୍ରନ୍ଥ | ଗହାସ ଗିତ | ଜଗନ୍ନାଥ ଦାସ | ଭେଦୋ ନାଇକା | ହାତିବାରି |
| କଗ୍ରନ୍ଥ | ନାବକେଳି | କୃଷ୍ଣ ଦାସ | — | — |
| କଗ୍ରନ୍ଥ | ଶ୍ରୀ ଗମାୟଣ ପଚିଶ ପୁଇ | ଗୋବର୍ଦ୍ଧନ | — | — |
| କଗ୍ରନ୍ଥ | ଶ୍ରୀ ଗହାସ ଲେଖୁଃ | ଜଗନ୍ନାଥ ଦାସ | ବିଦ୍ୟାଧର | ନଇଡ଼ା ଗ୍ରାମ |
| କଗ୍ରନ୍ଥ | ରସକଲ୍ଲୋଳ | ଦୀନକୃଷ୍ଣ ଦାସ | ବୈଦ୍ୟନାଥ ଦ୍ୱିଜ | — |
| କଗ୍ରନ୍ଥ | ପ୍ରେମ ସୁଧାନିଧି ଏବଂ ବିବିଧ ଚଉତିଶା | ଉପେନ୍ଦ୍ର ଭଞ୍ଜ | — | — |
| | ଯଥା : ଓଇଟ ଚଉତିଶା | ବିପ୍ର ଭୃଥହରି | — | — |
| | ବିଚିତ୍ର ତଉତିଶା ଲେଖୁଃ (ଗଗ—ଆହାରୀ) | ବିପ୍ର ପଦ୍ମନାଭ | — | — |
| | ଗୋପିନାଥ ଚଉତିଶା | କବି ଗୋପିନାଥ | — | — |
| | ଚଉତିଶା | କବି ଭୁପତି | — | — |

| କ୍ରମିକ ସଂଖ୍ୟା | ସଂରକ୍ଷିତ ଗ୍ରାମ | ପୋଥିର ନାମ | ରଚୟିତାର ନାମ | ପୋଥି ଲିଖନକାରର ନାମ | ପୋଥି ଲେଖାଯାଇଥିବା ସ୍ଥଳର ନାମ ଓ ରଚନାକାଳ |
|---|---|---|---|---|---|
| | କଣ୍ଟକ | କବି ଜଗନ୍ନାଥଙ୍କ ଏକ କବିତା (କବିତାଟିରେ କୌଶଲ୍ୟା ସ୍ୱାରମଙ୍କୁ ପ୍ରଶ୍ନଟିଏ ପଚାରୁଅଛନ୍ତି ) | ଜଗନ୍ନାଥ ଦାସ | ବୈଦ୍ୟ ବିପ୍ର | ଗଜପତି ରାମଚନ୍ଦ୍ର ଦେବଙ୍କ ୨୧ ଅଙ୍କେ ଶକାବ୍ଦ ୧୭/୫୫ |
| | କଣ୍ଟକ | ପାରସ୍କର ଗୃହ୍ୟେ ଦଶକର୍ମ ସୂତ୍ର | ପରାଶର ଋଷି | — | — |
| | କଣ୍ଟକ | ଜ୍ୟୋତିଷ ରତ୍ନମାଳା | ଶ୍ରୀକାନ୍ତ ସନକାୟୋ ବ୍ୟାଖ୍ୟୋକ୍ତ | ଡମ୍ବରୁଧର | — |
| | କଣ୍ଟକ | ଅମର କୋଷ (ଓଡ଼ିଆ ଲିପିରେ ସଂସ୍କୃତ ରଚନା) | ଇତ୍ୟ ନରସିଂହ କୃତୌ | ବିପ୍ର ଭରଥ ପଣ୍ଡା | ଗଡଗଡ଼ ପଦ୍ମପୁର ଶାସନ |
| | କଣ୍ଟକ | କାଣ୍ଡ ସଂହିତା (ଓଡ଼ିଆ ଲିପିରେ ସଂସ୍କୃତ ରଚନା) | କଣ୍ଣ ଋଷି | କୃତିବାସ ପଣ୍ଡା | ଗଜପତି ବୀରକେଶ୍ୱର ଭୂୟ ୩୩ ଅଙ୍କ |
| | କଣ୍ଟକ | ମଥୁରା ମଙ୍ଗଳ ସମ୍ପୂର୍ଣ୍ଣ (ଓଡ଼ିଆ ଲିପିରେ ବଙ୍ଗଳା ରଚନା) | ଦ୍ୱିଜ ଚଣ୍ଡି ଦାସ | ସିବ ମିଶ୍ର | — |

| | | | | | |
|---|---|---|---|---|---|
| | କଣ୍ବଛ | ଅଷ୍ଟତାର (ଓଡ଼ିଆ ଲିପିରେ ବଙ୍ଗଳା ରଚନା) | କିଶୋର ଦାସ | — | — |
| ୧୧ | ଜବା ଘାଟ | ତୁଳାମନ୍ତ୍ର ଲେଖନ ଓ କଥାଣି ମାଙ୍କା ଲେଖନ | | ଗଧା ବଲ୍ଲଭ ପଣ୍ଡା | ବବାଘାଟ ତା ୬ । ୩ । ୧୯୩୫ |
| ୧୨ | ହାତୀବାରି | ଅଷ୍ଟାଦଶ ପୁରାଣ | — | ଭଗୀରଥି ପଣ୍ଡା | ପ୍ରଖ୍ୟାତ ଲିଖନାକାର ଥିଲେ । |

## ଉଦ୍ୟୋତ କେଶରୀଙ୍କ ପ୍ରଦତ୍ତ ବ୍ରିଫଲୀ ତାମ୍ର ଶାସନ

ବିଖ୍ୟାତ କେଶରୀ ବଂଶ (ଚନ୍ଦ୍ର ବଂଶ)ର ଖ୍ୟାତି ଭାରତରେ ପରିବ୍ୟାପ୍ତ ଥିଲା । ନାଗରରେ ଉକ୍ତ ବଂଶର ବଂଶଧରମାନେ ରାଜତ୍ୱ କରିଥିଲେ । କେଶରୀ ବଂଶର ଗୌରବମୟ ଇତିହାସର ପରିଚୟ ଦ୍ୱିତୀୟ ଯଯାତିଙ୍କ ପୁତ୍ର ଉଦ୍ୟୋତ କେଶରୀଙ୍କ ପ୍ରଦତ୍ତ ଏକ ଭ୍ରିଫଲୀ ତାମ୍ର ଶାସନରେ ଦେଖିବାକୁ ମିଳେ ।

ଉଦ୍ୟୋତ କେଶରୀଙ୍କ ଭ୍ରିଫଲୀ ତାମ୍ର ଶାସନ ୧୯୨୯ ମସିହାରେ ପୂର୍ବତନ ଗଡ଼ଜାତ ନରସିଂହପୁର ଷ୍ଟେଟ୍‌ରେ ଥିବା ବାଲିଝାରୀ ଗ୍ରାମସ୍ଥ ପଣ୍ଡିତ ବିନାୟକ ମିଶ୍ରଙ୍କ ଦ୍ୱାରା ଆବିଷ୍କୃତ ହୋଇଥିବା ବିଷୟ ; ଡକ୍ଟର ସତ୍ୟନାରାୟଣ ରାଜଗୁରୁ ତାଙ୍କର ଓଡ଼ିଶା ଇତିହାସର ଛପନ ଅଧ୍ୟାୟରେ ପ୍ରକାଶ କରିଅଛନ୍ତି । ଭ୍ରିଫଲୀ ତାମ୍ର ଶାସନର କେତେକ ମୁଖ୍ୟାଂଶ ଓଡ଼ିଆ ଭାଷାରେ ଉଦ୍ଧାର କରାଇ ମୂଳ ସଂଗୃହୀତ ଟିପ୍‌ପଣୀର ସୂଚନା (୪୦)* ଦେଇଅଛନ୍ତି ।

ନାଗର ଲେଖକଙ୍କ ଶ୍ୱଶୁର ପୂର୍ବତନ ଗଡ଼ଜାତ ନରସିଂହପୁର ଷ୍ଟେଟ୍‌ସ୍ଥିତ ଜେମାଦେଈପୁର ଶାସନ ନିବାସୀ ପଣ୍ଡିତ ଗୋପୀନାଥ ମିଶ୍ର ତର୍କ ବ୍ୟାକରଣ ତୀର୍ଥ, ସାହିତ୍ୟ ଶାସ୍ତ୍ରୀ ଜଣେ ଅସାଧାରଣ ସଂସ୍କୃତ ପଣ୍ଡିତ ଥିଲେ । ସେ ୧୯୩୯ ମସିହାରେ ପ୍ରାଚୀନ ନ୍ୟାୟ ଉପରେ ଏକ ସ୍ୱର୍ଣ୍ଣ ପଦକ ଲାଭ କରିଥିଲେ । ପଦକର ପ୍ରକାଶିତ ଇଂରଜୀ ଭାଷ୍ୟ :—

ପଦକର ଅଗ୍ର ପାର୍ଶ୍ୱ

E.B SARASWATA SAMAJ CONVOCATION
—: TO :—
GHOPINATH MISRA
—: FOR :—
PROFICIENCY
—: IN :—
ANCIENT NYAYA
1939

* ସୂଚନା (୪୦) :— J.B.O.R.S., Vo I X VII : Pt i ( 1930-31 ). pp-1-24 ff-Ins ; Qr., Vol IV, pp 225-24 ff

## ପଦକଟିର ଅପର ପାର୍ଶ୍ୱରେ

## GURU PRASAD MEDAL

—: AWARDED BY :—

MATHURA MOHAN CHAKRABORTY, B A.

ପଣ୍ଡିତ ଗୋପୀନାଥ ମିଶ୍ରଙ୍କ ସ୍ୱହସ୍ତାଙ୍କିତ ଉତ୍କଳ ଲିପିରେ ଲିଖିତ ଉପରୋକ୍ତ ସଂସ୍କୃତ ତ୍ରିପଳୀ ତାମ୍ରଶାସନ ଲେଖକ ଉଦ୍ଧାର କରିଅଛି । ଲେଖକ ଉଦ୍ୟୋତ କେଶରୀଙ୍କ ପ୍ରଦତ୍ତ ତାମ୍ର ଶାସନର ମୂଳ ସଂସ୍କୃତ ଭାଷାକୁ ଓଡ଼ିଆ ଭାଷାରେ ଅନୁବାଦ କରାଇ ଏହାର ଉଭୟ ସଂସ୍କୃତ ଏବଂ ଓଡ଼ିଆ ଅନୁବାଦକୁ ନିମ୍ନରେ ପ୍ରକାଶ କରିଅଛି ।

## ଉଦ୍ୟୋତ କେଶରୀଙ୍କ ପ୍ରଦତ୍ତ ତ୍ରିପଳୀ ତାମ୍ରଶାସନ

୧

ଜ୍ୟୋତ୍ସ୍ନାଶାଳି ସମୁଦ୍‌ବିଧୁଃ କୁମୁଦିନୀ ହାସୈକ ସମ୍ପାଦନା—
ଧୂର୍ତ୍ତୋ ଧୂର୍ଜ୍ଜଟି ମୌଳିସୌଧ ବସତିଃ ପିୟୂଷଧାର ଗୃହଂ ।
ତାରଣଃ ପୁରନାୟକୋ ରତିପତେଃ ଶସ୍ତ୍ରେ କୃଶାନୋଃ ଫଳଃ
କ୍ଷୀରେ ଦାର୍ଣ୍ଣବନନ୍ଦନୋ ବିଜୟତେ ଦେବଃ ସୁଧାଦୀଧିତିଃ ।।୧।।

ଅସ୍ୟାନ୍ୱୟେ ମହତି ସାନ୍ଦ୍ରତମଃ କଳଙ୍କ —
ବିଚ୍ଛାୟ ଦିଗ୍‌ବିଜୟ ମାର୍ଜ୍ଜନ କୁହରସ୍ୟ ।
ଉଦେହଦିରେ ସକଳ ସଦ୍‌ଗୁଣ ଜନ୍ମ କନ୍ଦାଃ
କୁନ୍ଦାବଦାତ ଯଶସୋ ଜଗତାଂ ଭୁଜସ୍ତେ ।।୨।।

ରଜାଽଭୂଜ୍ଜନମେଜୟୋଽଥନୃପତି ର୍ଜାତୋ ଯଯାତି ସ୍ତତଃ
ଶ୍ରୀମାନ୍ ଭୀମରଥୋଽଭବତ୍ତଦନୁଜଃ କ୍ଷ୍ମା ଚକ୍ରରକ୍ଷାମଣିଃ ।
ଅସ୍ତେ କ୍ଷେବ ଦିଗନ୍ତରେଷୁ ବିଜୟ ସ୍ତମ୍ଭାବଳିଚ୍ଛଦ୍ମନା
ହୃଚ୍ଛଲ୍ୟାନିଦିଶାଂ ଭୁଜାମପି ସମାରୋପ୍ୟାବଂଭୀ ବିସ୍ଫୁଟଂ ।।୩।।

ତସ୍ମାଦ୍ଧର୍ମରଥୋ ମନୋରଥ ଫଳଃ ଖ୍ୟାତାଂଶୁ ବଂଶଶ୍ରିୟୋ
ନିସ୍ତ୍ରିଂ ଶୈକ ସଖଃ ଶିଖାମଣିରଭୂଦ୍ୟୋଽ ଶେଷ ପୃଥ୍ୱୀଭୁଜାଂ ।

ଯର୍ସ୍ମିନ୍ ଦିଗ୍‌ବିଜୟାବତାରଣ ପରେ ବିଦ୍ୱେଷିଶୋଣିଭୁକ୍ତଃ
ପ୍ରସ୍ଥିତାନ୍ୟ ଦିଗନ୍ତର ସ୍ତଦନୁ ଚ ଖ୍ୟାତାଶ୍ୱମୂରେଣବଃ । ୪ ।
ସେତୁ ପ୍ରାନ୍ତ ବନାନ୍ତରେ ହିମବତଃ ପର୍ଯ୍ୟନ୍ତ ଭୂସୀମନି
ପ୍ରାଗମ୍ଭୋଧିତଟାବନୀଷୁ କଟକେ ପୂର୍ବୈରକ୍ଷ୍ମାଭୃତଃ ।

୨

ଯ୍ରୁସ୍ୟାଚ୍ଛମଦଗତି ଗଜଯୁବତୀ ନିଶ୍ୱାସ ଝଞ୍ଜାନିଳୈ
ର୍ବ୍ୟାସଙ୍ଗସ୍ଥନ ଦନ୍ତଗଳ ମୁଖରୈ ର୍ଗୀତଂ ଯଶଃ କୀଚକୈଃ । ୫ ।
ଭ୍ରାତା ତସ୍ୟ ବଭୂବ ଭୂତଳପତି (ଭୂର୍ତେ) ଶତ୍ରୁଲ୍ୟ ପ୍ରଭଃ
ପ୍ରକ୍ଷାତଃ କ୍ଷିତିଭୂଷଣୋ ନିଘୁଷ ଇତ୍ୟୁର୍ବୀ ପତୀନାଂ ପତିଃ ।
ଯଦ୍ଦୋର୍ଦ୍ଦଣ୍ଡ ଭୁଜଙ୍ଗମେନ ବିଳସନ୍ନିସ୍ତ୍ରିଂଶ ଜିହ୍ୱାଭୃତା
ପୀତୋଽସୌ ପରିପନ୍ଥିପାର୍ଥିବଚମୂକଣ୍ଠାନ୍ତରେ ମାରୁତଃ । ୬ ।
ଅତ୍ରାସ୍ତେ କରିବୃନ୍ଦ ମୁନ୍ମଦମିହ ପ୍ରୌଢ଼ୋଽସ୍ତି ପଞ୍ଚାନନଃ
ସନ୍ତ୍ୟେତାସ୍ତୁ ଜଗଦ୍ଧ୍ୱହୋ ଗିରିଦରୀ କୁଞ୍ଜୀଷୁ କୁମ୍ଭୀନଷାଃ ।
ସ୍ନେହାଦିତ୍ୟଭିଧାୟ ବୃଦ୍ଧଶବରୀ ବର୍ଗେଣ ବଦ୍ଧାଶ୍ରୁଣା
ଯଦ୍‌ବୈରି ପ୍ରମଦାଜନୋ ବନଭୁବଃ ସଞ୍ଚାର ମଧ୍ୟାପିତଃ । ୭ ।

ତସ୍ୟାନୁଜୋ ନତ ସମସ୍ତ ସପନ୍ନ ମୌଳି,
ରତ୍ନାଂଶୁମାଳି ଚଟିପାଦସରୋଜ ରୋଚିଃ ।
ବିଦ୍ୟାନିଧିଃ ପ୍ରତିନିଧିର୍ମଧୁସୂଦନସ୍ୟ,
ଜାତୋଽଥ ବିଶ୍ୱବିଜୟୀ ନୃପତି ର୍ଯ୍ୟଯାତିଃ । ୮ ।
ଉଦ୍‌ଚୈରବଷ୍ଟବ୍‌ଧ ମିଦଂ ନରେନ୍ଦ୍ରେ,
ଗସ୍ତ ଦୟଂ କୋଶଳମୁତ୍କଳଞ୍ଚ ।
ଅକଣ୍ଟକଂ ସାଧୟତଃ ସମନ୍ତାଦ୍;
ଭୁଜଦ୍ୱୟଂ ଯସ୍ୟ କୃତାର୍ଥ ମାସୀତ୍ । ୯ ।

୩

ତସ୍ମାଦ୍ ଜାତ; ସୁକୃତ ଫଳସଫଳୀକୃତ ଲୋକ ଲୋଚନସ୍ତନୟଃ
ସମାଜ ନିପୁଣୈକ ସୀମା ଶ୍ରୀମାନୁଦ୍ୟୋତ କେଶରୀ ନୃପତିଃ । ୧୦ ।

ଭକ୍ତି ଦୂରନତ କୁନ୍ତଳସ୍ଖଳନ୍ ମଲ୍ଲିକାକୁସୁମ ରାଜୟଃ
ଢୌକନ୍ତ ଇବ କୀର୍ତ୍ତିସନ୍ତତି ର୍ଯାଃ ପ୍ରଣିପତ୍ୟ ରହିତୋ ମହୀଭୁଜଃ । ୧୧ ।

ସ୍ୱସ୍ତି ଶ୍ରୀଯଯାତି ନଗରତ୍ ପରମା ମହାମହେଶ୍ୱର ପରମ ଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳ ତିଳକ ତ୍ରିକଳିଙ୍ଗାଧିପତି ଶ୍ରୀ ମହାଶିବ ଗୁପ୍ତ ରାଜଦେବଃ ପାଦାନୁଧ୍ୟାତା, ପରମ ମହେଶ୍ୱର ପରମ ଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳ ତିଳକ ତ୍ରିକଳିଙ୍ଗାଧିପତି ଶ୍ରୀ ମହାଭବ ଗୁପ୍ତ ରାଜଦେବ ଖଣ୍ଡିୟ କୋଙ୍କାଲଣ୍ଡା ଗ୍ରାମଃ, ତର୍ସ୍ମିନ୍ସ୍ଥିତ— ଖେଣ୍ଡିୟ ବ୍ରାହ୍ମଣାନ୍ ଆପୂଜ୍ୟ— ସମାହତୃ ସନ୍ନିଧାତୃ ନିଯୁକ୍ତାଧିକାରୀ ଦଣ୍ଡପାଶିକ ପିସୁନବେତ୍ରିକ ଅବରୋଧଜନ ରାଜ୍ଞୀରାଣକ ରାଜପୁତ୍ର ରାଜବଲ୍ଲଭ ଭୋଗିଜନ ପ୍ରମୁଖ ଜନପଦାନ୍ ସମାଜ୍ଞାପୟତି,—ବିଦିତ ମସ୍ତୁ ଭବତାଂ—

ଯଥାଽସ୍ମାଭିରୟଂ ଗ୍ରାମଃ ସରର୍ଭୋସୀର—ମହାନଦ୍ୟ—ର୍ଦ୍ଧ ସ୍ରୋତଃ ସମେତ ଚତୁଃସୀମାବଚ୍ଛିନ୍ନ—ଶିଶୁ-ମଧୁକ-ତାଳ ପ୍ରଭୃତି ନାନା ବୃକ୍ଷ ସନ୍ନିଧି —ସୋପାନିଧି—

୪

ହସ୍ତିଦଣ୍ଡ —ବରବଳାବର୍ଣ୍ଣ— ଗ୍ରେଟଳ —ଅନ୍ଧାରୁବା —ପ୍ରତ୍ୟନ୍ଧାରୁବା— ଅଦତ୍ତାତ୍ରା—ପଦାତିଜୀବ—ଅହିଦଣ୍ଡ –ଅନ୍ତରବର୍ଦ୍ଧି –ବନ୍ଧଦଣ୍ଡ– ବିଜୟବନ୍ଦାବନା –ମାର୍ଗଣିକ ପ୍ରଭୃତି ଭବିଷ୍ୟତ୍ କର ସହିତଃ ସପ୍ରତିହାରଃ ସର୍ବବାଧା ବର୍ଜ୍ଜିତଃ ସର୍ବୋପରି କରଦାନ ସହିତଃ; ତ୍ରିଭୁକ୍ତିମଣ୍ଡଳୀୟ ପଲଶ ଗ୍ରାମ ବିନିର୍ଗତାୟ ଗାର୍ଗ ଗୋତ୍ରାୟ ତ୍ର୍ୟର୍ଷୟପ୍ରବରାୟ ରଗ୍ବେଦାଧ୍ୟାୟିନେ ଭଟପୁତ୍ର ଚଟେଶ୍ୱର ପୌତ୍ରାୟ ଭଟପୁତ୍ର ବାମନପୁତ୍ରାୟ ଭଟ୍ଟପୁତ୍ର ଶ୍ରୀ ଶଙ୍କର ଶର୍ମଣେ ସଲିଳ ଧାରପୁରଃସରଂ ଆଚନ୍ଦ୍ରାର୍କ କ୍ଷିତିସମକାଳୋପଭୋଗାର୍ଥଂ ମାତାପିତ୍ରୋରାତ୍ମନଶ୍ଚ ପୁଣ୍ୟାୟ ସିଦ୍ଧିବୃଦ୍ଧୟେ ତାମ୍ରଶାସନେନ ସମ୍ପ୍ରଦତ୍ତ ।

ଐରାବତ ମଣ୍ଡଳ ସଂସରବ ଖଣ୍ଡିୟୋ ଲୋଭାକରଡ଼ା ଗ୍ରାମଶ୍ଚ ତସ୍ୟ ସୋଦରଭ୍ରାତୃ ଶ୍ରୀ ବଳଭଦ୍ର ଶର୍ମଣେ ଏବଂ ସମ୍ପ୍ରଦତ୍ତଃ । ଇତ୍ୟ-ବଗତ୍ୟ ସମୁଚିତ କରଭୋଗଭାଗାଦିକଂ ଉପନୟଦ୍ଭିଃ ସୁଖେନ ପ୍ରତିବସ୍ତବ୍ୟଂ ।ସଦ୍ଭିରିୟ- ମସ୍ମଦୀୟା ଧର୍ମଗୌରବା ଦସ୍ମଦନୁରୋଧାଦ୍ବାସ୍ୱଦତ୍ତିରିବ ଅନୁପାଳନୀୟା । ତଥାଗ୍ରୋକ୍ତଂ ଧର୍ମଶାସ୍ତ୍ରେ ବହିଭି ର୍ବସୁଧାଦତ୍ତା ରାଜଭିଃ ସଗରାଦିଭିଃ ।

* ଯସ୍ୟ ଯସ୍ୟ ଯଦା ଭୂମି ସ୍ତସ୍ୟ ତସ୍ୟ ତଦା ଫଳଂ । ମାଭୂଦ ଫଳ ଶଙ୍କାବଃ ।

* ସ୍ୱଦତ୍ତ ଫଳମାନନ୍ତ୍ୟଂ ପରଦତ୍ତାନୁପାଳନେ । ଷଷ୍ଟୀ ବର୍ଷ ସହସ୍ରାଣି ସ୍ୱର୍ଗେ ମୋଦତି ଭୂମିଦଃ ।

* ଆକ୍ଷିପ୍ତା ଗ୍ଧନ୍ନମନ୍ତା ଚ ଦ୍ୱୌତୌନରକଗାମିନୌ ।

* ଅଗ୍ନେରପତ୍ୟଂ ପ୍ରଥମଂ ସୁବର୍ଣ୍ଣଂ; ଭୂର୍ବୈଷ୍ଣବୀ ସୂର୍ଯ୍ୟସୁତାଶ୍ଚ ଗାବଃ ଯଃ କାଞ୍ଚନଂ ଗାଞ୍ଚ ମହୀଂ ଚ ଦଦ୍ୟାତ୍, ଦତ୍ତାସ୍ତ୍ରୟସ୍ତେନ ଭବନ୍ତି ଲୋକାଃ ।

* ଆସ୍ଫୋଟନ୍ତି ପିତରେ ବଲ୍‌ଗୟନ୍ତି ପିତାମହାଃ । ଭୂମିଦାତା କୁଳେ ଜାତଃ ସନସ୍ତାତା ଭବିଷ୍ୟତି ।

* ଭୂମିଂଯଃ ପ୍ରତିଗୃହ୍ଣାତି ଯଶ୍ଚଭୂମିଂ ପ୍ରୟଚ୍ଛତି । ଉଭୌ ତୌ ପୁଣ୍ୟକର୍ମାଣୌ ନିୟତଂ ସ୍ୱର୍ଗ ଗାମିନୌ ।

* ତଡ଼ାଗାନାଂ ସହସ୍ରେଣ ବାଜପେୟ ଶତେନ ଚ । ଗବାଂ କୋଟି ପ୍ରଦାନେନ ଭୂମିହର୍ତ୍ତା ନ ଶୁଦ୍ଧ୍ୟତି ।

* ସ୍ୱଦତ୍ତାଂ ପରଦତ୍ତାଂ ବା ଯୋ ହରେଦ୍ଧ ବସୁନ୍ଧରାଂ । ସ ବିଷ୍ଠାୟାଂ କୃମିର୍ଭୂତ୍ୱା ପିତୃଭିଃ ସହ ପଚ୍ୟତେ ।

* ଗାମେକାଂ ସୁବର୍ଣ୍ଣମେକଂ ଭୂମେରପ୍ୟର୍ଦ୍ଧମଙ୍ଗୁଳଂ । ହରନ୍ନର କମାପ୍ନୋତି ଯାବଦା ଭୂତ ସଂପ୍ଲବମ୍ ।

* ହରତି ହାରୟେଦ୍ୟସ୍ତୁ ମନ୍ଦବୁଦ୍ଧି ସ୍ତମୋବୃତଃ । ସବଦ୍ଧୋ ଦାରୁଣୈଃ ପାଶୈସ୍ତୀର୍ଯ୍ୟଗ୍ୟୋନିଂ ଚ ଗଚ୍ଛତି ।

* ସାମାନ୍ୟୋଽୟଂ ଧର୍ମସେତୁର୍ନୃପାଣାଂ ; କାଳେ କାଳେ ପାଳନୀୟୋ ଭବଦ୍ଭିଃ ।

* ସର୍ବା ନେତାନ୍ ଭାବିନଃ ପାର୍ଥିବେନ୍ଦ୍ରାନ୍ ; ଭୂୟୋ ଭୂୟୋ ଯାଚତେ ରାମଭଦ୍ରଃ ।

* ଇତି କମଳ ଦଳାମ୍ବୁ ବିନ୍ଦୁଲୋଳଂ, ଶ୍ରିୟମନୁଚିନ୍ତ୍ୟ ମନୁଷ୍ୟ ଜୀବିତଞ୍ଚ ସକଳମିଦମୁଦାହୃତଞ୍ଚ ବୁଦ୍ଧ୍ୱା, ନହି ପୁରୁଷୈଃ ପରକୀର୍ତ୍ତୟୋ ବିଲୋପ୍ୟାଃ ।

୬

ଯତ୍କୀର୍ତ୍ତିଂ ଭୁବନ ତ୍ରୟସ୍ୟ କୁହରେ ଶଶ୍ୱନି ପୂରନ୍ନୟନ୍
ମନ୍ତୀଶୈଃ ସୁଚିର ପ୍ରମାଣରହିତାନ୍ କ୍ଷୌଣୀଭୁଜୋ ଭେଗିନଃ ।
ଯଦ୍ଦୋର୍ଦ୍ଦଣ୍ଡ ଭବ ପ୍ରତାପଶିଖିନୋ ନିସ୍ତ୍ରିଂଶ ଧୂମଛଟା,
ଦୂରସ୍ଥୋଽପି ପରହିତାତିନିରତାନ୍ ତାନେବ ନଂସ୍ୟାମ୍ୟହଂ ।

ଉତ୍କଳେ କୋଶଳେ ଦେଶେଶ ମହାସନ୍ଧି ବିଗ୍ରହୀ ।
ଅଶ୍ୱାଙ୍ଗଣଗଣାଧାରେ ରୁଦ୍ରଦତ୍ତ ଇତିଶ୍ରୁତଃ
ମହାକ୍ଷତ୍ର ବଳାଧ୍ୟକ୍ଷଃ ଶ୍ରୀମଦକ୍ଷଃ ସତାଂମତଃ ।
ଅସକୃଦଲିଖତ୍ତାମ୍ରଶାସନଂ ଶତ୍ରୁ ଶାସନଃ ।

ମହାରଜାଧିରଜ ପରମେଶ୍ୱର ଶ୍ରୀମଦୁଦ୍ୟୋତ କେଶରି ରଜ ଦେବସ୍ୟ ପ୍ରବର୍ଦ୍ଧମାନ ବିଜୟରଜ୍ୟେ ଚତୁର୍ଥେ ସମ୍ବତ୍ସରେ ମାର୍ଗବଦି ଦଶମ୍ୟାଂ ଯତ୍ରାଙ୍କେ ସମ୍ବତତ୍ ମାର୍ଗବଦି ୧୦ ସୁବର୍ଣ୍ଣବୀଥି ବିଜ୍ଞାନୀ ବାହେତ୍ତ୍ୱ ମଙ୍ଗାକାର୍ଭା-ମୁତ୍କୀର୍ଣ୍ଣମିଦଂ ॥

—×—

## ଶ୍ରୀମାନ୍ ଉଦ୍ୟୋତ କେଶରୀଙ୍କ ପ୍ରଦତ୍ତ ନିଫଳୀ ତାମ୍ର ଶାସନର ଓଡ଼ିଆ ଗଦ୍ୟାନୁବାଦ

୧ । ଜ୍ୟୋତ୍ସ୍ନା ଯଦ୍ୱାରା ଆନନ୍ଦପ୍ରଦ, କୁମୁଦିନୀ ବିକାସର ଏକମାତ୍ର କାରଣ, ଶିବଙ୍କର ମସ୍ତକ ରୂପକ ସୌଧରେ ବସତି ସ୍ଥାପନ କରିଥିବା ଅମୃତରଶ୍ମି ତାରଙ୍କ ଅନ୍ତଃପୁରନାୟକ, କନ୍ଦର୍ପର ବାଣରେ ଅଗ୍ନି ରୂପକୁ ଧାରଣ କରୁଥିବା, କ୍ଷୀରସମୁଦ୍ରସୁତ, ଅମୃତ କିରଣଯୁକ୍ତ ଚନ୍ଦ୍ରଦେବଙ୍କର ଜୟ ହେଉ ।

୨ । ସ୍ୱହସ୍ତରେ ନିବିଡ଼ ଅନ୍ଧକାର ଦ୍ୱାରା କଳଙ୍କିତ ଓ ନିଷ୍ପ୍ରଭ ଦିଗ୍‌ବଳୟକୁ ପରିଷ୍କୃତ କରିବାରେ ତତ୍ପର ଥିବା ଏହାଙ୍କର ପ୍ରଖ୍ୟାତ ଚନ୍ଦ୍ରବଂଶରେ ସମସ୍ତ ସଦ୍‌ଗୁଣରେ ପରିପୂର୍ଣ୍ଣ, କୁନ୍ଦ ପୁଷ୍ପ ପରି ନିଜର ଶୁଭ୍ରଯଶକୁ ବିସ୍ତାର କରିଥିବା ସେହି ରଜାମାନେ ଜନ୍ମ ହୋଇଥିଲେ ।

୩ । ଏହାପରେ ଜନମେଜୟ ରାଜା ହେଲେ ସେହି ଯଯାତିଙ୍କର ଅନୁଜ ଶ୍ରୀମାନ୍ ଭୀମରଥ କାଳକ୍ରମେ ଚକ୍ରବର୍ତ୍ତୀ ପଦ ଲାଭକଲେ । ସେ ଭରତଭୂମଣ୍ଡଳର ରାଜାମାନଙ୍କୁ ପରାଜିତ କରି ଚତୁର୍ଦ୍ଦିଗରେ ବିଜୟ ସ୍ତମ୍ଭଗୁଡ଼ିକୁ ପ୍ରୋତ୍‌ଥିତ କଲେ । ସେଗୁଡିକ ଶଲ୍ୟରୂପରେ ରାଜାମାନଙ୍କ ହୃଦୟକୁ ବିଦୀର୍ଣ୍ଣ କଲା । ଏହାଫଳରେ ସେ ସାର୍ବଭୌମ ରୂପେ ବିଦିତ ହେଲେ ।

୪ । ମନସ୍କାମନାର ଫଳସ୍ୱରୂପ ଚନ୍ଦ୍ରବଂଶର ଶୋଭବର୍ଦ୍ଧନକାରୀ ଅସ୍ତ୍ରଶସ୍ତ୍ର ବିଦ୍ୟାରେ ପାରଙ୍ଗମ, ଧର୍ମରଥ ନାମରେ ତାଙ୍କର ଏକ ପୁତ୍ରଥିଲେ । ସେମଧ୍ୟ ସମସ୍ତ ରାଜାମାନଙ୍କ ମଧ୍ୟରେ ମୁକୁଟ ମଣିତୁଲ୍ୟ ହୋଇ ଯଶସ୍ୱୀ ହୋଇଥିଲେ । ସେହି ଧର୍ମରଥ ଦିଗବିଜୟ ଯାତ୍ରା ଆରମ୍ଭ କରନ୍ତେ ତାଙ୍କ ସୈନ୍ୟବାହିନୀର ନିଜ ପାଦାଘାତ ଜନିତ ଧୂଳି ପଟଳ ଆକାଶକୁ ଆଛନ୍ନ କରିବା ପୂର୍ବରୁ ସମସ୍ତ ବିପକ୍ଷରାଜାମାନେ ବିଭିନ୍ନ ସ୍ଥାନରେ ଭୟରେ ଆତ୍ମଗୋପନ କଲେ ।

୫ । ସେହି ରାଜା ଉତ୍ତରରେ ହିମାଳୟଠାରୁ ଆରମ୍ଭ କରି ଦକ୍ଷିଣରେ ସେତୁବନ୍ଧ ପର୍ଯ୍ୟନ୍ତ ଏବଂ ପୂର୍ବ ସମୁଦ୍ରଠାରୁ ପଶ୍ଚିମଘାଟ ପର୍ବତମାଳା ପର୍ଯ୍ୟନ୍ତ ଜୟ କରିଥିଲେ । ତାଙ୍କର ବଳଦର୍ପରେ ପରାଜିତ ହୋଇଥିବା ବିପକ୍ଷରାଜା-ମାନଙ୍କ ମହିଷୀଗଣ ଭୟରେ ଯେଉଁ ଦୀର୍ଘ ଶ୍ୱାସ ରୂପ ଝଞ୍ଜାପବନ ତ୍ୟାଗ-କଲେ, ତାହା ବାଉଁଶରନ୍ଧ୍ର ର ପ୍ରବେଶ କରି ବେଦ କରିବା ଛଳରେ ତାଙ୍କର ଯଶୋଗାନ କଲଭଳି ପ୍ରତୀୟମାନ ହେଲା ।

୬ । ଶିବଙ୍କ ପରି ମହାତେଜସ୍ୱୀ ସମସ୍ତ ରାଜାମାନଙ୍କ ମଧ୍ୟରେ ମଉଡ଼ମଣି ପୃଥିବୀର ଅଳଙ୍କାର ସ୍ୱରୂପ ଧର୍ମରଥଙ୍କ ଭ୍ରାତା ନହୁଷ ନାମକ ରାଜା ଅନୁରୂପ ଖ୍ୟାତି ସମ୍ପନ୍ନ ହୋଇଥିଲେ । ନିକ୍ଷେପ କରିଥିବା ଶରଗରୂପକ ଜିହ୍ୱା ବିଶିଷ୍ଟ ତାଙ୍କର ଭୁଜରୂପୀ ସର୍ପ ପରିପନ୍ଥୀ ରାଜା ସୈନ୍ୟମାନଙ୍କର କଣ୍ଠାଗ୍ରତ ପବନକୁ ପାନକରୁଥିଲା । (ଅର୍ଥାତ୍ ସେ ନିଜ ଭୁଜବଳରେ ସମସ୍ତ ବିପକ୍ଷରାଜ ସୈନ୍ୟମାନଙ୍କୁ ବିନାଶ କରିଥିଲେ ।)

୭ । ଏଠାରେ ଉନ୍ମତ୍ତ ଗଜଯୂଥ ରହିବା ଫଳରେ ସିଂହମାନେ ମଧ୍ୟ ସ୍ଥବିରତ୍ୱ ପ୍ରାପ୍ତ ହେଲଭଳି ରହିଅଛନ୍ତି । ଏଠାରେ ଥିବା ଗିରିକନ୍ଦର ଗୁଡ଼ିକରେ କ୍ରୂରସର୍ପମାନେ ରହିଅଛନ୍ତି । ଏହି କଥାକୁ ଶତ୍ରୁପକ୍ଷୀୟ ଲଳନାମାନଙ୍କୁ

ଆଶ୍ରୟରୋଧ କରିଥିବା ବୃଦ୍ଧ ଶବରୀଗଣ କହିବା ଫଳରେ ସେମାନେ ଏବେ ମଧ୍ୟ ଭୟରେ ବନଭୂମିରେ ସଞ୍ଚାର କରୁଛନ୍ତି ।

୮ । ସମସ୍ତ ଶତ୍ରୁପକ୍ଷୀୟ ରାଜାମାନଙ୍କୁ ପଦାନତ କରିଥିବା, ପାଦପଦ୍ମର ପ୍ରଭାବରେ ଶତସଂଖ୍ୟକ ସୂର୍ଯ୍ୟଙ୍କୁ ଉପହାସ କରୁଥିବା, ମହାବିଦ୍ୱାନ୍, ମଧୁସୂଦନ ନାରାୟଣଙ୍କର ପ୍ରତିନିଧିଭୂତ ବିଶ୍ୱବିଜୟୀ ଯଯାତି ନାମରେ ତାଙ୍କର ଜଣେ ସହୋଦର ଥିଲେ ।

୯ । ସେହି ଯଯାତିଙ୍କର ଭୁଜଦ୍ୱୟ ସାମାନ୍ତରାଜା ଓ ସୈନ୍ୟମାନଙ୍କ ଦ୍ୱାରା ସୁରକ୍ଷିତ ହୋଇଥିବା ଉତ୍କଳ ଓ କୋଶଳ ନାମକ ରାଷ୍ଟ୍ରଦ୍ୱୟକୁ ଅକଣ୍ଟକ ଶାସନକରିବାରେ ସମର୍ଥ ହୋଇଥିଲା ।

୧୦ । ସ୍ୱୀୟ ପୁଣ୍ୟ ଫଳରେ ଲୋକମାନଙ୍କ ନୟନକୁ ସଫଳ କରିଥିବା, ସମାଜ ମଙ୍ଗଳ କାର୍ଯ୍ୟରେ ଚରମ ସୀମାରେ ପହଞ୍ଚିଥିବା ଶ୍ରୀମାନ୍ ଉଦ୍ୟୋତ କେଶରୀ ନାମକ ଏକପୁତ୍ର ଜନ୍ମହୋଇ କାଳକ୍ରମେ ରାଜା ହୋଇଥିଲେ ।

୧୧ । ଭକ୍ତି ସହକାରେ ଦୂରରୁ ନତମସ୍ତକ ହେବାଫଳରେ ନିଜ ମସ୍ତକରୁ ମଲ୍ଲିକା କୁସୁମ ସମୂହକୁ ଭୂପତିତ କରୁଥିବା ରାଜାମାନେ ନମସ୍କାର କରିବା ଛଳରେ ସେହି ଉଦ୍ୟୋତକେଶରୀଙ୍କର କୀର୍ତ୍ତିରାଜକୁ ସମ୍ମାନ ପ୍ରଦର୍ଶନ କରୁଥିଲେ ।

## ସ୍ୱସ୍ତି ପ୍ରଶସ୍ତି

ପରମ ମହାମହେଶ୍ୱର, ପରମଭଟ୍ଟାରକ, ମହାରାଜାଧିରାଜ ପରମେଶ୍ୱର ଚନ୍ଦ୍ରବଂଶାବତଂସ ତ୍ରିକଳିଙ୍ଗାଧିପତି ଶ୍ରୀ ମହାଶିବଗୁପ୍ତ ରାଜଦେବଙ୍କ ପାଦଧ୍ୟାନ-ଶ୍ରୀ ମହାଭବଗୁପ୍ତ ରାଜଦେବଙ୍କ ମଙ୍ଗଳ ହେଉ । ଉତ୍ତରଦେଶୀୟ ଐରାବତମଣ୍ଡଳ ହସରାବଖଣ୍ଡିୟ କୋଣ୍ଡାଲଣ୍ଡା ଗ୍ରାମରେ ଥିବା ଶ୍ରେଣିୟ ବ୍ରାହ୍ମଣମାନଙ୍କର ପୂଜ୍ୟ ପାର୍ଶ୍ୱଚର ନିଯୁକ୍ତାଧିକାରୀ ଦଣ୍ଡଧାରୀ, ବେତଧାରୀ, ଅବରୋଧଜନ ରାଣୀଗଣ ରାଜପୁତ୍ର ରାଜବଲ୍ଲଭ ଭୋଗୀଜନ ପ୍ରମୁଖ ଲୋକମାନଙ୍କୁ ଜଣାଇ ଦିଆଯାଉଅଛି । ଆପଣମାନେ ଜାଣିରଖନ୍ତୁ ଯେ—ଆମେ ଗର୍ତ୍ତସହିତ ମହାନଦୀର ଅର୍ଦ୍ଧସ୍ରୋତ ସମେତ ଚତୁଃସୀମାବର୍ଜ୍ଜିତ ଶିଶୁ ମହୁଲ ତାଳ ପ୍ରଭୃତି ବିଭିନ୍ନ ବୃକ୍ଷରେ

ପରିପୂର୍ଣ୍ଣ, ହସ୍ତୀଦଣ୍ଡ ବରବଳାବଣ୍ଡ ଅନ୍ଧାସୁଆ, ପ୍ରତ୍ୟନ୍ଧାରୁଆ ଦାନ କରଯାଇ ନ ଥିବା, ପାଦଚଳଜୀବ, ଅହିଦଣ୍ଡ ଅନ୍ତର୍ବର୍ତ୍ତୀ ବନ୍ଧଦଣ୍ଡ, ବିଜୟ ବନ୍ଧାପନା ଓ ମାର୍ଗ ଦଣ୍ଡ ପ୍ରଭୃତି ଭବିଷ୍ୟତ୍ କର ସହିତ ଏହି ଗ୍ରାମଟିକୁ ଗ୍ରାମରକ୍ଷୀ ସହିତ ସମସ୍ତ ବାଧା ବିହୀନ ସମସ୍ତଙ୍କର କର ଆଦାୟ କରିବା ଅନୁମତି ସହିତ ତ୍ରିଭୂର୍ଣ୍ଣି ମଣ୍ଡଳୀୟ ପଲଶ ଗ୍ରାମବାସୀ ଗାର୍ଗ୍ୟଗୋତ୍ରାଦ୍ଭବ ତ୍ରିଋଷିପ୍ରବର ଋଗବେଦୀୟ ଭଟ୍ଟପୁତ୍ର ତେଜଶ୍ୱରଙ୍କ ନାତି ଭଟ୍ଟପୁତ୍ର ବାମନଙ୍କ ପୁତ୍ର ଭଟ୍ଟପୁତ୍ର ଶ୍ରୀ ଶଙ୍କର ଶର୍ମାଙ୍କୁ ଜଳଧାର ସହିତ ଯାବତ୍ ଚନ୍ଦ୍ରାର୍କ ପୃଥିବୀ ଉପଭୋଗ କରିବା ପାଇଁ ମାତା ପିତା ଓ ନିଜର ପୁଣ୍ୟାୟୁ ବୃଦ୍ଧି ନିମିତ୍ତ ତାମ୍ର ଶାସନ ସହିତ ପ୍ରଦାନ କଲୁ ।

ଆମେ ଐରବତ ମଣ୍ଡଳ ଫସଗବଶଣ୍ଡିୟ ଲେଖ କରଦ୍ୱା ଗ୍ରାମଟିକୁ ତାଙ୍କର ସହୋଦର ଭଇ ଶ୍ରୀ ବଳଭଦ୍ର ଶର୍ମାଙ୍କୁ ଏହିପରି ପ୍ରଦାନ କଲୁ । ଏହାଜାଣି ଉଚିତ କର ଭୋଗଭଗ ପ୍ରଭୃତି ଗ୍ରହଣ କରି ଆପଣମାନେ ସୁଖରେ ବାସ କରିବେ ।

ଆମର ଏହି ସାତ୍ତ୍ୱିକ ଦାନ ଧର୍ମ ଗୌରବହେତୁରୁ କିମ୍ବା ଆମର ଅନୁରୋଧ ହେତୁରୁ ନିଜର ସମ୍ପତ୍ତି ପରି ରକ୍ଷା କରିବେ । ଧର୍ମଶାସ୍ତ୍ରରେ କୁହା-ଯାଇଛି ଯେ ସଗର ପ୍ରଭୃତି ବହୁତ ରଜା ଭୂମିଦାନ କରିଥିଲେ ।

ପୃଷ୍ଠା—୫

୧ । ଭୂମି ଯେତେବେଳେ ଯାହାର ଅଧୀନ, ସେ ସେତେବେଳେ ତାହାର ଅଧିକାରୀ ହୋଇଥାଏ, ଆପଣମାନଙ୍କର କଦାପି ଫଳାଭବ ଶଙ୍କାହେବା ଉଚିତ ନୁହେଁ ।

୨ । ନିଜ ଧନକୁ ଦାନକଲେ ଅନନ୍ତ ପୁଣ୍ୟ ମିଳିଥାଏ । ଅନ୍ୟଦାନକୁ ସ୍ୱୀକାର କରିବାରେ ମଧ୍ୟ ପୁଣ୍ୟ ହୋଇଥାଏ । ଏଣୁ ଭୂମିଦାନକାରୀ ୬୦ ହଜାର ବର୍ଷ ପର୍ଯ୍ୟନ୍ତ ସ୍ୱର୍ଗ ସୁଖ ପାଇଥାଏ ।

୩ । ଯେ ପର ଜମି ଅପହରଣ କରେ ଏବଂ ତାକୁ ଯେ ସମର୍ଥନ କରେ ସେ ଦୁହେଁ ନରକଗାମୀ ହୁଅନ୍ତି ।

୪ । ସୁବର୍ଣ୍ଣକୁ ଅଗ୍ନି ଭବରେ ଭୂମିକୁ ବିଷ୍ଣୁ ଭବରେ ଗୋରୁମାନଙ୍କୁ ସୂର୍ଯ୍ୟସୁତ ଭବରେ କଳ୍ପନା କରାଯାଇଛି ; ଏଗୁଡ଼ିକୁ ଯେ ଦାନକରେ, ତାକୁ ଦତାତ୍ରୟ କୁହାଯାଏ ।

୫ । ତାଙ୍କର ପିତୃପୁରୁଷ ଗର୍ବିତ ହୁଅନ୍ତି ; ପିତାମହାଦିମାନେ ଆନନ୍ଦରେ ନୃତ୍ୟ କରନ୍ତି ; ଏବଂ ଯେ ଭୂମିଦାନକୂଳରେ ଜାତହୁଏ, ସେ ଆମ୍ଭମାନଙ୍କୁ ରକ୍ଷା କରେ ।

୬ । ଯେ ଭୂମିଗ୍ରହଣ କରେ ଏବଂ ଯେ ଭୂମି ଦାନକରେ, ସେହି ପୁଣ୍ୟକର୍ମା ଦୁହେଁ ନିଶ୍ଚୟ ସ୍ୱର୍ଗଲଭ କରନ୍ତି ।

୭ । ଏକହଜାର ପୁଷ୍କରିଣୀ ଦାନ, ଶତବାର ବାଜପେୟ ଯଜ୍ଞକରଣ ଓ କୋଟି ସଂଖ୍ୟକ ଗୋଦାନ ଦ୍ୱାରା ଭୂମି ଅପହରଣକାରୀର ପାପ କ୍ଷୟ ହୁଏନାହିଁ ।

୮ । ଯେଉଁ ବ୍ୟକ୍ତି ସ୍ୱଦତ୍ତ ବା ପରଦତ୍ତ ଭୂମି ଅପହରଣ କରେ ସେ ପିତୃପୁରୁଷମାନଙ୍କ ସହିତ ବିଷ୍ଠାରେ କୃମିକୀଟ ହୋଇ ଦରଧୀଭୂତ ହୁଏ ।

୯ । ଏକମାତ୍ର ଧେନୁ ଓ ଅର୍ଦ୍ଧାଙ୍ଗୁଳ ପରିମାଣର ଭୂମି ହରଣ କରିଥିବା ବ୍ୟକ୍ତି ପ୍ରଳୟ ପର୍ଯ୍ୟନ୍ତ ନରକ ଯନ୍ତ୍ରଣା ଭୋଗ କରେ ।

୧୦ । ମନ୍ଦବୁଦ୍ଧି ରୂପକ ଅଜ୍ଞାନର ବଶବର୍ତ୍ତୀ ହୋଇ ଯେଉଁ ବ୍ୟକ୍ତି ଭୂମି ହରଣ କରେ ବା ହରଣ କରାଏ, ସେ ଦାରୁଣ ପାପର ଅଧିକାରୀ ହୁଏ ଏବଂ ପଶୁ ଯୋନିରେ ଜନ୍ମଲଭ କରେ ।

୧୧ । ରଜାମାନଙ୍କର ଏହା ସାଧାରଣ ଧର୍ମନୀତି ଅଟେ । ଏଣୁ ଆପଣମାନେ ସର୍ବଦା ଏହାକୁ ପାଳନ କରିବେ । ରାମଚନ୍ଦ୍ର ଏହି କଥାକୁ ସମସ୍ତ ଭବିଷ୍ୟତ ସମ୍ରାଟମାନଙ୍କୁ ବାରମ୍ବାର କହିଅଛନ୍ତି ।

୧୨ । ଧନ ଓ ମନୁଷ୍ୟର ଜୀବନକୁ ଏହିପରି ପଦ୍ମପତ୍ରସ୍ଥିତ ଜଳବିନ୍ଦୁ ପରି ଚଞ୍ଚଳ ମନେ କରି କୁହାଯାଇଥିବା ଏହି ସମସ୍ତ ଉଦାହରଣକୁ ଜାଣି ମନୁଷ୍ୟ ପରକୀର୍ତ୍ତିକୁ ବିଲୋପ କରିବା ଉଚିତ ନୁହେଁ ।

୧୩ । ଯାହାଙ୍କର କୀର୍ତ୍ତି ତ୍ରିଭୁବନ ମଧ୍ୟରେ ନିରନ୍ତର ବ୍ୟାପ୍ତ ରହିଛି, ମନ୍ତ୍ରୀମାନଙ୍କ ଦ୍ୱାରା ମଧ୍ୟ ଯାହାଙ୍କୁ ପ୍ରଣାମ କରୁଥିବା ସେହି ପୃଥିବୀପାଳକ ସୁଶାଶକ, ଯାହାର ବାହୁଦଣ୍ଡ ଜାତ ପ୍ରତାପରୂପକ ଅଗ୍ନି ଓ ବାଣର

ଧୂମକୁଣ୍ଡଳୀ ପରିବ୍ୟାପ୍ତ ରହିଥିଲା, ସେହି ଶତ୍ରୁ ଅହିତକାରୀ ରାଜାମାନଙ୍କୁ ମୁଁ ଦୂରରେ ରହି ପ୍ରଣାମ କରୁଛି ।

{ ୧୪ । କୋଶଳ ଉତ୍କଳ ଦେଶରେ ମହାସନ୍ଧିବିଗ୍ରହୀ (ଜ୍ୟୋତିଃଶାସ୍ତ୍ର-
* ୧୫ । ପାରଙ୍ଗମ) ଅଶ୍ୱଶାଳାସମୂହରକ୍ଷକ ରୁଦ୍ରଦତ୍ତ ସର୍ବତ୍ର ପ୍ରସିଦ୍ଧ ଥିଲେ । ସେ ସୈନ୍ୟମାନଙ୍କର ଅଧ୍ୟକ୍ଷ, ସାଧୁମାନଙ୍କ ମତରେ ମହାବଳିଷ୍ଠ ଓ ଶତ୍ରୁସଂହାରକ ଥିଲେ । ସେ ତାମ୍ର ଶାସନକୁ ବହୁବାର ଲେଖିଥିଲେ ।

(ଗେରରକେଲର ଜନୈକ ପଣ୍ଡିତଙ୍କ ଦ୍ୱାରା ଅନୁବାଦ କରଯାଇଅଛି ।)

---

୧୫* "ଏହି ଦାନପତ୍ର ଶ୍ରୀ ଉଦ୍ୟୋତ କେଶରୀ ରାଜଦେବଙ୍କ ଚତୁର୍ଥ ବର୍ଷ ମାର୍ଗଶିର ମାସ–କୃଷ୍ଣ ପକ୍ଷ–ଦଶମୀ ତୀଥିରେ ଉତ୍କଳ ଓ କୋଶଳ ଉଭୟ ଦେଶର ମହାସନ୍ଧି ବିଗ୍ରହି ରୁଦ୍ରଦତ୍ତଙ୍କ ଠାରୁ ଅନୁମତି ପାଇ ମହାକ୍ଷପଟଳାଧ୍ୟକ୍ଷ ଶ୍ରୀ ମଦକ୍ଷଙ୍କ ଦ୍ୱାରା ଲିଖିତ ହେଲା । ତାହା ସ୍ୱର୍ଣ୍ଣାକାର ବିଜ୍ଞାନୀ ବାହେରୁ ଏବଂ ମଙ୍ଗାକାଙ୍କ ଦ୍ୱାରା ଖୋଦିତ ହେଲା ।"

ଓଡ଼ିଶା ଇତିହାସ ଅଧ୍ୟାୟ–ଛପନ
ଡକ୍ଟର ସତ୍ୟନାରାୟଣ ରାଜଗୁରୁ

ଟୀକା :

*Cond No. (80) J.B.O.R.S.: Vo I X VII, pt–i (1930-31); pp–1-24 ff.
Ins, Qr., Vol. IV, pp 225–24 ff.

—x—

ସାହାଯ୍ୟକାରୀଙ୍କ ଠିକଣା :—

ନାଗରୀ ସାଂସ୍କୃତିକ ଅନୁସନ୍ଧାନକାରୀ ସମିତି "ନାଗର" ଗ୍ରନ୍ଥ ମୁଦ୍ରଣରେ ମୁଖ୍ୟାଂଶ ଗ୍ରହଣ କରିଥିବା ଭାଇ ଭଉଣୀମାନଙ୍କ ସ୍ଥାୟୀ ଠିକଣା ନିମ୍ନରେ ପ୍ରକାଶ କରି, ସେମାନଙ୍କ ସହିତ ସମସ୍ତ ସଂସ୍କୃତିପ୍ରେମୀ ଜନ-ସାଧାରଣଙ୍କୁ କୃତଜ୍ଞତା ଅର୍ପଣ କରୁଅଛି ।

| ନାମ | ଗ୍ରାମ | ପୋ:ଅ: | ଜିଲ୍ଲା |
|---|---|---|---|
| ୧—ସର୍ବଶ୍ରୀ ଦେବାନନ୍ଦ ଅମାତ (ପୂର୍ବତନ ଏମ୍.ପି.) | ବଲ୍ଲଣି | ବଲ୍ଲଣି | ସୁନ୍ଦରଗଡ |
| ୨—„ ଫାସିଆର ଆଗ୍ରୱାଲ | ଜବାଘାଟ | ଜବାଘାଟ | „ |
| ୩—„ ଆଖଣ୍ଡଳମଣି ପଣ୍ଡା | „ | „ | „ |
| ୪—„ ଦାଶରଥି ଗଜ୍ | ବଲ୍ଲଣି | ବଲ୍ଲଣି | „ |
| ୫—„ ଉଦୟ ପ୍ରଧାନ | ବାଙ୍କିଆ | ରାଉରକେଲା | „ |
| ୬—„ ଭୋଳାନାଥ କଂସାରୀ, | ଝିରପାଣି କଲୋନୀ | ରାଉରକେଲା—୨ | „ |
| ୭—„ ପ୍ୟାରୀଲାଲ ସାହୁ | „ „ | „ | „ |
| ୮—„ ତ୍ରିନାଥ ପଣ୍ଡା | ଟାଙ୍ଗିସର | ଟାଙ୍ଗିସର | „ |
| ୯—„ ଇନ୍ଦ୍ରମଣି ପ୍ରଧାନ | ହମିରପୁର | ରାଉରକେଲା-୩ | „ |
| ୧୦—„ ସାଧୁଚରଣ ବେହେରା | „ | „ | „ |
| ୧୧—„ କିଶୋର ଚନ୍ଦ୍ର କୁଅଁର | „ | „ | „ |
| ୧୨—„ ବିଦେଶୀ ଦେହୁରୀ | „ | „ | „ |
| ୧୩—„ ଫକୀର ମୋହନ ନାୟକ | ସେରମୋର୍ଡା | ଲହଣ୍ଡା | „ |
| ୧୪—ଶ୍ରୀମତୀ ସରୋଜିନୀ ପଣ୍ଡା ଘର ବି—୧୨୦, ସେକ୍ଟର—୧୮ | | ରାଉରକେଲା | „ |
| ୧୫— „ ଭରତୀ ପ୍ରଧାନ | କୁମ୍ଭାରୀ | ବରପାଲି | ସମ୍ବଲପୁର |
| ୧୬— „ ଶାନ୍ତିମତୀ ବେହେରା | ସାବରଙ୍ଗ | ସାବରଙ୍ଗ | ବାଲେଶ୍ୱର |
| ୧୭— „ ସବିତା ରାଣୀ ବେହେରା (ନାରୀକବି) | ରମ୍ଭାଗିରିଆ | ବର୍ତ୍ତନା | „ |
| ୧୮—ଶ୍ରୀ କାର୍ତ୍ତିକ ଚନ୍ଦ୍ର ପରମାଣିକ | ହରିପୁର | ଦେଉଳାହାଟ | „ |
| ୧୯—ଶ୍ରୀ ନିତ୍ୟାନନ୍ଦ ନାୟକ | ସୋଧପାଟଣା | ଦୋବଲ | „ |
| ୨୦—ଶ୍ରୀ ରମେଶ ଚନ୍ଦ୍ର ସେନାପତି | ମାଣିକ ସିମୁଳିଆ | ଜଗାଇ | „ |
| ୨୧—ଶ୍ରୀ ଗୋଲପ ଚନ୍ଦ ମହାନ୍ତ | କେନ୍ଦୁଆ | ବଡ଼କେଦାର | ମୟୂରଭଞ୍ଜ |
| ୨୨—ଶ୍ରୀ ଭସ୍କର ଶତପଥୀ | ପରମାନନ୍ଦପୁର | ସେରଗଡ଼ | ଗଞ୍ଜାମ |
| ୨୩—ଶ୍ରୀ ତ୍ରିନାଥ ପ୍ରଧାନ | ବେଣିପଲ୍ଲୀ | ବେଣିପଲ୍ଲୀ | „ |
| ୨୪—ଶ୍ରୀ କୃଷ୍ଣ ପ୍ରଧାନ | ଡାକରଡ଼ା | ଡାକରଡ଼ା | „ |
| ୨୫—ଶ୍ରୀ ଉଦୟନାଥ ସ୍ୱାଇଁ | କଲ୍ୟାଣପୁର | ଘୁମୁସର | „ |

( √ଉଣେଇଶି )

| ନାମ | ଗ୍ରାମ | ପୋ:ଅ: | ଜିଲ୍ଲା |
|---|---|---|---|
| ୨୬—ଶ୍ରୀ ଲକ୍ଷ୍ମଣ ପଣ୍ଡା | ମରଦାବାଡ଼ି | ଗୋହିରିଆ ପଡ଼ା | ପୁରୀ |
| ୨୭—ଶ୍ରୀ ଦୀଲିପ ରାୟ | ସୁସୁଆ | ଇଶ୍ୱରପୁର | କଟକ |
| ୨୮—ଶ୍ରୀ ପହଲି ସ୍ୱାଇଁ | ଭୁକାଞ୍ଜି | ମୁଣ୍ଡଳି | „ |
| ୨୯—ଶ୍ରୀ ଅକ୍ଷୟ କୁମାର ରାଉତ | ଜୟକୃଷ୍ଣପୁର | ଯଦୁପୁର | „ |
| ୩୦—ଶ୍ରୀ ଗୋପବନ୍ଧୁ ଆଗ୍ରର୍ଯ୍ୟ | ପାଟଣା | ବେଣ୍ଟକାର | „ |
| ୩୧—ଶ୍ରୀ ଅନାଦି ଚରଣ ସାହୁ | କୁରଢ଼ | କୁରଢ଼ | „ |
| ୩୨—ଶ୍ରୀ ଅନିଲ କୁମାର ଦାଶ | ସପନପୁର | ଶିଶୁଆ | „ |
| ୩୩—ଶ୍ରୀ ସର୍ବେଶ୍ୱର ସ୍ୱାଇଁ | ପଏଦା | ପଏଦା | „ |
| ୩୪—ଶ୍ରୀ ରମେଶ ଚନ୍ଦ୍ର ସାମନ୍ତରାୟ | ଅଢ଼ଙ୍ଗା | ଭଗବାନପୁର | „ |
| ୩୫—ଶ୍ରୀ ଦୋଳଗୋବିନ୍ଦ ପରିଡ଼ା | ଶାସନୀପଡ଼ା | ଶାସନୀପଡ଼ା | „ |
| ୩୬—ଶ୍ରୀ ବଂଶୀଧର ବାରିକ | ତରସ | ତରସ | „ |
| ୩୭—ଶ୍ରୀ ଶରତ ଚନ୍ଦ୍ର ମହାନ୍ତି | ଯାମପଡ଼ା | ଓସଙ୍ଗ | „ |
| ୩୮—ଶ୍ରୀ ମାୟାଧର ଦାସ | କାଣ୍ଡିଆ | କାଣ୍ଡିଆହାଟ | „ |
| ୩୯—ଶ୍ରୀ ଉମାକାନ୍ତ ବେହେରା | ପଦ୍ମପୁର | ଅଲଣାହାଟ | „ |
| ୪୦—ଶ୍ରୀ ପ୍ରଫୁଲ୍ଲ କୁମାର ସାହୁ | ସିଆରିଆ | କାନପୁର | „ |
| ୪୧—ଶ୍ରୀ ବୃନ୍ଦାବନ ନାୟକ | କଳସପୁର | ବ୍ରାହ୍ମଣଦା | „ |
| ୪୨—ଶ୍ରୀମତୀ ଉର୍ମିଳା ରାଉତରାୟ | କୁସୁକା | କୁସୁକା | „ |
| ୪୩—ଶ୍ରୀମତୀ ସୁନନ୍ଦା ମିଶ୍ର | ଡିହସାହିବିରି | ଡିହସାହିବିରି | „ |
| ୪୪—ଶ୍ରୀ ଗଦାଧର ପ୍ରଧାନ | ମେରମେରା | ଚକ୍ରଧରପୁର | ସିଂହଭୂମି |
| ୪୫—ଶ୍ରୀ ଅର୍ଦ୍ଧାନ୍ଦିକେଶ ଦାଶ | ଶାସନ | ଶାଳଗ୍ରାମ | ସିଂହଭୂମି |
| ୪୬—ଶ୍ରୀ ଭେଳେଶ୍ୱର ବେହେରା | ଖାଁଙ୍କର | ମହିମାଗାଦୀ | ଢେଙ୍କାନାଳ |
| ୪୭—ଶ୍ରୀ ବନମାଳୀ ଦାସ | ବେଲପାହାଡ଼ି | ମେଦିନୀପୁର | ପଶ୍ଚିମବଙ୍ଗ |

48—Sri Dev Brata Chatterjee Shantipur - West Bengal

49—,, Suria Rao, Koil Nagar C/171 Sundergarh Orissa

| ନାମ | ଗ୍ରାମ | ପୋ,ଅ. | ଜିଲ୍ଲା |
|---|---|---|---|
| 50. Sri Sohan Prasad | Jalma | Lupung, Hazaribag | Bihar |
| 51. Sri Bhola Prasad, | Saraya Bazar | Paro, Murzafferpur | ,, |
| 52. Sri Kapil Dev | Gharihudi | Vawankal, Gajipur | Utter Pradesh |
| 53. Sri Harihar Panda | Bateswar | | Baleswar |
| 54. Sri Gouri Tatua | Raghunathpur | Bhajpur, | Bihar |
| ୫୫–ଶ୍ରୀ ନୀରଞ୍ଜନ ତ୍ରିପାଠୀ | ନୂଆଗାଁ | ବାଲିସାହି | କଟକ |
| ୫୬–ଶ୍ରୀମତୀ ଜୟନ୍ତୀ କାକର | ମହମଦିଆ | ବଜାର | ,, |
| ୫୭–ଶ୍ରୀ ପ୍ରଫୁଲ୍ଲ କୁମାର ମିଶ୍ର | ଡାମର | କାନପୁର | ,, |
| ୫୮–ଶ୍ରୀମତୀ କମଳା ଶତପଥୀ | ଜଗଦା ପ୍ଲଟ ୬୪/୪୦୭ ଶକ୍ତିନଗର | ରାଉରକେଲା-୧୪ | ସୁନ୍ଦରଗଡ଼ |
| ୫୯– ,, ଶକୁନ୍ତଳା ଦାଶ | ଗୟଚକ୍ରଧରପୁର | | ପୁରୀ |
| ୬୦–ଶ୍ରୀ ଗୁରୁପଦ ମହାପାତ୍ର | ବଡ଼ମୁକ୍ରୁ | ଡ଼ୁମୁରଡ଼ିହି, ପୁରୁଲିଆ | ପଶ୍ଚିମବଙ୍ଗ |
| ୬୧–ଶ୍ରୀ ହୃଷିକେଶ ପଣ୍ଡା | ଝିରପାଣି କଲୋନୀ | ରାଉରକେଲା-୪୨ | ସୁନ୍ଦରଗଡ଼ |
| ୬୨–ଶ୍ରୀ ରଘୁନାଥ ମାଝୀ | ,, | ,, | ,, |
| ୬୩–ଶ୍ରୀ ଶିବ ନାରାୟଣ ପଣ୍ଡା | ଜବାଘାଟ | ଜବାଘାଟ | ସୁନ୍ଦରଗଡ଼ |

— × —

**DEBANANDA AMAT**
Ex-Member of Parliament
(Lok Sabha)

Vill/P.O.—Bolani
Dist.—Sundargarh

## MESSAGE

I have the pleasure to send herewith my heart-felt greetings and good wishes to Shri Gokul Chandra Mishra, the writer of 'SINGHABOLOKAN, I had the opportunity to go through the contents of the book and found to my entire satisfaction and belief that his book depicted the real and genuine history of this part of Western Orissa. Late Shri Nabin Kumar Sahoo, the then Vice–Chancellor of Sambalpur University also once told me to compile the history, pertaining to this area, basing on the tradition, culture, life sketches and social and political acti-vities of renouned and important personalities, belonging to "Bhuyan" society. I also do not feel ashamed to admit that I am not a good history writer. Thereare some history written by some other writers and most of the readers evenly divided over its contents. Important aspects of tribale registance in this hinter land of Western Orissa, assimilating themselves with the jungle culture, raised the banner of revolt, against injustice. with indomita-ble spirit. Noteworthy among them were Indepen-dant fighter Madri Kalo, Bipra Amat, and so many others. We have histories but there were no historians It is a strange considerance of event

that this area was called "ANDHARI MULAK" i,e. dark area. Everything was shrouded under cover of darkness. Since fudal days till today people were kept educationally backward, economically poor and socially degraded. "But it is after darkest just before the day breaks" It may well be compared with the historical darkness hours. The advent of efforts and labour undertaken by writer like Sri Gokul Chandra Mishra will dispel that historical darkness of this hinterland of Western Orissa.

From our side efforts are taken for collecting and compilling further historical datas Appeal is being made to the prominent Bhvyan leaders who are in possession of "TALPATRA POTHI" (history written on palm leaves Shri Gokul Chandra Mishra deserves sympathy and patronage of Bhuyan Leaders for writing further elaborate history of this area of Western Orissa

I wish him success in his endeavour to fulfil the objectives to set before it.

Balani
14.7.1986.

Sd/-Debananda Amat
Ex-Member of Parliament
and
President of Inter Provincial
Bhuyan Samaj (Bihar, M.P. & Orissa

## ସିଂହାବଲୋକନ ଉପରେ ଡକ୍ଟର ପ୍ରବୋଧ କୁମାର ମିଶ୍ରଙ୍କ ପତ୍ର :

C/23 ଜ୍ୟୋତିବିହାର
୭୬୮୦୧୯
୪।୪।୮୭

ଶ୍ରଦ୍ଧେୟ ଗୋକୁଳବାବୁ,

ଆପଣଙ୍କ ରଚିତ ସିଂହାବଲୋକନ' ପଢ଼ିଲି । ଭଲ ଲାଗିଲା । ଇତିହାସ ଓ କିମ୍ବଦନ୍ତୀକୁ ରୂପ ଦେବାକୁ ଯାଇ ଆପଣ ସତ୍ୟର ସନ୍ଧାନରେ ବହୁ ପ୍ରଯତ୍ନ ଓ ଅଧ୍ୟବସାୟ କରିଛନ୍ତି । ସେଥିପାଇଁ ମୋର ଆନ୍ତରିକ ଧନ୍ୟବାଦ ଓ ଅଭିନନ୍ଦନ ଗ୍ରହଣ କରିବେ । ଲାଇବ୍ରେରୀ ପାଇଁ ଉଦ୍ଦିଷ୍ଟ ବହିଟି ମୁଁ ଆଜି Librarianଙ୍କ ପାଖକୁ ପଠାଇ ଦେଇଛି । ଆମର Archives ପାଇଁ ଦେଇଥିବା ଦଲିଲ ଓ ରେକର୍ଡ଼ମାନ ଯତ୍ନରେ ସଂରକ୍ଷିତ ହେବାର ବ୍ୟବସ୍ଥା ମୁଁ କରିଛି । ସେଥିପାଇଁ ମଧ୍ୟ ଆପଣଙ୍କୁ ଧନ୍ୟବାଦ । ପରେ ପୁଣି ସାକ୍ଷାତରେ ଅନ୍ୟ କଥାବାର୍ତ୍ତା ଓ ଆଲୋଚନା କରିବା ।

ଶୁଭେଚ୍ଛା ସହ

ଡକ୍ଟର ପ୍ରବୋଧକୁମାର ମିଶ୍ର

Senders name and address :

To

Dr. P.K. Mishra, Ph D.D. Litt.
Professor of History
Sambalpur University,
Jyotivihar-768019 (Orissa)

Sri Gokul Chrndra Mishra.
D/294 Sector - 8
Rourkela - 9

# ସିଂହାବଲୋକନ

ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ରଙ୍କର ସିଂହାବଲୋକନ' କାବ୍ୟ ମୋତେ ଫେରାଇ ନେଇଛି ରାଉରକେଲା ଓ ତାହାର ବ୍ୟାପକ ପରିବେଶ ପଛରେ ଥିବା ଓଡ଼ିଶାର ଅନାବିଷ୍କୃତ ଇତିହାସ ପୂରକୁ, ଯାହା ସହିତ ଜଡ଼ିତ ଅଛି କେତେ ମନୋଜ୍ଞ କିମ୍ବଦନ୍ତୀ । ଶ୍ରୀ ମିଶ୍ର ରାଉରକେଲା ଇସ୍ପାତ କାରଖାନାର ଜଣେ ନିଷ୍ଠାପର କର୍ମୀଭାବରେ ଝଞ୍ଜାଳମୟ ଜୀବନଯାପନ କରୁଥିଲେ ହେଁ ଓ ତାଙ୍କ ଶିକ୍ଷାର ସୀମା ମାଟ୍ରିକୁଲେସନ୍ ପର୍ଯ୍ୟନ୍ତ ହୋଇଥିଲେ ହେଁ, ନିରସ କର୍ମ-ଜୀବନକୁ ସରସ କରିବା ପାଇଁ ଅବଶିଷ୍ଟ ସମୟକୁ କାବ୍ୟ କବିତା ରଚନାରେ ଅତିବାହିତ କରିଥାଆନ୍ତି । ତାଙ୍କର ପୂର୍ବରୁ ରଚିତ ଅର୍ଘ୍ୟକୁସୁମ' (୧୯୮୦) ପାଠପରେ ମୁଁ ଅନୁଭବ କରିଥିଲି ଯେ ସେ ଭଗବତ୍ ସେବା ଓ ଧ୍ୟାନରେ ନିଜକୁ ନିୟୋଜିତ କରିବାକୁ ଜୀବନର ଶ୍ରେଷ୍ଠ କର୍ତ୍ତବ୍ୟ ବୋଲି ମନେକରନ୍ତି ।

'ସିଂହାବଲୋକନ' କାବ୍ୟରେ କବିଙ୍କର କଳ୍ପନା ସୁଦୂରପ୍ରସାରୀ । ଶିଳ୍ପନଗରୀ ରାଉରକେଲା, ଯମସର ଦୁର୍ଗ, ନାଗରା ରାଜ୍ୟ, ବଣେଇ ଗଡ଼, ଗାଙ୍ଗପୁର ରାଜ୍ୟ ପଛରେ ସେ ଖୋଜିଛନ୍ତି ଓଡ଼ିଶାର ସୁଦୂର ଓ ଅଦୂର ଅତୀତର ଇତିହାସ, ଉଦ୍‌ଘାଟିତ କରିଛନ୍ତି ପଶ୍ଚିମ ଓଡ଼ିଶାର ମହତୀ ସଂସ୍କୃତି । 'ଯମସର' ଗଡ଼ ସହିତ କେଶରୀବଂଶର ଶ୍ୟାମଳ କେଶରୀ ଓ ପଦ୍ମକେଶରୀଙ୍କ ସମ୍ପର୍କଦର୍ଶାଇ ଏହି ଗଡ଼ରେ କେଶରୀବଂଶର ବାଇଶିଜଣ ନରପତି ରାଜପଣ କରିଥିଲେ ବୋଲି ସେ କଳ୍ପନା କରିଛନ୍ତି । ତେଣୁ ଏହି ଗଡ଼ର ନାମ କେଶରୀ ଗଡ଼ । କେଶରୀ ଗଡ଼, ନାଗରା ରାଜ୍ୟ, ବଣେଇ ଗଡ଼, ଗାଙ୍ଗପୁର ପ୍ରଭୃତିର ସରସ କାହାଣୀ ଉପସ୍ଥାପନ କରିବା ପାଇଁ ସେ ଲୋକମୁଖରୁ କେତେକ କିମ୍ବଦନ୍ତୀ ସଂଗ୍ରହ କରିଛନ୍ତି ଓ କେତେକ କିମ୍ବଦନ୍ତୀ ନିଜେ କଳ୍ପନା କରିଛନ୍ତି । ଯଥା :— ବୈଦ୍ୟନାଥ ବା ଧବଳେଶ୍ୱର ମହାଦେବ ଓ କାଳୀଗାଈ ବୃତ୍ତାନ୍ତ, ରାଜପୁତ୍ର ବୀର କେଶରୀଙ୍କର ପିପିଲିକା ଗର୍ତ୍ତରେ ପ୍ରବେଶ ଓ ମୃତ୍ୟୁ କାହାଣୀ, ନାଗରା ରାଜ୍ୟରେ ଲୋମ୍ବୁଗଡ଼ ରାଜପଣ ବୃତ୍ତାନ୍ତ, ହାତବନ୍ଧା' ଅଞ୍ଚଳର ,ହାତୀବନ୍ଧ' ନାମକରଣ ପଛରେ ଥିବା ସରସ କାହାଣୀ ପ୍ରଭୃତି । ଗାଙ୍ଗପୁର ରାଜ୍ୟର ଧ୍ରୁବରାଜ ଚନ୍ଦ୍ରଭାନୁ, କେଶରୀ ଗଡ଼ର ରାଜଜେମା କୁଞ୍ଜମଣି ଓ ବଣେଇ ଗଡ଼ର ରାଜଜେମା ପଦ୍ମାବତୀ ପ୍ରଭୃତିଙ୍କ ସମ୍ପର୍କରେ ଯେଉଁ କାହାଣୀ

କବି ଏ କାବ୍ୟରେ ପରିବେଷଣ କରିଛନ୍ତି, ତାହା ପଛରେ କେତେଦୂର ଐତିହାସିକ ସତ୍ୟତା ରହିଛି, ଅନୁସନ୍ଧାନର ବିଷୟ ।

ମୋଟ ଉପରେ କବିଙ୍କର ଅତୀତ ପ୍ରତି ମୋହ, ଉତ୍କଳୀୟ ସଂସ୍କୃତି ପ୍ରତି ପ୍ରୀତି ଓ କଳ୍ପନାପ୍ରବଣତାରୁ ହିଁ 'ସିଂହାବଲୋକନ' କାବ୍ୟର ସୃଷ୍ଟି । ବାସ୍ତବ ସ୍ଥାନର ବାସ୍ତବ ଇତିହାସ ପରିବେଷଣବେଳେ ଅନେକ ସ୍ଥଳରେ ଭାଷା ଗଦ୍ୟଧର୍ମୀ ହୋଇପଡ଼ିଛି, ହେବା ସ୍ୱାଭାବିକ । ମାତ୍ର କବି ଯେଉଁଠି ଓଡ଼ିଶାର ଗୌରବମୟ ଇତିହାସ ବର୍ଣ୍ଣନବେଳେ ଭାବପ୍ରବଣ ହୋଇ ଅତୀତ ସ୍ରୋତରେ ଭାସି ଯାଇଛନ୍ତି, ସେତେବେଳେ ଭାଷା ହୋଇପାରିଛି ମର୍ମସ୍ପର୍ଶିନୀ । ଅନେକ କ୍ଷେତ୍ରରେ ଭଗବତ୍ ବିଶ୍ୱାସ, ଧର୍ମ, ନ୍ୟାୟ, ପୁଣ୍ୟ ପ୍ରତି ସେ ଆଧୁନିକ ସମାଜର ମଣିଷମାନଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । ଆଧୁନିକ ସଭ୍ୟତା, ବିଜ୍ଞାନ, ଧନ, ଅହଂକାର ଓ କ୍ଷମତାରେ ପ୍ରମତ୍ତ ମାନବ ସମାଜକୁ ସେ କେତେକ କ୍ଷେତ୍ରରେ କଠୋର ସମାଲୋଚନା କରିଛନ୍ତି ।

ଶ୍ରୀଯୁକ୍ତ ମିଶ୍ରଙ୍କର କାବ୍ୟରଚନା ସ୍ୱତଃସ୍ଫୂର୍ତ୍ତ, ଅର୍ଥ ଲାଭ ପାଇଁ ନୁହେଁ, ଯଶ ଲାଭ ପାଇଁ ନୁହେଁ, ଆନନ୍ଦ ଲାଭ ପାଇଁ ସେ କାବ୍ୟ କବିତା ରଚନାକୁ ପ୍ରଧାନ ମାଧ୍ୟମ ରୂପେ ଗ୍ରହଣ କରିଛନ୍ତି । ଏ ଉଦ୍ୟମ ପ୍ରଶଂସନୀୟ । 'ଅର୍ଘ୍ୟକୁସୁମ' ଥିଲା ଏକ ଆଦର୍ଶ ଗୀତି-କବିତା-ସଂକଳନ । 'ସିଂହାବଲୋକନ' ଏକ ଆଦର୍ଶ ଗାଥାକାବ୍ୟ ।

ମୁଁ ଏହି ମହାନ୍ ପ୍ରତିଭାଶାଳୀ କବିଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରୁଛି । ପରମେଶ୍ୱର ଶ୍ରୀଶ୍ରୀ ଜଗନ୍ନାଥ ତାଙ୍କର ମନସ୍କାମନା ପୂର୍ଣ୍ଣକରନ୍ତୁ ।ଇତି।

ଡକ୍ଟର ବାସୁଦେବ ସାହୁ
ରିଡ଼ର୍, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ

Prof. Sankarsan Jena
M.A. (History), M.A. (Pol-Sc.) M.A. Oriya, Utkal.
Head of the Deptt. History.
Mahima Mahavidyalaya.
At/P.o.—Mahimagadi.
Dis.—Dhenkanal, Orissa

Ref..................
Date 2. 4. 86

## ସିଂହାବଲୋକନ କାବ୍ୟ ଉପରେ ଅଭିମତ

"National pride is an element of patri otism and the cultivation of an enlightened patriotism is the duty of every citizen. Partiotism can not be enligtened without the knowledge of the past and history is essential for the dissemination of that knowledge." (Froud)

ଗୋଟିଏ ଜାତିର ଗର୍ବ, ଗୌରବ, ସ୍ୱାଭିମାନ ଐତିହ୍ୟ ଓ ମହନୀୟତାର ଜୀବନ୍ତ ବିବରଣୀ ତାର ଇତିହାସ ପର୍ଯ୍ୟାଲୋଚନାରୁ ମିଳିଥାଏ । ସମୟର ସ୍ରୋତରେ ମଣିଷର ବିଗତ ସ୍ମୃତିଗୁଡ଼ି ହଜିଯାଇପାରେ; ମାତ୍ର କବି ଓ ଐତିହାସିକ ଜାଗ୍ରତ ପ୍ରହରୀ ସଦୃଶ ସେହି ଲୁପ୍ତ ଗୌରବର ପାଉଁଶ ମଧ୍ୟରୁ ଅଗ୍ନି କଣିକାର ସଂଧାନ ଦେଇ, ପ୍ରାଚୀନ ଇତିହାସକୁ ସମାଜ ମଧ୍ୟରେ ଉପସ୍ଥାପନ କରିଥାନ୍ତି । ଏହି ପରିପ୍ରେକ୍ଷୀରେ କବି ଶ୍ରୀଯୁକ୍ତ ଗୋକୁଳ ଚନ୍ଦ୍ର ମିଶ୍ରଙ୍କ ରଚିତ "ସିଂହାବଲୋକନ" କାବ୍ୟ ଏକ ସାର୍ଥକ ଓ ଅନବଦ୍ୟ ସୃଷ୍ଟି । ସାଂପ୍ରତିକ ଅତ୍ୟାଧୁନିକ ସାହିତ୍ୟର ସ୍ୱାଦରୁ ବଞ୍ଚିତ ହୋଇଥିଲେ ମଧ୍ୟ, ପାରଂପରିକ ବଂଗଳାଶ୍ରୀ ଛନ୍ଦରେ ରଚିତ କବିଙ୍କର କାବ୍ୟଟି ସରଳ, ରସୋତ୍ତୀର୍ଣ୍ଣ ଭାବଉଦ୍ଦୀପକ ଓ ମର୍ମସ୍ପର୍ଶୀ । କାବ୍ୟଟିର ଛତ୍ରେ ଛତ୍ରେ ପ୍ରତିଫଳିତ ହୋଇଛି ପଶ୍ଚିମ ଓଡ଼ିଶାର ଗୌରବମୟ ଇତିହାସର କେତୋଟି ଅନାବିଷ୍କୃତ ଅଧ୍ୟାୟ । ଯମସର ଓ କେଶରୀଗଡ଼ର ସାଂସ୍କୃତିକ ମୂଲ୍ୟବୋଧ ଓ ପ୍ରାମାଣିକ ରହସ୍ୟମୟ ଇତିହାସ ଶିଳ୍ପନଗରୀ ରାଉରକେଲାର ପ୍ରତ୍ୟକ୍ଷ ତଥ୍ୟମୂଳକ ବିବରଣୀ ପ୍ରଦାନ

କରିବାରେ କବିଙ୍କର ଉଦ୍ୟମ ପ୍ରଶଂସନୀୟ । କାବ୍ୟଟି ଆମୂଳ ଚୂଳ ପାଠକଲେ ପଶ୍ଚିମ ଓଡ଼ିଶାର ଭୌଗଳିକ ପରିବେଷ୍ଟନୀ ସଂପର୍କରେ ବାସ୍ତବ ଜ୍ଞାନ ଯେ କୌଣସି ପାଠକ ଅର୍ଜନ କରି ପାରିବେ ।

ଓଡ଼ିଶା ଇତିହାସର କେଶରୀ ବଂଶ ସଂପର୍କରେ କେତେଗୁଡ଼ିଏ ନୂତନ ଐତିହାସିକ ତଥ୍ୟ କାବ୍ୟରେ ସ୍ଥାନ ପାଇଥିବାରୁ କାବ୍ୟଟି ବେଶ୍ ତଥ୍ୟ ମୂଳକ ହୋଇପାରିଛି । ଜନଶ୍ରୁତି ସଂଗ୍ରହ ମାଧ୍ୟମରେ ଓ ଅନ୍ୟାନ୍ୟ ଐତିହାସିକ ଦଲିଲ ସହଯୋଗରେ କବି ନାଗରଗଡ଼, କୁଆଁର ମୁଣ୍ଡା, ପଦ୍ମପୁର, ମାଣ୍ଡିଆ କୁଦର, ଛେଣ୍ଡ, ଦେଓଗାଁ ଶିବାଳୟ ଜବାଘାଟ, ଜବାମ୍ବାନପୋଷ, ବ୍ରାହ୍ମଣୀ ପାହାଡ଼, ଝରିଆ ପାହାଡ଼, ବେଦବ୍ୟାସ କୋଏଲନଦୀ ପ୍ରଭୃତିର ମର୍ମସ୍ପର୍ଶୀ ଚିତ୍ର ଉପସ୍ଥାପନ କରି, କେଶରୀ ବଂଶର ଜୀବନ୍ତ ଇତିହାସକୁ ଉନ୍ମୋଚନ କରିଛନ୍ତି ।

କବି ପଶ୍ଚିମ ଓଡିଶାର କେତେଗୁଡ଼ିଏ ବଣମଲ୍ଲୀକୁ ଲୋକଲୋଚନକୁ ଆଣି ସେମାନଙ୍କର ପ୍ରତିଭାକୁ ଉନ୍ମୋଚନ କରିଛନ୍ତି । ପ୍ରଖ୍ୟାତ ପାଲାଗାୟକ ଶ୍ରୀ ରତ୍ନାକର ମିଶ୍ର କୁବି ଶ୍ରୀ ଅର୍ଜୁନ ଗଜ୍, ଧନୁର୍ବିଦ୍ୟା ଓ ତନ୍ତ୍ରଶାସ୍ତ୍ର ବିଶାରଦ କୁଶ ପ୍ରଧାନ, ଶୁକ୍ରୁ ଗଉଡ଼ ଭୂୟାଁ ଜାତିର ଅସାଧାରଣ ବୀର ବିପ୍ର ଅମାତ, ଭୂୟାଁ ଜାତିର ସ୍ୱାଧୀନତା ସଂଗ୍ରାମୀ ମାନ୍ଦ୍ରିକାଲ ପ୍ରଭୃତି ଅପରିଚିତ ପ୍ରତିଭା ସଂପନ୍ନ ବ୍ୟକ୍ତିମାନଙ୍କୁ ଅବତାରଣା କରି, କବି ଯେଉଁ ଅଭିନବ ଉଦ୍ୟମକରିଛନ୍ତି, ତାହା ବାସ୍ତବରେ ଅଭିନନ୍ଦନୀୟ । ପଲ୍ଲୀ ଭୂଇଁର ଅବହେଳିତ ଚରିତ୍ରଗୁଡ଼ିକୁ ଏହିପରି ଆବିଷ୍କାର କରଯାଇ ପାରିଲେ, ଓଡ଼ିଆ ସାହିତ୍ୟର ଦୈନ୍ୟତା ଅନେକାଂଶରେ ଦୂରୀଭୂତ ହୋଇପାରନ୍ତା ।

କାବ୍ୟଟିରେ ଉତ୍କଳ ଜନନୀର ବନ୍ଦନା, ଗଉରକେଲାର ପ୍ରତିଟି ଧୂଳି ମାଟିର ବିବରଣୀ ଓ କବିଙ୍କର ଧର୍ମାନୁଗତ ଚିନ୍ତାଧାରା ବେଶ୍ ସୁସ୍ପଷ୍ଟ । ପଶ୍ଚିମ ଓଡ଼ିଶାର ଐତିହ୍ୟକୁ ଲୁପ୍ତ କରାଇ ଓଡ଼ିଆ ଭାଷାପ୍ରତି ଯେଉଁ ନଗ୍ନ ଓ ବିଭତ୍ସ ଆକ୍ରମଣ ଚାଲିଛି, "ସିଂହାବଲୋକନ" କାବ୍ୟର କଳେବର ମଧ୍ୟରେ ତାହା ବିରୁଦ୍ଧରେ ମୁକ୍ତ କଣ୍ଠରେ ସ୍ୱର ଉତ୍ତୋଳନ କରି, ଉତ୍କଳୀୟ ସଂସ୍କୃତିର ଶ୍ରେଷ୍ଠତ୍ୱ ପ୍ରତିପାଦନ କରଯାଇଛି । ଏହିପରି ଦିନେ "ଉଡ଼ିଆ ଏକ ସ୍ୱତନ୍ତ୍ର ଭାଷାନୟ" ବୋଲି ବଙ୍ଗାଳୀମାନଙ୍କର ବିଭତ୍ସ ଆକ୍ରମଣକୁ ମୁକାବିଲା କରିଥିଲେ ରାଧାନାଥ,

ମଧୁସୂଦନ ଓ ଉତ୍କଳର ବରପୁତ୍ରଗଣ । ଏହି ଦୃଷ୍ଟିକୋଣରୁ କବିଙ୍କର ଉଦ୍ୟମ ସ୍ୱାଗତ୍ୟ ଯୋଗ୍ୟ । କବି ଚେତାବନୀ ଦେବାକୁ ଯାଇ କାବ୍ୟରେ ଲେଖିଛନ୍ତି :—

"ମହତ ସାଧନା କରୁଅଛ ଯାହା
ନବୁଝି କେତେକ ଭାଇ ।
ଭାଷା ସଂସ୍କୃତିକୁ ବୁଡ଼ାଇବା ପାଇଁ
ସ୍ୱାର୍ଥେ ହେଉଛନ୍ତି ବାଇ ।"

× × ×

"ଭେଦ ଭାବ ଛାଡ଼ି ଉଠ ସର୍ବ ଭାଇ
ଜାତୀୟ ବୀର ସନ୍ତାନ ।
ଜନନୀର ମୁଖ ଦିଶଇ ମଳିନ
ମନୁ ତେଜ ଅଭିମାନ ।।"

ମାତୃଭାଷା ପ୍ରତି ଅଖଣ୍ଡ ମମତା ବୃଦ୍ଧି କରିବା ପାଇଁ କବି କାବ୍ୟରେ ଯେଉଁ ଆହ୍ୱାନ ଦେଇଛନ୍ତି, ତାହା କବିଙ୍କର ଜାତୀୟବାଦୀ ଚିନ୍ତାଧାରାର ପରିଚୟ ପ୍ରଦାନ କରେ ।

"ମାତୃଭାଷା ପ୍ରୀତି ମନରେ ବଢ଼ାଇ
ଜାତୀୟ ସଂସ୍କୃତି ଶିଖି ।
ଭକ୍ତିରେ ଜନନୀ ଚରଣକୁ ସେବି
କରାଇବା ତାଙ୍କୁ ସୁଖୀ ।।"

ସର୍ବୋପରି "ସିଂହାବଲୋକନ" କାବ୍ୟ ଉତ୍କଳୀୟ ସଂସ୍କୃତି ଓ ଜାତୀୟ ଜୀବନର ମହାନ ଐତିହ୍ୟକୁ ଗଭୀରଭାବେ ପର୍ଯ୍ୟାଲୋଚନା କରିବା ସଙ୍ଗେ ସଙ୍ଗେ, ପଶ୍ଚିମ ଓଡ଼ିଶାର ସାଂସ୍କୃତିକ ମୂଲ୍ୟବୋଧ ଓ ଭାଷା ସଂକଟ ଉପରେ ଗୁରୁତ୍ୱ ଆରୋପ କରିଅଛି ।

କାରଖାନାର ଯାନ୍ତ୍ରିକ ଓ ଧୂମାୟିତ ପରିବେଶ ମଧ୍ୟରେ ଓଡ଼ିଆ ଓ ଭାଷାର ସଂକଟ ସଂପର୍କରେ ଚିନ୍ତାରତ ଶ୍ରମିକ କବି ଶ୍ରୀଯୁକ୍ତ ଗୋକୁଳ ଚନ୍ଦ୍ର ମିଶ୍ରଙ୍କର ଶାଶ୍ୱତ ସାହିତ୍ୟ ସାଧନା ଯେ କୌଣସି ପାଠକ ଓ ବୁଦ୍ଧିଜୀବୀମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିବ । ନିଜର କର୍ମମୟ, ଜଞ୍ଜାଳଗ୍ରସ୍ତ ଜୀବନ ମଧ୍ୟରେ ସାହିତ୍ୟ

ରଚନାକରି, କବି ଯେଉଁ ତଥ୍ୟମୂଳକ କାବ୍ୟ ସଂପାଦନା କରିଛନ୍ତି, ତାହା କେବଳ କବିଙ୍କର ଗର୍ବ ଓ ଗୌରବ ନୁହେଁ; ସମଗ୍ର ଓଡ଼ିଆ ସାହିତ୍ୟ ଓ ଭାଷାର ଗୌରବ । "ସିଂହାବଲୋକନ" କାବ୍ୟ ଉପରେ ଅଭିମତ ଦେବା ପାଇଁ କବି ମହୋଦୟ ମୋ ନିକଟକୁ ପତ୍ରାଳାପ କରିଥିବା ଯୋଗୁ, ମୁଁ ଆପଣାକୁ ସୌଭାଗ୍ୟବାନ ମନେ କରୁଅଛି । କବିଙ୍କର ଯାତ୍ରାପଥ ଶୁଭମୟ ଓ କୁସୁମିତ ହେଉ । ଉତ୍କଳ ଜନନୀର ସେବା ଉଦ୍ଦେଶ୍ୟରେ କବି ଯେଉଁ ସଂଗ୍ରାମ ଚଳାଇଛନ୍ତି, ଜଗନ୍ନାଥ ଏହି ଶ୍ରମିକ କବିଙ୍କୁ ଶୁଭାଶୀର୍ବାଦ ଦିଅନ୍ତୁ ।

ଉପସଂହାରରେ ଏ ଯୁଗର ଶ୍ରେଷ୍ଠ କବି ଶ୍ରୀଯୁକ୍ତ ସଚ୍ଚି ରଉତରାୟଙ୍କର ଆହ୍ୱାନ ଅବତାରଣା କରିବା ପାଇଁ ପ୍ରାସଙ୍ଗିକ ମନେ କରୁଛି :—

"ମାଟିର ଶେରୁଆ ପଥ ନିଭିଯାଏ ସୂର୍ଯ୍ୟର ଔରସେ
ନୂତନ ଜୀବନ ଫୁଟେ ଲହୁ ଲୁହ ଝାଳ ଓ ନିଶ୍ୱାସେ
ଜାଗ ମହାକବି
ଏ ମହାଜାତିର ଶିରେ, ଶ୍ରାବଣର ହେ ରକ୍ତ କରବୀ"

ଶ୍ରୀ ଶଙ୍କର୍ଷଣ ଜେନା
ଇତିହାସ ଅଧ୍ୟାପକ
ମହିମା ମହାବିଦ୍ୟାଳୟ



(ଛ) ପରିଶିଷ୍ଟର ପରିଶେଷ :—

ପ୍ରାଚୀନ ନାଗର ରାଜ୍ୟର ପୃଷ୍ଠଭୂମି ଉପରେ ଅଧୁନା ଇସ୍ପାତ ସଂସ୍କୃତି ମୁଣ୍ଡ ଟେକି ବିଂଶ ଶତାବ୍ଦୀର ଯଶଗାନ କରୁଅଛି । ଉକ୍ତ ସଂସ୍କୃତି ଅହମିକାରେ ନାଗରର ଅତୀତକୁ ତୁଚ୍ଛମଣି ବହୁବିଧ ସ୍ଥାୟୀ ଅସ୍ଥାୟୀ ଅନୁଷ୍ଠାନର ସୌଧ ତୋଳି ଏକବିଂଶ ଶତାବ୍ଦୀକୁ ଅପେକ୍ଷା କରିଅଛି ।

ଏହାର କୋଳରେ ପ୍ରାୟତଃ ୧୯୭୨ ମସିହାରେ ଇସ୍ପାତ ସାହିତ୍ୟ ସଂସଦ ଜନ୍ମ ହୋଇଅଛି । ସଂସଦ ଜନ୍ମରୁ ଅଦ୍ୟାବଧି ଯାଯାବର ଜୀବନ ଅତିବାହିତ କରି, ତାର ରଚନାତ୍ମକ କର୍ମରୁ ଅନେକ ଶାଖାର ବୃକ୍ଷ (କବିତା)

ଧୂସର ଦିନର ପକ୍ଷୀ (ଗଳ୍ପ), ଏଇ ନଈ ଯାଏ ବହି (ଗଳ୍ପ), ଗହା (କବିତା) ଏବଂ ସ୍ତବକ (ମାସିକ ପତ୍ରିକା) ଇତ୍ୟାଦି ପୁସ୍ତକଗୁଡ଼ିକୁ ପ୍ରକାଶ କରାଇ ଓଡ଼ିଆ ଭାଷା ସାହିତ୍ୟର ପ୍ରସାର ଓ ପ୍ରଚାର କରି ଆସୁଅଛି ।

ଇସ୍ପାତ ସାହିତ୍ୟ ସଂସଦ ସର୍ବ ପ୍ରଥମେ ନାଗରର ବଣମଲ୍ଲୀ କବି ଶ୍ରୀ ଅର୍ଜ୍ଜୁନ ଗଜ୍‌ଙ୍କୁ ମାନପତ୍ର ପ୍ରଦାନ କରି କବି ସହିତ ନାଗରର ଗୌରବକୁ ସମ୍ମାନିତ କରିଅଛି ।

ନାଗର ଲେଖକ ଇସ୍ପାତ ସାହିତ୍ୟ ସଂସଦର ଜଣେ ଆଜୀବନ ସଦସ୍ୟ । ସଂସଦର ସ୍ନେହ ପ୍ରୀତି ଲାଭକରି, ତାର ଲେଖନୀ "ନାଗର" ଗ୍ରନ୍ଥ ରଚନା କରିଅଛି । ଆଶା ଇସ୍ପାତ ସାହିତ୍ୟ ସଂସଦ କର ସ୍ପର୍ଶରେ "ନାଗର" ପ୍ରଚାରିତ ପ୍ରସାରିତ ହୋଇ ଉତ୍କଳ ତଥା ଭାରତର ସେବାରେ ନିୟୋଜିତ ହେବ ।

—ଃ ସ ମା ପ୍ତ ଃ—